VOL XLVIII No. 11 UTKAL PRASANGA Regd. No. 0-05/92
Licence No. C.R.N.P. 5—Licensed to post without Pre-Payment



ବ୍ରହ୍ମପୁରସ୍ଥିତ ଖଲିକୋଟ ମହାବିଦ୍ୟାଳୟ ଷ୍ଟାଡ଼ିୟମଠାରେ ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କ ଜନ୍ମ ଶତବାର୍ଷିକୀ ଉଦ୍‌ଯାପନୀ ଉତ୍ସବରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକଙ୍କ ଉଦ୍‌ବୋଧନ ।

PRINTED AT ORISSA GOVERNMENT PRESS, CUTTACK-753010

# ଉତ୍କଳ ପ୍ରସଙ୍ଗ

୪୮ ଭାଗ ୧୨ଶ ସଂଖ୍ୟା ଆଷାଢ଼ ୧୯୧୪ ଶକାବ୍ଦ ଜୁଲାଇ ୧୯୯୨

## ସମ୍ପାଦନା ମଣ୍ଡଳୀ




ପ୍ରଚ୍ଛଦପଟ୍ଟ : ଶ୍ରୀ ବଳଦେବ ମହାରଥୀ

ପ୍ରକାଶନ : ସୂଚନା ଓ ଲୋକ ସମ୍ପର୍କ ବିଭାଗ, ଓଡ଼ିଶା ସରକାର, ଭୁବନେଶ୍ୱର ।

ମୁଦ୍ରଣ : ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ

(ଫଟୋଟାଇପସେଟିଂ ପଦ୍ଧତିରେ ଅକ୍ଷର ସଂଯୋଜିତ)

ପ୍ରତି ଖଣ୍ଡ : ଟ ୫·୦୦


ଓଡ଼ିଶା ସରକାରଙ୍କ ବିଭିନ୍ନ କାର୍ଯ୍ୟ, ସରକାରୀ ଘୋଷଣା ଓ ଅନ୍ୟାନ୍ୟ ସରକାରୀ ଖବର ସଂକ୍ଷିପ୍ତ ବିବରଣ "ଉତ୍କଳ ପ୍ରସଙ୍ଗ"ରେ ପ୍ରକାଶିତ ହୋଇଥାଏ । ଏହା ବ୍ୟତୀତ ଅନେକ ବିଷୟ ସଂକ୍ଷିପ୍ତ ଆକାରରେ ମଧ୍ୟ ଏହି ପତ୍ରିକାରେ ପ୍ରକାଶ କରାଯାଇଥାଏ । ସେଭଳି ବିଷୟକୁ ସମ୍ପୂର୍ଣ୍ଣ ଓ ଅନୁମୋଦିତ ମୂଳ ପାଠ ବୋଲି ଭାବିବା ଉଚିତ ନୁହେଁ ।

"ଉତ୍କଳ ପ୍ରସଙ୍ଗ" ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗ ତରଫରୁ ପ୍ରକାଶ ପାଉଥିଲେ ସୁଦ୍ଧା ଏହି ପତ୍ରିକାରେ ପ୍ରକାଶିତ ମତାମତ ଓ ଚିନ୍ତାଧାରା ସବୁ କ୍ଷେତ୍ରରେ ଓଡ଼ିଶା ସରକାରଙ୍କର ବୋଲି ବୁଝିବାକୁ ହେବ ନାହିଁ ।

# ସୂଚୀ




# ପବିତ୍ର ଭ୍ରାତୃ ପ୍ରେମର ପ୍ରତୀକ : "ଜଗନ୍ନାଥ"

ଜଗତର ନାଥ ଜଗନ୍ନାଥଙ୍କ ମହିମା ବର୍ଣ୍ଣନା କଲାବେଳେ ଆମ ଠାକୁର—ବଡ଼ ଠାକୁର, ଦେଉଳ—ବଡ଼ ଦେଉଳ, ପଣ୍ଡା—ବଡ଼ ପଣ୍ଡା, ଦାଣ୍ଡ—ବଡ଼ ଦାଣ୍ଡ ଇତ୍ୟାଦି ଅନେକ କଥା କହିଥାଉ । କେବଳ ସେତିକି ନୁହେଁ, ପୁରାଣ ପ୍ରସିଦ୍ଧ ତୀର୍ଥଧାମ ମଧ୍ୟରେ ଜଗନ୍ନାଥ ଧାମ ସର୍ବଶ୍ରେଷ୍ଠ ତୀର୍ଥ କ୍ଷେତ୍ର ଭାବରେ ପରିଚିତ । ତେଣୁ ଯଥାର୍ଥରେ କୁହାଯାଇଛି—

"ସକଳ ତୀର୍ଥ ତୋ ଚରଣେ,
ବଦ୍ରିକା ଯିବି କି କାରଣେ ?"

ଏହି ଉକ୍ତିକୁ ସମ୍ମାନ ଦେଇ ବିଜୁବାବୁ ମୁଖ୍ୟମନ୍ତ୍ରୀ ଭାବେ ଶପଥ ଗ୍ରହଣ କରିବା ପୂର୍ବରୁ ବିଧାନ ସଭାକୁ ନିର୍ବାଚିତ ହୋଇଥିବା ସମସ୍ତ ଭାଇ ଭଉଣୀଙ୍କୁ ସଙ୍ଗରେ ନେଇ ଜଗନ୍ନାଥ ଦର୍ଶନ ନିମନ୍ତେ ଶ୍ରୀମନ୍ଦିରକୁ ଯାଇଥିଲେ । ବିଜୁବାବୁ ଶ୍ରୀମନ୍ଦିରରେ ଜଗନ୍ନାଥଙ୍କୁ ଯାହା ନିବେଦନ କରିଥିଲେ, ତାହା କେହି ଶୁଣିପାରି ନଥିଲେ । କିନ୍ତୁ ପରେ ପରେ ବିଜୁବାବୁ ରାଜ୍ୟର ବିଭିନ୍ନ ସଭାମାନଙ୍କରେ ହଜାର ହଜାର — ଲକ୍ଷ ଲକ୍ଷ ଲୋକଙ୍କ ଆଗରେ ପ୍ରକାଶ କରି କହିଛନ୍ତି ଯେ "ଦ୍ୱିତୀୟ ଇସ୍ପାତ କାରଖାନା ପାଇଁ ମୁଁ ଜଗନ୍ନାଥଙ୍କୁ କହିଛି । ଜଗନ୍ନାଥ ମୋ କଥାରେ ରାଜି ହୋଇଛନ୍ତି" ।

କାଞ୍ଚି ଅଭିଯାନ କିମ୍ବା ଦାସିଆ ବାଉରି ଘଟଣା ଭଳି ଏହି ଘଟଣା ଇତିହାସ ନୁହେଁ କିମ୍ବା କିମ୍ବଦନ୍ତୀ ନୁହେଁ । ଏହା ମୋଟେ ଦୁଇବର୍ଷ ତଳର ଘଟଣା ମାତ୍ର । ପ୍ରଭୁ ଜଗନ୍ନାଥଙ୍କ ନିକଟରେ ଉକ୍ତ ବିଜୁବାବୁଙ୍କ ଇସ୍ପାତ କାରଖାନା ପ୍ରସଙ୍ଗ ସତ୍ୟ ବୋଲି ବର୍ତ୍ତମାନ ପ୍ରମାଣିତ ହୋଇଯାଇଛି । ଦୀର୍ଘ ତିରିଶି ବର୍ଷ ଧରି ଯାହା ସମ୍ଭବ ହୋଇପାରୁ ନଥିଲା, ତାହା ଜଗନ୍ନାଥଙ୍କ କରୁଣା ବଳରେ ସମ୍ଭବ ହୋଇ ପାରିଛି ଏବଂ ଯଖପୁରାଠାରେ କଳିଙ୍ଗ ଇସ୍ପାତ କାରଖାନାର ଭୂମି ପୂଜା ଉତ୍ସବ ସମ୍ପନ୍ନ ହୋଇଛି ।

ଏ ପ୍ରସଙ୍ଗରେ ମହିଳାମାନଙ୍କ ନିମନ୍ତେ ସ୍ଥାନ ସଂରକ୍ଷଣ ବିଷୟ ମଧ୍ୟ ଆଲୋଚନା କରିବା କିଛି ଅପ୍ରାସଙ୍ଗିକ ହେବ ନାହିଁ । ପୌର ସଭା, ଗ୍ରାମ ପଞ୍ଚାୟତ ଓ ପଞ୍ଚାୟତ ସମିତିଗୁଡ଼ିକରେ ମହିଳାମାନଙ୍କ ନିମନ୍ତେ ଏକ ତୃତୀୟାଂଶ ସ୍ଥାନ ସଂରକ୍ଷଣ ପାଇଁ ବିଜୁବାବୁ ନିଷ୍ପତ୍ତି ନେଲେ । ଏ ନିଷ୍ପତ୍ତିର ମହତ ଉଦ୍ଦେଶ୍ୟକୁ ବୁଝିନପାରି ପ୍ରଥମେ ପ୍ରଥମେ ଖୁବ ବିତର୍କ ସୃଷ୍ଟି ହୋଇଥିଲା । କିନ୍ତୁ ଅତୀବ ଆଶ୍ଚର୍ଯ୍ୟ ଏବଂ ଆନନ୍ଦର କଥା, ପର ମୁହୂର୍ତ୍ତରେ ଏହି ନିଷ୍ପତ୍ତିକୁ ସର୍ବେ ଆଗ୍ରହର ସହିତ ଆଦରି ନେଲେ ।

ମହିଳାମାନଙ୍କ ପାଇଁ ଏକ ତୃତୀୟାଂଶ ସ୍ଥାନ ସଂରକ୍ଷଣ କରିବା ପରିକଳ୍ପନାର ଉତ୍ପତ୍ତି ସମ୍ପର୍କରେ ଯାହା କାରଣ ଥାଉ ନା କାହିଁକି ଦୁଇ ଭାଇଙ୍କ ସହିତ ଭଉଣୀ ସୁଭଦ୍ରା ଶ୍ରୀମନ୍ଦିରରେ ଅଧିଷ୍ଠିତ ହେଲା ଭଳି ବର୍ତ୍ତମାନ ପୌର ସଭା, ଗ୍ରାମ ପଞ୍ଚାୟତ ଓ ପଞ୍ଚାୟତ ସମିତିଗୁଡ଼ିକରେ ଦୁଇ ଭାଇଙ୍କ ସହିତ ଜଣେ ଲେଖାଏଁ ଭଉଣୀ ଏଣିକି ଦାୟିତ୍ୱରେ ରହିବେ । ଏହା ଶ୍ରୀମନ୍ଦିର ଏବଂ ଜଗନ୍ନାଥ ସଂସ୍କୃତିର ଅନୁକରଣ ମାତ୍ର । ପୃଥିବୀର କୌଣସି ସ୍ଥାନରେ ଏଭଳି ମନ୍ଦିର ନାହିଁ, ଯେଉଁଠି ପବିତ୍ର ଭ୍ରାତୃ ପ୍ରେମର ବାର୍ତ୍ତା ବହନ କରି ଭାଇ ଭଉଣୀ ଏକାଠି ରହି ପୂଜା ପାଉଛନ୍ତି ।

ଦେବାଦେବୀମାନଙ୍କୁ ପୂଜା ଅର୍ଚ୍ଚନା କଲାବେଳେ ଗଣେଶଙ୍କୁ ଲଡୁ ଭୋଗ, ଶିବଙ୍କୁ ବେଲ ପତ୍ର ଓ ଚଣ୍ଡୀଙ୍କୁ ମନ୍ଦାର ମାଳରେ ସନ୍ତୁଷ୍ଟ କଲା ଭଳି ଏକ ତୃତୀୟାଂଶ ସ୍ଥାନ ଭଉଣୀମାନଙ୍କ ନିମନ୍ତେ ସଂରକ୍ଷଣ ବ୍ୟବସ୍ଥା ପ୍ରଚଳନ କରି ଭକ୍ତ ବିଜୁବାବୁ ଅତି ଚତୁରତାର ସହ ଜଗନ୍ନାଥଙ୍କୁ ସନ୍ତୁଷ୍ଟ କରିବା ସଙ୍ଗେ ସଙ୍ଗେ ଏ ଯୁଗର ଶ୍ରେଷ୍ଠ ଭକ୍ତ ଭାବରେ ଗୌରବର ଅଧିକାରୀ ହୋଇ ପାରିଛନ୍ତି ।

ପ୍ରଭୁ ଜଗନ୍ନାଥଙ୍କ ଶ୍ରେଷ୍ଠ ଭକ୍ତର ସୌଭାଗ୍ୟ ଅର୍ଜନ କରି ପାରିଥିବା ବିଜୁବାବୁଙ୍କ ଏହି ସବୁ ଘଟଣା ଜଗନ୍ନାଥ ପ୍ରେମୀ ଅଗଣିତ ଭକ୍ତମାନଙ୍କ ଆଗରେ ଜ୍ୱଳନ୍ତ ଉଦାହରଣ ହୋଇପାରିଛି । ପୁରାଣରେ ଲେଖା ଅଛି — ଗୁଣ୍ଡିଚା ଦେବୀଙ୍କୁ ସମ୍ମାନ ଦେଇ ପ୍ରଭୁ ଜଗନ୍ନାଥ ଭାଇ ଭଉଣୀଙ୍କୁ ସଙ୍ଗରେ ନେଇ କରୁଥିବା ଏହି ରଥଯାତ୍ରାକୁ ଯେଉଁ ଭକ୍ତମାନେ ଦେଖନ୍ତି, ସେମାନେ ମୋକ୍ଷ ହୋଇଯାଆନ୍ତି । ଭାଇ ଭଉଣୀ ରଥ ଉପରେ ଥିବାବେଳେ ଦର୍ଶନ କଲେ ପୁନର୍ଜନ୍ମରୁ ମୁକ୍ତି ମିଳିଥାଏ ।

ଆମେ ସେହି ଜଗନ୍ନାଥଙ୍କ ଭକ୍ତ ହୋଇ ସେହି ଜଗନ୍ନାଥ ସଂସ୍କୃତିକୁ ମୂଳ ଆଧାର ରୂପେ ଗ୍ରହଣ କରି ଆମ ଭଉଣୀମାନଙ୍କୁ ଅଧିକ ଦାୟିତ୍ୱ — ଅଧିକ ସମ୍ମାନ ଦେବାକୁ ପଛେଇବା କାହିଁକି ? ପ୍ରଭୁ ଜଗନ୍ନାଥ ଏଥିରେ ଅଧିକ ଖୁସି ହେବେ ଏବଂ ଭକ୍ତମାନଙ୍କର ମଙ୍ଗଳ ପାଇଁ, ଓଡ଼ିଶାର ସମୂହ ବିକାଶ ପାଇଁ ଆଶୀର୍ବାଦ ଅଜାଡ଼ି ଦେବେ, ସେଥିରେ ସନ୍ଦେହର ଅବକାଶ ନାହିଁ ।

ଜୟ ଜଗନ୍ନାଥ ।



ଶ୍ରୀମନ୍ଦିର

ଫଟୋ : ଦେବାଶିଷ ମହାପାତ୍ର
ତୃତୀୟ ବାର୍ଷିକ +୩ ବିଜ୍ଞାନ, ରେଭେନ୍ସା କଲେଜ




**ଶ୍ରୀ ବିଜୁ ପଟ୍ଟନାୟକ**

ପାଇକ ଆଖଡ଼ା ଏକ ଆଖଡ଼ା ନୁହେଁ । ଏହା ଏ ଜାତିର ବୀରତ୍ୱର ପ୍ରତୀକ । ଯେଉଁ ଜାତି ନିଜର ବୀରତ୍ୱ ଭୁଲି ଯାଏ, ସେ ଜାତି ଇତିହାସ ଗର୍ଭରେ ଲୀନ ହୋଇଯାଏ । ଯେଉଁ ଜାତିର ନିଜର ଆଭିଜାତ୍ୟ ନାହିଁ, ସେ ଜାତିର ସ୍ଥିତି ନାହିଁ ଗୋଲି ଧରିନେବାକୁ ପଡ଼ିବ, ଯେଉଁ ଜାତିର ନିଜର ଗର୍ବ ନାହିଁ, ସେ ଜାତି ମୃତ ପ୍ରାୟ । ତେଣୁ କବି ଯଥାର୍ଥରେ କହିଛନ୍ତି — "ଜାତି ଇତିହାସ ଜାତିର ନିର୍ଝର, ତହିଁ ବହେ ସଦା ଜାତି ପ୍ରାଣଧାର । ସେ ଧାରରୁ ନୀର ପିଉଛି ଯେ ନର, ନିଶ୍ଚି ହେବ ସେହି ଜାତି ହୀନବୀର୍ଯ୍ୟ" ।

ଦିନ ଥିଲା, ଓଡ଼ିଆ ଜାତି ପୃଥିବୀର ସର୍ବଶ୍ରେଷ୍ଠ ଜାତି ରୂପେ ଖ୍ୟାତି ଅର୍ଜନ କରିଥିଲା । ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ସେ ସାମ୍ରାଜ୍ୟ ବିସ୍ତାର କରିପାରିଥିଲା । ଏ ଜାତିର ମା' ମାନେ ଥିଲେ ବୀର ପ୍ରସବିନି । ବୀରମାନଙ୍କୁ ଜନ୍ମ ଦେଉଥିଲେ ସେମାନେ । ଅଶୋକଙ୍କ ସହିତ ଲଢ଼େଇ କରି ଯେତେବେଳେ ଏକ ଲକ୍ଷ ଓଡ଼ିଆ ପାଇକ ଯୁଦ୍ଧରେ ନିହତ ହୋଇଗଲେ, ସେତେବେଳେ ମା' ମାନେ ଉଠିଥିଲେ ତରବାରୀ ଉଠାଇ ଲଢ଼େଇ କରିବାପାଇଁ, ସେତିକିବେଳେ ଅଶୋକ ନିଜର ତରବାରୀ ତଳେ ପକାଇଦେଇଥିଲେ, ଚଣ୍ଡାଶୋକରୁ ଧର୍ମାଶୋକ ହୋଇଯାଇଥିଲେ ସେ – ମା' ମାନଙ୍କ ସକାଶେ । କାରଣ, ଅଶୋକ ଜାଣିପାରିଲେ ଯେ ଏହି ବୀର ଜାତିକୁ ପ୍ରତିହତ କରିବା ସମ୍ଭବପର ନୁହେଁ ।

ଆମେ ଯେ ସେହି ବୀର ଜାତିର ଦାୟାଦ,ଏକଥା ଆମେ କଦାପି ଭୁଲିଯିବା ଉଚିତ ନୁହେଁ । ହଜାର ହଜାର ବର୍ଷର ଗୌରବୋଜ୍ୱଳ ସ୍ମୃତିକୁ ଅଭିନନ୍ଦନ ଜଣାଇବା ସଙ୍ଗେ ସଙ୍ଗେ ସେହି ସ୍ମୃତି ଆମକୁ ସ୍ୱାଭିମାନ ଦେଉ – ଏହି ପ୍ରାର୍ଥନା କରୁଛି ଜଗାକାଳିଆ ପାଖରେ ।

ଆମ ରାଜ୍ୟ ଯେତେବେଳେ ସଙ୍କଟର ସମ୍ମୁଖୀନ ହୋଇଥିଲା, ଅପମାନିତ ହେଉଥିଲା, ସେତେବେଳେ ଜଗା–ବଳିଆ ଦୁହେଁ କଳାଘୋଡ଼ା, ଧଳାଘୋଡ଼ା ଚଢ଼ି ଲଢ଼େଇ କରିବାପାଇଁ ଯାଇଥିଲେ । ଏ ଜାତିର ସ୍ୱାଭିମାନକୁ ଫେରାଇ ଆଣିବା ପାଇଁ ନିଜେ ଜଗନ୍ନାଥ ବଡ଼ଭାଇ ବଳରାମଙ୍କୁ ସାଙ୍ଗରେ ଧରି କାଞ୍ଚି ଅଭିଯାନରେ ବାହାରି ପଡ଼ିଥିଲେ । ସେଥିପାଇଁ ଗୋପବନ୍ଧୁ ଯଥାର୍ଥରେ କହିଥିଲେ – "ଉତ୍କଳେ ନେତାର ନାହିଁ ପ୍ରୟୋଜନ, ଉତ୍କଳର ନେତା ନିଜେ ନାରାୟଣ" । ସେହି ଜଗାକାଳିଆଙ୍କୁ ଆଜି ମୁଁ ପ୍ରାର୍ଥନା କରି କହୁଛି "ମୋ ଜାତି ଆଜି ତଳେ ପଡ଼ିଯାଇଛି, ଏ ଜାତିକୁ ଶକ୍ତି–ସାମର୍ଥ୍ୟ ଦିଅ" । ଜଗନ୍ନାଥଙ୍କ କରୁଣା ବଳରେ ଏ ଜାତି ନିଶ୍ଚିତ ରୂପେ ପୁଣି ଯାଗିଉଠିବ, ପୂର୍ବର ସାହସ ପୁଣି ଫେରି ପାଇବ !

ଏ ଜାତି ଦିନେ ଅଦମ୍ୟ ସାହାସୀ ଥିଲା । ସେତେବେଳେ ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ଆମର ସାମ୍ରାଜ୍ୟ ବିସ୍ତାର ହୋଇପାରିଥିଲା । ବିହାର, ବଙ୍ଗଳା, ଆନ୍ଧ୍ର ସବୁ ଆମ ରାଜ୍ୟର ଅନ୍ତର୍ଭୁକ୍ତ ହୋଇଥିଲା । ଏ ଜାତିର ବିଶ୍ୱକର୍ମାମାନେ କୁଶଳ କାରୀଗରମାନେ ଜାହାଜ ତିଆରି କରୁଥିଲେ ଏବଂ ସାଧବ ପୁଅମାନେ ସେହି ଜାହାଜରେ ସାତ ଦରିଆ ପାରହୋଇ ଜାଭା, ସୁମାତ୍ରା, ବାଲି, ବୋର୍ଣ୍ଣିଓ ପ୍ରଭୃତି ଦେଶକୁ ବାଣିଜ୍ୟ କରିବାକୁ ଯାଇ ଆମ ରାଜ୍ୟକୁ ଧନ, ରତ୍ନ, ମୋତି–ମାଣିକ୍ୟ ବୋହି ଆଣୁଥିଲେ । ଆଜି ସେ ସାମ୍ରାଜ୍ୟ ନାହିଁ । ସେ ଧନ–ରତ୍ନର ଭଣ୍ଡାର ବି ନାହିଁ । ସେଥିପାଇଁ ଏ ଜାତିକୁ ଟିକିଏ ସାହା ହେବାପାଇଁ ମୁଁ ଜଗନ୍ନାଥଙ୍କୁ ପ୍ରାର୍ଥନା କରୁଛି ।

ଜଗା କାଳିଆ ମୋ ଗୁହାରି ଶୁଣୁଛନ୍ତି କି ନାହିଁ ଜାଣେନା । କିନ୍ତୁ ଜଗାକାଳିଆର କୃପା ଦୃଷ୍ଟିରୁ କିଛି କିଛି ସୂଚନା ମୁଁ ଆଜି ଦେଖିପାରୁଛି । ଆମେ ସରକାର ଗଢ଼ିବାର ଦୁଇବର୍ଷ ଭିତରେ ଗୋଟିଏ ବିରାଟ ଇସ୍ପାତ କାରଖାନା ଓଡ଼ିଶାରେ ହେବ – ଏକଥା କେହି କେବେ ଚିନ୍ତା କରିପାରି ନଥିବେ । ବିଶାଖାପାଟଣାଠାରେ ଇସ୍ପାତ କାରଖାନା ପ୍ରତିଷ୍ଠା କରିବା ପାଇଁ ତତ୍‌କାଳୀନ ପ୍ରଧାନମନ୍ତ୍ରୀ ବହୁ ଆଡ଼ମ୍ବରରେ ଭିତ୍ତି ଦେଇଥିଲେ ମଧ୍ୟ ବାର ବର୍ଷ ଯାଏଁ ତାହା ହୋଇପାରି ନଥିଲା । ବାରବର୍ଷ ପରେ ମୁଁ କେନ୍ଦ୍ର ଇସ୍ପାତ ମନ୍ତ୍ରୀ ହେବା ପରେ ଏହି କାରଖାନା ନିର୍ମିତ ହେଲା । ଓଡ଼ିଶାରେ ରାଉରକେଲା ଇସ୍ପାତ କାରଖାନା ପ୍ରତିଷ୍ଠା ଦିଗରେ ମୁଁ ଏକ ସକ୍ରିୟ

ଭୂମିକା ଗ୍ରହଣ କରିଥିଲି । ତା ପରେ ଆମ ରାଜ୍ୟର ଦ୍ୱିତୀୟ ଇସ୍ପାତ କାରଖାନା କରିବାକୁ କେହି ସକ୍ଷମ ହୋଇପାରିଲେ ନାହିଁ । ଓଡ଼ିଶାବାସୀଙ୍କ ପାଇଁ ପୂଜା ଉପହାର ବୋଲି କେବଳ ପୋଷ୍ଟର, ସ୍ଲୋଗାନ ଓ ପ୍ରସ୍ତରରେ ଦଶ ବର୍ଷ ବିତିଗଲା । ସୌଭାଗ୍ୟର କଥା ଜଗାକାଳିଆର ଆଶୀର୍ବାଦରେ ଓଡ଼ିଶାରେ ଦ୍ୱିତୀୟ ଇସ୍ପାତ କାରଖାନାର ପ୍ରତିଷ୍ଠା ଆଜି ସ୍ୱପ୍ନବପର ହୋଇପାରିଛି । ଏହା ବ୍ୟତୀତ, ପଶ୍ଚିମ ଓଡ଼ିଶାରେ ମଧ୍ୟ ଦୁଇଟି ବଡ଼ କାରଖାନା ପ୍ରତିଷ୍ଠା କରାଯିବ । ଏଥିପାଇଁ ବାହାଦୁରୀ ମୁଁ ନେବାକୁ ଚାହୁଁନାହିଁ । ମୋ ରାଜ୍ୟର ପ୍ରିୟ ଭାଇ ଭଉଣୀମାନଙ୍କର ଅକୁଣ୍ଠ ଶ୍ରଦ୍ଧା ଓ ସମର୍ଥନ ବଳରେ ଆଜି ମୁଁ ଏଥିପାଇଁ ସାମର୍ଥ୍ୟ ପାଇଛି । ଏହା ସେହି ଜଗାକାଳିଆର ଆଶୀର୍ବାଦ । ଜଗାକାଳିଆର ଉପହାର ।

ଇସ୍ପାତ କାରଖାନା କଲମରେ ତିଆରି ହୁଏନି, ଏଥିପାଇଁ ରେଞ୍ଚ, ହାତୁଡ଼ି ଦରକାର । ବୈଷୟିକ ଜ୍ଞାନ ଦରକାର । ପୃଥିବୀର ଯେ କୌଣସି ଦେଶରେ ଶିଳ୍ପର ବିକାଶ ହୋଇଛି, ସେ ଦେଶ ଲୋକଙ୍କର ବୈଷୟିକ ଜ୍ଞାନ ଏଥିରେ ଏକ ମୁଖ୍ୟ ଭୂମିକା ଗ୍ରହଣ କରିଛି । ଆମେ ଯେତେବେଳେ ଏକ ବିରାଟ ଇସ୍ପାତ କାରଖାନା ପ୍ରତିଷ୍ଠା କରିବାକୁ ଯାଉଛେ, ଆମକୁ ମନେ ରଖିବାକୁ ହେବ ଯେ ଏହା ସାଧାରଣ ଲୋକଙ୍କ ଦ୍ୱାରା ନିର୍ମାଣ କରି ହେବନି । ଆମକୁ ବୈଷୟିକ ଜ୍ଞାନ ଆହରଣ କରିବାକୁ ହେବ । ଆମର ଯୁବକ ଯୁବତୀ ମାନଙ୍କୁ ଆବଶ୍ୟକୀୟ ତାଲିମ ଦେବାପାଇଁ ଏକ ବୈଷୟିକ ବିଦ୍ୟାଳୟ ପ୍ରତିଷ୍ଠା କରାଯିବ । ପୃଥିବୀର ଅନ୍ୟ ଦେଶରେ ଯେପରି ସାଧାରଣ ଲୋକ ବୈଷୟିକ ଶିକ୍ଷାପାଇଁ ଇସ୍ପାତ ଶିଳ୍ପର ବିକାଶ କରିପାରିଛନ୍ତି, ଆମ ରାଜ୍ୟର ଯୁବକ ଯୁବତୀମାନେ ମଧ୍ୟ ଏହି ଶିକ୍ଷା ପାଇଁ କୁଶଳୀ କାରିଗର ହୋଇପାରିବେ ଓ ଏହି ଇସ୍ପାତ କାରଖାନା ନିଜେ ତିଆରି କରିପାରିବେ । ଏଥି ପାଇଁ ଆବଶ୍ୟକ, ଧୈର୍ଯ୍ୟ ଓ ସାଧନା ।

ଇସ୍ପାତ କାରଖାନା ଯେପରି ଆମ ରାଜ୍ୟର ଉଜ୍ଜ୍ୱଳମୟ ଭବିଷ୍ୟତର ପ୍ରତୀକ, ପାଇକ ଆଖଡ଼ା ବା ପାଇକ ସଂସ୍କୃତି ସେହିପରି ଆମର ଅତୀତର ଗୌରବୋଜ୍ଜ୍ୱଳ, ଇତିହାସ, ଶୌର୍ଯ୍ୟ ଓ ବୀରତ୍ୱର ପ୍ରତୀକ ।

ଆଗରୁ କହିଛି, ପାଇକ ଆଖଡ଼ା କୁ ଆଖଡ଼ା ମଧ୍ୟରେ ସୀମାବଦ୍ଧ କରାଯାଇ ପାରେ ନା । ତେଣୁ ପାଇକ ଆଖଡ଼ା ଦିନକର କାମ ନୁହେଁ । ବର୍ଷ ବର୍ଷ ଧରି ସାଧନା କଲେ, ଦିନରାତି ପରିଶ୍ରମ କରି ସମର ଅଭ୍ୟାସ କଲେ ସେଥିରୁ ଜନ୍ମଲାଭ କରେ ପାଇକ । ଅତଏବ ଏହି ପାଇକ ଆଖଡ଼ାର ଗୁଣାତ୍ମକ ବିକାଶ କରିବା ପାଇଁ ଆମେ ନିଷ୍ପତ୍ତି କରିଛୁ ଯେ, "ପାରମ୍ପରିକ ଶାରୀରିକ ଓ ସାମରିକ ଶିକ୍ଷା ଏକାଡେମୀ" ନାମରେ ଏକ ଅନୁଷ୍ଠାନ ଖୋଲି ଏଥିପାଇଁ ଉପଯୁକ୍ତ ତାଲିମର ବ୍ୟବସ୍ଥା କରିବୁ । ଜଗାକାଳିଆର ଆଶୀର୍ବାଦ ମିଳିଲେ ଏହି ଏକାଡେମୀ ଅତି ଶୀଘ୍ର ଆରମ୍ଭ ହୋଇ ପାଇକ ଆଖଡ଼ା – ସଂସ୍କୃତିକୁ ପୁନର୍ଜୀବିତ କରିବ । ପଛୁଆ ଜାତି ଭାବରେ ପଛରେ ପଡ଼ି ରହିଥିବା ଏହି ଜାତି ଆଗାମୀ ଦିନରେ ବୀର ଓଡ଼ିଆ ଜାତିରେ ପରିଣତ ହୋଇ ଏ ଜାତିର ସ୍ୱାଭିମାନକୁ ଫେରାଇ ଆଣିପାରିବ। ସଙ୍ଗେ ସଙ୍ଗେ ଶିଳ୍ପୋନ୍ନୟନ ଫଳରେ ଏହାର ଭବିଷ୍ୟତ ସମୃଦ୍ଧି ହୋଇ ପାରିବ ।

(ଖୋର୍ଦ୍ଧାଠାରେ ଅନୁଷ୍ଠିତ ରାଜ୍ୟ ସ୍ତରୀୟ ପାଇକ ଆଖଡ଼ା ସମାରୋହର ଉଦ୍‌ଯାପନୀ ଦିବସରେ ଏପ୍ରିଲ୨୭ ତାରିଖରେ ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କ ଭାଷଣରୁ ସଂଗୃହୀତ।)



ସିଂହଦ୍ୱାର ନିକଟରେ ତିନି ଠାକୁରଙ୍କ ରଥ ।



ଶ୍ରୀ ଶରତ କୁମାର କର

ବିଶ୍ୱରେ ବହୁ 'ଆଶ୍ଚର୍ଯ୍ୟ' ବିଷୟ, ବସ୍ତୁ, ଘଟଣା ରହିଛି । ଯେଉଁମାନେ ତନ୍ମଧ୍ୟରୁ ପ୍ରଥମ 'ସାତ' ବା 'ଦଶ'ର ତାଲିକା କରନ୍ତି ସେମାନେ 'ଶ୍ରୀଜଗନ୍ନାଥ'ଙ୍କୁ ଦେଖି ନାହାନ୍ତି କି ତାଙ୍କ ଗତି ବୃତ୍ତ, କିମ୍ବଦନ୍ତୀ ଓ ସଂସ୍କୃତି ସମ୍ବନ୍ଧରେ ହୁଏତ ଜାଣି ନାହାନ୍ତି । ଶ୍ରୀଜଗନ୍ନାଥ ଯେ ସଦା ଆଶ୍ଚର୍ଯ୍ୟମୟ, ଅହରହ, ନିତି ନିତ୍ୟ ସହଯୋଗରେ ଅବଗ୍ରାହୀ ଅଥଚ ବହୁ ପ୍ରାଚୀନ, ପ୍ରାଗ୍ ଐତିହାସିକ ପରମ୍ପରାର ପ୍ରଭା ଓ ପ୍ରଭାବରେ ମହିମାନ୍ୱିତ—ତାହା ଜାଣିଶୁଣି ମଧ୍ୟ ହୁଏତ ଅନେକେ ଠିକ୍ ଭାବେ ଜାଣି ନାହାନ୍ତି କି ଶୁଣି ନାହାନ୍ତି । ଅଧିକନ୍ତୁ ସେଥିପାଇଁ ବିଶ୍ୱର ସମସ୍ତ 'ଆଶ୍ଚର୍ଯ୍ୟ' ବା 'ବିସ୍ମୟ' ମଧ୍ୟରେ ଜଗନ୍ନାଥ ଯେ ପ୍ରଥମ (ଯେଉଁ ମାପକାଠିରେ ସିଏ ଦେଖୁଥା ନାହିଁକି) ଏ କଥା ସେମାନେ ସ୍ୱୀକାର କରି ନାହାନ୍ତି ।

ବାଇବେଲ୍‌ରେ ଗୋଟାଏ କଥାରେ କୁହାଯାଇଛି ଯେ—God has created man after his own image. ଅର୍ଥାତ୍ ଈଶ୍ୱର ନିଜ ଛାଞ୍ଚରେ ମନୁଷ୍ୟକୁ ଗଢ଼ିଛନ୍ତି । କିନ୍ତୁ କେତେକ ବାସ୍ତବବାଦୀ ଏହାର ଠିକ୍ ବିପରୀତ ଭାବେ କହନ୍ତି ଯେ– Man has created God after his own image, ଅର୍ଥାତ୍ ମଣିଷ ତା'ର ଭଗବାନଙ୍କୁ ନିଜ ଢାଞ୍ଚାରେ ଗଢ଼ିଛି । ଦୁଇଟିଯାକ କଥା ହୁଏତ ସତ୍ୟ । କାରଣ ଭଗବାନ ଚେତନ୍ ସତ୍ତା ଦେଇ ମଣିଷକୁ ଗଢ଼ି ନଥିଲେ କୌଣସି ମଣିଷର ଚେତନାହେଲେ ସତ୍‌ଚିନ୍ତା, ସଦ୍‌ଭାବ ଓ ଈଶ୍ୱରାଧାରିତ ସୃଷ୍ଟି ସମ୍ବନ୍ଧରେ ଧାରଣା ଆସନ୍ତା ନାହିଁ । ଠିକ୍ ଅନ୍ୟ ପକ୍ଷରେ ମଣିଷ ଈଶ୍ୱରଙ୍କୁ ସଠିକ୍ କ'ଣ ବୋଲି ଜାଣି ନପାରି, କିଭଳି ଠିକ୍ ବର୍ଣ୍ଣନା କରିବ ଜାଣି ନପାରି ନିଜର କଳ୍ପନା ମୁତାବକ ଯେଉଁ ରୂପ ବା ଭାବରେ ପୂଜା, ଭକ୍ତିକରି ଆସିଛି, ସେ ରୂପ ଓ ଭାବ ମଣିଷର ନିଜସ୍ୱ ସୃଷ୍ଟି ନୁହେଁତ ଆଉ କ'ଣ ?

ନିରାକାର, ସାକାର, କିମ୍ଭୂତକିମାକାର, ସଗୁଣ, ନିର୍ଗୁଣ, ଶୂନ୍ୟ, 'ଅଯୋନି ସମ୍ଭୂତ' ପୁଣି 'ସକଳ ଘଟେ ନାରାୟଣ' ଠାରୁ ଆରମ୍ଭ କରି ଅଗ୍ନି, ବାୟୁ, ପାଷାଣ, ଶାଳଗ୍ରାମ, ମନ୍ଦିର, ମସ୍‌ଜିଦ୍, ଗ୍ରୀର୍ଜା ଆଦି ଯେଉଁ ରୂପରେ ଈଶ୍ୱରଙ୍କୁ ଆମେ ଦେଖୁଛୁ ସେ ତ ଆମ ସୃଷ୍ଟି । ସେ ଚିତ୍ର, ସେ ଗାଥା, ସେ ଗ୍ରନ୍ଥ, ସେ ସ୍ୱପ୍ନ ସବୁ ମଣିଷର ଭ୍ରମ, ଭକ୍ତି, ଚିନ୍ତା, ଯୁକ୍ତି, ପ୍ରବୃତ୍ତି ବା ମାୟା, ତେଣୁ ମଣିଷ ଭଗବାନଙ୍କୁ ନିଜ ମତରେ ତିଆରି କରିନାହିଁତ ଆଉ କିଏ କରିଛି ?

ମାତ୍ର ଏକଥା ବି ସତ୍ୟ ଯେ ଏ ମର୍ତ୍ତ୍ୟର ମଣିଷ ଦ୍ୱାରା ନିର୍ମିତ, ପ୍ରକାଶିତ, କଳ୍ପିତ ପରିପ୍ରଶ୍ରିତ ବା ପୂଜିତ ଦେବତାଠାରୁ ସତରେ ଯଦି କିଏ ଈଶ୍ୱର ଥାଆନ୍ତି ସେ ନିଶ୍ଚୟ ଭିନ୍ନ । ପୁଣି ଅନ୍ୟ ଏକ ଦୃଷ୍ଟିରୁ ତାହାଠାରୁ ଅଭିନ୍ନ ମଧ୍ୟ ନୁହେଁ—ଏଇଥିପାଇଁ ଯେ ସର୍ବଦ୍ରଷ୍ଟା, ସର୍ବଗ୍ରାହୀ, ସର୍ବେସର୍ବା, ସର୍ବାଙ୍ଗ ପରିବ୍ୟାପ୍ତ ଈଶ୍ୱର ନିଶ୍ଚୟ "ଓଁ ତତ୍‌ସତ୍"ଠାରୁ ଆରମ୍ଭ କରି ଶାଳଗ୍ରାମ, ବିଗ୍ରହ, ଦୁର୍ଗା ଭିତରେ, ଖ୍ରୀଷ୍ଟିଆନର କ୍ରସ ଭିତରେ, ମୁସଲମାନର 'ଆଜାନ୍' ଓ ଶିଖର 'ସତ୍‌ଶ୍ରୀ ଅକାଲ୍' ଡାକରେ ମଧ୍ୟ ଥିବେ । ତେଣୁ ଯାହା ପରୀକ୍ଷା ନିରୀକ୍ଷାର ଊର୍ଦ୍ଧ୍ୱରେ ସେ ବିଷୟରେ ଯୁକ୍ତି କାହିଁକି ? ଏହାହିଁ ବିଶ୍ୱାସ । "ବିଶ୍ୱାସେ ମିଳଇ କୃଷ୍ଣ ତର୍କେ ବହୁଦୂର" । ଧର୍ମ ଏକ ବିଶ୍ୱାସ । ସଂସ୍କୃତି ତା'ର ପରିପ୍ରକାଶ । ସାଧନା ତା'ର ଆଚରଣ । ମୁକ୍ତି ବା ଶାନ୍ତି ତା'ର ସିଦ୍ଧି ବା ଫଳାଫଳ ।

ଅତଏବ ଜଗନ୍ନାଥ ଧର୍ମ ବା ସଂସ୍କୃତି ଏହିପରି ଏକ ଧ୍ରୁବାର ବିଶ୍ୱାସ ଓ ତତ୍ ସମ୍ପର୍କୀୟ ପରିପ୍ରକାଶିତ କେତେ ଘଟଣା, ପରମ୍ପରା, ବିଧି ବିଧାନାଦି । ଏହି ଜଗନ୍ନାଥ ଧର୍ମ ଓ ସଂସ୍କୃତି ବିଶ୍ୱର ସର୍ବ ପ୍ରଥମ 'ବିସ୍ମୟ' ବୋଲି ମୋର ମତ । ଯେଉଁ ମଣିଷ ତାକୁ ନିଜର ଭାବ, ଚିନ୍ତା, ବିଶ୍ୱାସ, ସଂସ୍କାର, ମାୟା ବା ସ୍ୱପ୍ନ ଦେଇ ସୃଷ୍ଟି କଲା ଓ ଯେଉଁମାନେ ତା'ର ପରିବର୍ଦ୍ଧନ କଲେ, ପୃଷ୍ଠପୋଷକତା କଲେ ସେମାନେ ମଧ୍ୟ କମ୍ ଆଶ୍ଚର୍ଯ୍ୟଜନକ ନୁହନ୍ତି ।

ପୃଥିବୀରେ ବହୁ ଧର୍ମର ଇତିହାସ ପଢ଼ିଲେ ମନେ ହେବ ତାହା ମଣିଷର ଭୌଗୋଳିକ ପରିସ୍ଥିତି, ପରିବେଶ ଯୋଗୁ, ଦୁଃଖ, କଷ୍ଟ, ଆନନ୍ଦର ପ୍ରତିକ୍ରିୟା ଯୋଗୁ ଏବଂ ମଣିଷର ଆଶା, ଆକାଂକ୍ଷା ସ୍ୱପ୍ନ ଯୋଗୁ ଯାବତୀୟ ଧର୍ମ ଧାରଣା, ପୂଜାର ସୃଷ୍ଟି ହୋଇଛି ଏବଂ ଠିକ୍ ସେଇ ଧର୍ମ ନେଇ ଯୁଦ୍ଧ ଯାତ୍ରା, ସାମ୍ରାଜ୍ୟର ସୃଷ୍ଟି । ସମାଜର

ଉତ୍‌ଥାନ ପତନ ମଧ୍ୟ ସେଥିରୁ ସମ୍ଭବ । ସେ ସମସ୍ତ ଇତିହାସର ବସ୍ତୁ । ଆଧୁନିକ ବୈଜ୍ଞାନିକ–ସମାଜ–ତତ୍ତ୍ୱବିଦ୍ ତା'ର ସମୀକ୍ଷା କରି ତା'ର ମୂଲ୍ୟାଙ୍କନ କରିଛି ଓ କରିପାରେ । ମାତ୍ର ଜଗନ୍ନାଥ ଧର୍ମ, ସଂସ୍କୃତି ଯେ କୌଣସି ବୈଜ୍ଞାନିକ ଅନୁଶୀଳନରୁ ଊର୍ଦ୍ଧ୍ୱରେ ରହି ବିଶ୍ୱର ବିସ୍ମୟ ହୋଇ ଆସିଛି ଓ ହୋଇ ଚାଲିଛି । ପ୍ରଥମ ଯେଉଁ ଜଗନ୍ନାଥ ଯେଉଁ ରୂପରେ ଯାହାକୁ ବିଦିତ ହୋଇଥିଲେ, ଆଜି ସେ ରୂପ ଅବିକଳ ଅଛି କି ନା ତାହାକୁ ପରଖ କରିବା ବଡ଼ କଷ୍ଟ । କିନ୍ତୁ ସେ ବହୁରୂପୀ ଦେବତା ଯେଉଁ ଗୋଟିଏ ରୂପରେ ପୂଜା ପାଉଛନ୍ତି ବା ଏହି ପୁରୁଷୋତ୍ତମ କ୍ଷେତ୍ରରେ ଶ୍ରୀମନ୍ଦିରରେ ଏବେ ବିଂଶ ଶତାବ୍ଦୀର ଶେଷ ଦଶନ୍ଧି ଆଡ଼କୁ । ଏ ଶତାବ୍ଦୀର ଶେଷ ନବ କଳେବର ବେଳକୁ ଯେଉଁ ରୂପରେ ଥିବେ, ତାହା ଆଜିର ଆମର ଧର୍ମବିଶ୍ୱାସ ବା ବୈଜ୍ଞାନିକ ପରୀକ୍ଷା ନିରୀକ୍ଷା ବା ସାମ୍ପ୍ରତିକ ସାମାଜିକ ଘାତ ପ୍ରତିଘାତ ଉପରେ ନିର୍ଭର କରୁ ନାହିଁ । ବରଂ ଏହା ଏକ ଅତି ପ୍ରାଚୀନ ଐତିହାସିକ ଧର୍ମ ଧାରଣା, ସାଧନା ଆଚରଣ, ଚିନ୍ତା, ସ୍ୱପ୍ନମାନଙ୍କର ମିଳିତ ଅଭିମାନ ବା ଅଭ୍ୟୁତ୍‌ଥାନରୁ ସୃଷ୍ଟ ଏକ ବିବର୍ତ୍ତନଶୀଳ ଜୀବନ୍ତ ଧର୍ମ ବିଶ୍ୱାସ ଯାହା ଜଗନ୍ନାଥ ସଂସ୍କୃତି ନାମରେ ଆଜି ବିଶ୍ୱ ବିଖ୍ୟାତ । ଏହା ଜାରା ଶବରର ଅନୁତାପ ଓ ତହରବର୍ତ୍ତୀ ଶୂନ୍ୟବାଣୀଠାରୁ ଆରମ୍ଭ କରି ବିଶ୍ୱାବସୁର ଏକାନ୍ତ ଏକସୁଟିଆ ନୀଳ କନ୍ଦରର ନୀଳମାଧବ ହୋଇ ନାରଦ, ମାର୍କଣ୍ଡ ପ୍ରଭୃତି ଋଷିଙ୍କ ଦ୍ୱାରା ଦର୍ଶିତ ଜ୍ୟୋତି, ଇନ୍ଦ୍ରଦ୍ୟୁମ୍ନଙ୍କ କର୍ଣ୍ଣପାତ ହୋଇଥିବା ଶୂନ୍ୟବାଣୀ ଓ ସ୍ୱପ୍ନ ହୋଇ, ମହୋଦଧି କୂଳ ବାଲୁକା ସ୍ତରରେ ରତ୍ନବେଦୀ ରୂପେ ଯୁଧିଷ୍ଠିରଙ୍କ ଦୃଷ୍ଟି ପଥାରୂଢ଼ ହୋଇ ଶେଷକୁ ମହୋଦଧିରୁ ପ୍ରାପ୍ତ ଏକ ଭାସମାନ କାଷ୍ଠ ଯାହା ଅଦ୍ଭୁତ କର୍ମା ବିଶ୍ୱକର୍ମାଙ୍କ ଦ୍ୱାରା ଖୋଦିତ, ତଥାକଥିତ ଅର୍ଦ୍ଧନିର୍ମିତ ଦାରୁ ବ୍ରହ୍ମ ରୂପେ ପୂଜା ପାଇ, ଦଶାବତାର ରୂପେ ପୂଜିତ, ବୁଦ୍ଧଦନ୍ତଗର୍ଭା ପୁଣି ନାଭିକମଳରେ ପରଂବ୍ରହ୍ମଙ୍କୁ ଗୁପ୍ତ ରଖି, ଚକି ଖାଁ ଉପରେ ବିଲିକାର ପଦ୍ମ, ଶୈବାଳରେ ଲୁକ୍‌କାୟିତ ରହି, ପୁଣି ପତିତପାବନ ଭାବେ ଭକ୍ତ ରାମଚନ୍ଦ୍ର ରାଜାଙ୍କୁ ଦର୍ଶନ ଦେବାପାଇଁ ଦ୍ୱାର ଦେଶରେ ଉଭା ହୋଇ ସର୍ବସାଧାରଣଙ୍କ ପାଇଁ ରଥରେ ଟଣା ହୋଇ କେତେବେଳେ ମହାସଂଭ୍ରାନ୍ତ ରାଜାଧିରାଜ ପରି ସ୍ନାନ ଯାତ୍ରା ନୌକା ବିହାର କରି, ବିଡ଼ିଆ ପାନ ଖାଇ, ଫୁଲ ସଜ୍ଜାରେ ସଜ୍ଜିତ ବଡ଼ସିଂହାର ବେଶୀ ଦେବଦାସୀ ନୃତ୍ୟ ରସିକ, ଭୀମ ଭୈରବ ଭୟ ଉଦ୍ରେକ କାରୀ ବିଶାଳ ଅଚଳ କାଠ କଣ୍ଢେଇ ପୁଣି ଆମର ଇହ, ପର ଜଗତର ନାଥ ଓ ପୁରୁଷ ଉତ୍ତମ । ତାଙ୍କର କ୍ଷେତ୍ର ଶ୍ରୀକ୍ଷେତ୍ର, ଶଙ୍ଖ କ୍ଷେତ୍ର, ନିତ୍ୟ ଲୀଳା ଭୂମି, ଧ୍ୱଂସ ପ୍ରଳୟରେ ମଧ୍ୟ ଅକ୍ଷୟ, ଅସୀମ, ନୀଳାଚଳ । ଶାକ୍ତ ଶୈବ, ବୈଷ୍ଣବ, ବ୍ରାହ୍ମଣ, ବାବାଜୀ, ଗୋସେଇଁ, ଅବଧୂତ, ଅଘୋରୀ, ବୌଦ୍ଧ, ଜୈନ, ଅଲେଖ ଦାସିଆ, ଯବନ ସାଲବେଗ ଓ ପରିଶେଷରେ ଗୋରା ଖ୍ରୀଷ୍ଟିୟାନ୍‌ଙ୍କର ମଧ୍ୟ ଆରାଧ୍ୟ ଦେବତା ।

କିଏ କଲା ଏ ବିବର୍ତ୍ତନ, କିମିତି ମାନିଲେ ସମସ୍ତେ ? ବିଭିନ୍ନ ଭାଷାଭାଷୀ, ବିଭିନ୍ନ ରୁଚି, ବିଭିନ୍ନ ଧର୍ମଧାରଣାର ଅଗଣିତ ମଣିଷର ଯାହା ଯାହା ପରସ୍ପର ବିବଦମାନ ବିଶ୍ୱାସ ବା ସଂସ୍କାରର ସାଲିସିଆକୁ ନେଇ ଗଢ଼ି ଉଠିଛି ଏ ଏବ ଅନୁଷ୍ଠାନ ଆଶ୍ଚର୍ଯ୍ୟ ଜନକ ଭାବରେ ଏବଂ କଣାପଡୁଛି ଏହା କ୍ଷୟାଭିମୁଖୀ ବା ଲୋପ ପ୍ରାୟ ଅନୁଷ୍ଠାନ ନୁହେଁ । ନାନା ବାଧା ବିଘ୍ନ, ଉତ୍‌ଥାନ ପତନ ଭିତରେ ଏ ଯେମିତି ଚିର ଦେଦୀପ୍ୟମାନ, ଜୀବନ୍ତ ଅନୁଷ୍ଠାନ । ଏକ ଆବାହମାନକାଳରୁ ଗଢ଼ି ଆସୁଥିବା ପ୍ରାଚୀନ, ଆଦିମ ସଂସ୍କୃତି ନିତ୍ୟ ନୂତନ, ଚିରଭାସ୍ୱର, ଧର୍ମ ବର୍ତ୍ତମାନ, ବ୍ୟାଖ୍ୟା କରିବା ଭିତରେ ସତେ ଯେମିତି ଏହାଠୁ ବଳି ଧର୍ମ ସମ୍ପର୍କରେ ମଣିଷ ଆଉ କିଛି ନୂଆ କଥା ଚିନ୍ତା କରି ପାରେ ନା ।

ଯିଏ ଏ ଈଶ୍ୱରର ରୂପ କଳ୍ପନା କରିଥିଲେ, ସେ ମଣିଷ ନୁହନ୍ତି, ଶୂନ୍ୟରୁ ଆସିଥିବା ଅପୌରୁଷେୟ ବିଶ୍ୱକର୍ମା, ସ୍ୱୟଂ ବ୍ରହ୍ମା ବା ଚିନ୍ତ ନାରାୟଣ । ଏହା ଏଇଥି ପାଇଁ ସତ୍ୟ ମନେ ହୁଏ କାରଣ କୌଣସି ଛପତି, ଚିତ୍ରକର, ଶିଳ୍ପୀ, ବୈଜ୍ଞାନିକ, କାରିଗର ଏହାଠୁ ଅଧିକ କଳ୍ପନା କରୁତ ! ନିରାକାର ଈଶ୍ୱରଙ୍କୁ ଯଦି ସାକାର କରାଯାଏ, ତାହା କେଉଁ ଡିଜାଇନ୍‌ର ହେବ ? ଏ ଚିତ୍ରଠୁ ଆଉ ଏକ ଅପେକ୍ଷାକୃତ ଭଲ ମୂର୍ତ୍ତି ସେ କରି ପାରିବ ନାହିଁ । ଏଥି ରୂପରେ ଅରୂପର ସନ୍ଧାନ, ମଣିଷରେ ଦେବତ୍ୱର ଆରୋପ । ଭକ୍ତ ଭକ୍ତି, ପ୍ରେମ, ଦଣ୍ଡ, ତୁଷ୍ଟି, ଅତୁଷ୍ଟି, ଦୃଷ୍ଟ, ଅଦୃଷ୍ଟ, ସାକାର, ନିରାକାର ସମାରୋହ । ବ୍ୟକ୍ତ, ଅବ୍ୟକ୍ତ ନିର୍ଗୁଣ, ସଗୁଣର ବିଚିତ୍ର ପ୍ରକାଶ । ସମ୍ରାଟ୍, ଭିକ୍ଷୁ, ଭକ୍ତ, ବାବାଜୀ, କାଳାନ୍ତକ ଯମ, ପୁଣି କରୁଣାମୟ ଚକାଡୋଳା, ବିପୁଳ ବଳୀୟାର ଭୁଜ । ଅଚଳ, ସଚଳ, ସର୍ବବ୍ୟାପୀ, ସର୍ବଦ୍ରଷ୍ଟା, ସର୍ବଭୋକ୍ତା, ପୁଣି ସ୍ଥାଣୁ, ଦାରୁ, ବ୍ରହ୍ମ, ମନୁଷ୍ୟ ପୁଣି ଈଶ୍ୱର, ପରିବର୍ତ୍ତନ ଶୀଳ ନବ କଳେବର ପୁଣି କଳେବର ବିହୀନ ଜ୍ୟୋତି । ନ୍ୟାସ ମନ୍ତ୍ର, ତନ୍ତ୍ର, ଯନ୍ତ୍ର, ପୁଣି ରଥରେ ନଡ଼ିଆ, କଦଳୀ ଫୋପଡ଼ା, ସହୁଥିବା ଗାଳି, ଅଶ୍ଳୀଳ ଢଗଢମାଳି ଶୁଣୁଥିବା ଦାରୁ ରୂପୀ ଠାକୁର । ପାପୀ, ଅନ୍ଧବିଶ୍ୱାସୀ, କୁସଂସ୍କାରଗ୍ରସ୍ତ ମଣିଷର ଖିଆଲର ଖେଳନା ଯାହାର ବିଶ୍ୱାସରେ ନରନାରୀ, ଜାତିଧର୍ମ ସବୁ ଏକାକାର । ମଣିଷ ସମୁଦ୍ରର ଜୁଆରରେ ସବୁ ଭେଦଭାବ ଭୁଲି ଆଚଣ୍ଡାଳ ବ୍ରାହ୍ମଣ ସବୁ ସାମାଜିକ ବାଧା ବନ୍ଧନ ଭାଙ୍ଗି ନିତ୍ୟ ଆବେଗମୟ କୋଳାହଳ ଯାତ୍ରାରେ ଯେମିତି ନିଜକୁ ଲୀନ କରିଦେବା ପାଇଁ ଅଧୀର । ସେ ଆବେଗ ଉଦ୍ରେକକାରୀ । ମଣିଷର ଚୈତନ୍ୟକୁ ମୋହଗ୍ରସ୍ତ କରି ନିଜ ଆଡ଼କୁ ଅଞ୍ଚଳ ଚଞ୍ଚଳ ପତାକାର ଆହ୍ୱାନରେ, ଘଣ୍ଟ ନିର୍ଘୋଷରେ, ଚକା ଚକାଡୋଳା, କଳା ଧଳା ବୃତ୍ତାକାର ଚକ୍ଷୁ, ବଡ଼ ଲାଲ୍ ଚଉଡା ଅଧରର ସମସ୍ତ ଅସୁନ୍ଦରିଆ ରଙ୍ଗ ଭିତରୁ ଆକର୍ଷଣମୟ "ଆକର୍ଷୟତେ ଇତି କୃଷ୍ଣ" ଭଳି ଗୋପୀଙ୍କୁ ଟାଣିଲା ଭଳି ରଥଯାତ୍ରାରେ ମଣିଷକୁ ଟାଣୁଥିବା ସେହି ଅଦ୍ଭୁତ ରୂପକ – ସେ କିଏ ? କେଉଁ ଦାମ୍ଭିକ, ଏକଛତ୍ରବାଦୀ ସମ୍ରାଟ୍ ବା ପୁରୁଷମାନଙ୍କ ପାଇଁ ଅନିନ୍ଦ୍ୟ ସୁନ୍ଦରୀ କେଉଁ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ? ଅଥବା ନାରୀମାନଙ୍କ ପାଇଁ କେଉଁ ଅପରୂପ ଲାବଣ୍ୟମୟ କନ୍ଦର୍ପ ? କେଉଁ ଦୁଃଖୀ, ଭୋଗୀ, ଦଶାଗ୍ରସ୍ତ ପାଇଁ ଅମୃତର ଧାରା ? କେଉଁ ଲୋଭୀ, ଦରିଦ୍ର, ପାଇଁ ଅସରନ୍ତି ଧନର ଭଣ୍ଡାର ? ସେ ଟାଣିନିଏ ସମସ୍ତଙ୍କୁ ଟାଣିନିଏ । ପାଗଳ କରେ, ଉନ୍ମତ୍ତ କରେ, ମଣିଷର ବର୍ତ୍ତମାନ, ଅତୀତ, ଭବିଷ୍ୟତକୁ ବିସ୍ମରଣ କରାଏ–ତେଣୁ ସିଏ ଯିଏ ହୁଅନ୍ତୁ ପଛକେ, ତାଙ୍କୁ ମଣିଷ ଗଢ଼ିଥାଉ ପଛକେ, ତାଙ୍କର ଭଙ୍ଗାଗଢ଼ା, ଟଣାଓଟରା, ସଜାସଜି ରହସ୍ୟ ମଣିଷକୁ ଜଣା ଥାଉ ପଛକେ, ସେ ସବୁରି ଊର୍ଦ୍ଧ୍ୱରେ ଅଦ୍ଭୁତ ରହସ୍ୟମୟ ଜୀବନ୍ତ ଠାକୁର ଶ୍ରୀଜଗନ୍ନାଥ ଶ୍ରୀପୁରୁଷୋତ୍ତମ । ତାଙ୍କୁ ଯେଉଁ ରୂପରେ ଯିଏ

ଗଣେଶଙ୍କୁ ଏକାନ୍ତ ଇଚ୍ଛା କରିବ ପାଇ ପାରିବ । ତାଙ୍କୁ ଯେମିତି ଖୁସି ସେମିତି ଗଢ଼ି ପାରିବ, ଧରିପାରିବ, ନଚେଇ ପାରିବ, ଖୋଇ ପାରିବ, ଶୋଇ ପାରିବ, ପିଟି ପାରିବ, ଗାଳି ଦେବ, ଅମୁହାଁ ବନ୍ଦ କରିବ, ଗାଧୋଇ ଦେବ– ସେ କିଏ ତା'ର ଏତେ 'ଆପଣାର' । ତେଣୁ ସେ ଏ ସବୁର ବହୁ ଉର୍ଦ୍ଧ୍ୱରେ । ତାଙ୍କ ରହସ୍ୟର ପୂର୍ଣ୍ଣାଙ୍ଗ ଉନ୍ମୋଚନ ସରିନାହିଁ, ସରିବନାହିଁ । ସତ୍ୟ, ତ୍ରେତୟା, ଦ୍ୱାପର ପରି ଏବେ କଳିରେ ଏ ରୂପରେ ଅଛି । ଏ ରୂପ ବଦଳିବ କି ନା କେଜାଣେ, କିନ୍ତୁ ଏତିକି ଜାଣେ "ଆହା ଏ ଅତୁଲ୍ୟ ରୂପ, ଅବ୍ୟୟ ଅଦ୍ଭୁତ ରୂପ"ର ଆଶ୍ଚର୍ଯ୍ୟ ପ୍ରତିବିମ୍ବ । ନଚେତ୍ ଚେତନା ଥିବା କୌଣସି ବା ଶିଳ୍ପୀ ଏଭଳି ଦିଅଁ ଗଢ଼ି ପାରିବ ନାହିଁ । ଦିଅଁ ଗଢୁ ଗଢୁ ମାଙ୍କଡ ବୋଲି କଥା ଅଛି । ଏ ଦିଅଁ ଗଢୁ ଗଢୁ ବିଶ୍ୱକର୍ମା ମାଙ୍କଡ଼ ଗଢ଼ିଛି ଠିକ୍, କିନ୍ତୁ ସେ ବିଶ୍ୱକର୍ମାର ହାତଗଢ଼ା କାଳିଆ ମାଙ୍କଡ଼ କି ଅଦ୍ଭୁତ ନୟନାଭିରାମ, କଳାକୃଷ୍ଣ, ଚୈତନ୍ୟ, ବୁଦ୍ଧ, ଶିବଶକ୍ତି, ନୃସିଂହ, ଗଣପତିଙ୍କର ଅପୂର୍ବ ସମାରୋହ ପ୍ରଦର୍ଶନ ଚମତ୍କୃତି ନ କରିଛି ? ସିଏ ଯିଏ ହୁଅନ୍ତୁ ପଛକେ ସେ ନିଜକୁ ନିଜେ ଇଚ୍ଛାକରି ଏହି ରୂପରେ ଗଢ଼ିଛନ୍ତି ନିଶ୍ଚୟ । ତେଣୁ ଏହା ଅପୌରୁଷେୟ, ଅମାନବୀୟ । କାରଣ ମନୁଷ୍ୟ ଶିଳ୍ପୀ ଆପେ ଆପେ ଏମିତି କଳ୍ପନା କରି ପାରିବ ନାହିଁ କିମ୍ବା ଅଧା ଗଢ଼ା ଦେବତା ଏଭଳି ପୂର୍ଣ୍ଣାଙ୍ଗ ଯେ ଆଉକେହି ସାହାସ କରି, ବୁଦ୍ଧି ଖଟେଇ ତା'ର ଉନ୍ନତ ଯୋଜନା ଦ୍ୱାରା ସେ ମୂର୍ତ୍ତିକୁ ପୂର୍ଣ୍ଣାଙ୍ଗ କରିପାରିବ ନାହିଁ । ସବୁ ଭଲ ଚିହ୍ନକୁ ଏକାଠି କରି ଭଲ ଦିଅଁ ଟିଏ ଗଢୁ ଗଢୁ ମଣିଷ ମାଙ୍କଡ଼ ଗଢ଼ି ପକେଇବା ସ୍ୱାଭାବିକ । ସବୁ ଭଲ ଜୀବଜନ୍ତୁଙ୍କ ଭଲ ଦେହେରା ଏକାଠି କରି ଭଗବାନ ଓଟ ଭଳି କଦର୍ଯ୍ୟ ପଶୁଟିଏ ଗଢ଼ିଛନ୍ତି ବୋଲି କୁହାଯାଏ । କନ୍ତୁ ଓଟ କେତେ ଦରକାରୀ ଜୀବଟିଏ ସତେ– ମରୁଭୂମିର ତରୀ ପାର ଉତାର କଲା ବାଲା ଜାହାଜ । ନବ ଗୁଞ୍ଜରର ମୂର୍ତ୍ତି ଯେପରି ଈଶ୍ୱର ସୃଷ୍ଟ ଆଶ୍ଚର୍ଯ୍ୟ କଳ୍ପନା–କେବଳ ଭକ୍ତ ସଖା ଅର୍ଜୁନ ତା'ର ରହସ୍ୟ ଭେଦ କରି ପାରି ତା'ର ଆଶୀର୍ବାଦ ଲୋଡ଼ିଲା, ଯେପରି କୁରୁକ୍ଷେତ୍ରରେ 'ବିଶ୍ୱରୂପ' ଦେଖି ମୋହ ଛାଡି ପାର୍ଥ ପୁଣି ଜୀବନ–ଯୁଦ୍ଧ କ୍ଷେତ୍ରରେ ସତ୍ୟ ନ୍ୟାୟ ପାଇଁ ପୁଣି ଧନୁ ଧରିଲା ଠିକ୍ ସେହିପରି ଜଗନ୍ନାଥଙ୍କ ମୂର୍ତ୍ତି– ଅଦ୍ଭୁତ ଆଶ୍ଚର୍ଯ୍ୟ ଆନନ୍ଦ, ମଙ୍ଗଳମୟ ନବଗୁଞ୍ଜରର ବା ବିଶ୍ୱରୂପ ଈଶ୍ୱରଙ୍କ ନିଜ ସୃଷ୍ଟି । ତା'ର ଅଗଣିତ ଭକ୍ତ, ଦାର୍ଶନିକ, ସଖା, ତାଙ୍କ ମୂର୍ଖ ଜନସାଧାରଣ ପତିତମାନଙ୍କୁ ଉଦ୍ଧାର କରିବାକୁ ବିପୁଳ ଭକ୍ତି ବିସ୍ତାର କରିଅଛନ୍ତି, ଚକାଡୋଳାରେ ଯୋଜନ ଦ୍ରଷ୍ଟା ସେ ପ୍ରସାଦରେ ତୁଳସୀ, ପାଣି, ଖଜା, ସଞ୍ଜୁଡ଼ି ଅନ୍ନଠୁ କଦଳୀ, ନଡ଼ିଆ ଅସ୍ଥିର ଅଶ୍ରୁ ନୈବେଦ୍ୟ ପର୍ଯ୍ୟନ୍ତ ସବୁ ଗ୍ରହଣ କରୁଛନ୍ତି–ଏଇ ବିଶ୍ୱାସ ଯୁଗ ଯୁଗ ଧରି ଗଢ଼ି ଉଠିଛି ଏବଂ ପ୍ରତ୍ୟକ୍ଷ ଅଭିଜ୍ଞତାରେ ବହୁ ଲୋକଙ୍କୁ ବହୁ ଫଳ ଦେଇଛି ବୋଲି ଅସଂଖ୍ୟ କିମ୍ବଦନ୍ତୀ ରହିଛି, ରହିଛି, ଚାଲିଥିବ, କେହି ଏହାକୁ ମିଥ୍ୟା ବୋଲି ଚ୍ୟାଲେଞ୍ଜ କରି ପ୍ରମାଣ କରିପାରି ନାହିଁ ।

ଜଗନ୍ନାଥ ସଂସ୍କୃତିର ଆଖ୍ୟାନ, ବ୍ୟାଖ୍ୟାନରେ ଏତେ କଥା, ଗାଥା, ଭିନ୍ନ ଭିନ୍ନ ସଂସ୍କୃତିର ମିଶ୍ରଣ, ଗ୍ରହଣ, ମନ୍ଥନ, ଧର୍ମ ନିରପେକ୍ଷତା, ଧର୍ମସହାବସ୍ଥାନ, ଦ୍ୱୈତ ଅଦ୍ୱୈତ ଦର୍ଶନ, ପୁରାଣ, ପରମ୍ପରା, ଇତିହାସ, କିମ୍ବଦନ୍ତି ଏତେ ମାତ୍ରାରେ ପରସ୍ପର ପରସ୍ପର ଜଡ଼ିତ ହୋଇ ଯାଇଛି ଯେ କୌଣସି ପ୍ରତାପୀ ରାଜା ଶାସକ, ଅତ୍ୟାଚାରୀ, ଲୁଣ୍ଠନକାରୀ, ଐତିହାସିକ, ନାସ୍ତିକ ବିଧର୍ମୀ ଏହାକୁ ଇଚ୍ଛାକରି ବଦଳେଇ ଦେଇ ପାରିନାହିଁ କି ପାରନ୍ତା ନାହିଁ । ଏହାହିଁ ଏ ଜଗନ୍ନାଥ ସଂସ୍କୃତିରେ ବିଶ୍ୱବ୍ୟାପକତା (Universality) । ଏ ମହାସ୍ରୋତକୁ ଯେ ବାଧାଦେଇଛି ସେ ଏଥିରେ ଲୀନ ହୋଇଛି–ଏ ଧାରା ଅବାରିତ ଭାବେ ବହିଚାଲିଛି । କେହି ଇଚ୍ଛା କରି, କେବଳ ଧନ ଖର୍ଚ୍ଚ କରି, ଶାସନର ନିର୍ଦ୍ଦେଶ ଦେଇ ଜଗନ୍ନାଥ ସଂସ୍କୃତି, ପୂଜା ଅର୍ଚ୍ଚନା, ଭୋଗରାଗ, ଲୀଳାମାଧୁରୀ, ଆଚାର ରୀତି ନୀତି ଜବରଦସ୍ତି କରେଇ ପାରିବ ନାହିଁ ଯଦି ଲୀଳାମୟର ନିଜ ଇଚ୍ଛା ପୂରଣ ଦିଗରେ ସେ ନିଜେ ଇଚ୍ଛୁକ ନାହିଁ । ଭକ୍ତିର ଡୋରି ନ ଲାଗିଲେ କିଛି ହୋଇ ପାରିବ ନାହିଁ । ଗୋଟିଏ ମୁହୂର୍ତ୍ତରେ ସବୁ ଅଚଳ ହେବ । ଆଜି ପ୍ରତ୍ୟେକ ଶାସନ, ପ୍ରତ୍ୟେକ ଅନୁଷ୍ଠାନ, ପ୍ରତ୍ୟେକ ଶିଳ୍ପ ଯାହାକି ବହୁ ଲୋକଙ୍କ ଉପରେ ନିର୍ଭର କରୁଛି ତାହା ମୁହୂର୍ତ୍ତକ ଅବ୍ୟବସ୍ଥା ଫଳରେ ଅଚଳ ହୋଇ ଯାଉଛି । ମାତ୍ର ଗୋଟିଏ ଅଚଳ ମହାଦାରୁର ପ୍ରଚ୍ଛନ୍ନ ଇଙ୍ଗିତରେ, ତା'ର ବିସ୍ମିତ ନୀରବ ବୃତ୍ତାକାର ଚକ୍ଷୁ, ନୀରବ ରଙ୍ଗ ରଞ୍ଜିତ ଅଧରର ଶୂନ୍ୟ ବାଣୀରେ ସବୁ ଲୀଳା, ସମସ୍ତ ଅନୁଷ୍ଠାନ, ନୀତି ନିୟମ ଚାଲିଛି, ହଜାର ବର୍ଷ ଆଗରୁ ଚାଲିଛି । ମନେହୁଏ ଏମିତି ଚାଲିଥିବ । କାରଣ ଯୁଗ ଯୁଗ ଧରି କୌଣସି ବ୍ୟତିକ୍ରମ ହୋଇନାହିଁ । ଏ ସବୁକୁ ସବୁଠୁ ବେଶୀ କୁସଂସ୍କାର, ଭ୍ରମ ଓ ସମୟ ଅର୍ଥର ଅପଚୟ ବୋଲି ବିଚାର କରୁଥିବା ପାଶ୍ଚାତ୍ୟ ଜଗତର ଅର୍ଥ ପ୍ରାଚୁର୍ଯ୍ୟ (affluent) ଧର୍ମ ଧାରଣା ବିବର୍ଜିତ (secular) ସମାଜର ସର୍ବାଧୁନିକ ଯୁବକଯୁବତୀ ଶ୍ରୀଜଗନ୍ନାଥଙ୍କ ପ୍ରତି ବେଶୀ ଆକୃଷ୍ଟ କାହିଁକି ? କେବଳ ପ୍ରଚାରରେ ନୁହେଁ ଖିଆଲରେ ନୁହେଁ ମନେ ହୁଏ ଇଚ୍ଛାମୟ ପୁରୁଷୋତ୍ତମର କିଛି ଗୋଟାଏ 'ଡୋରି' ଆକର୍ଷଣ କରୁଛି ।

କିଏ କ'ଣ କାହିଁକି ଏ 'ଡୋରି' ବା ଆକର୍ଷଣ ? ଚନ୍ଦ୍ର, ସୂର୍ଯ୍ୟ, ଅଗ୍ନି, କାଷ୍ଠ, ପାଷାଣଠୁ ଆରମ୍ଭ କରି ସାକାର, ନିରାକାର, ନିର୍ଗୁଣ, ସଗୁଣ ବ୍ରହ୍ମ, ମଣିଷର ସବୁ ଜାତି, ସବୁ ରଙ୍ଗ, ସବୁ ଧର୍ମ, ସବୁ ବର୍ଣ୍ଣ, ସବୁ ଭାବନା, ସବୁ ନ୍ୟାୟ, ମୁକ୍ତି ମୋକ୍ଷ, ସତ୍ୟର ଯେତେ ଧାରଣା– ସମସ୍ତଙ୍କୁ ସମନ୍ୱୟ (Synthesis) କରି ପାରିବା ଭଳି ଏକ ଅତ୍ୟାଧୁନିକ, ବୈଜ୍ଞାନିକ ଦୃଷ୍ଟିକୋଣିକ, ଧର୍ମ ବିଦ୍ୱେଷ ରହିତ ଅଥଚ ସର୍ବ ଧର୍ମସାର ସଞ୍ଚାରିତ, ସରସ, ଜୀବନ୍ତ, ସାର୍ବଭୌମ ଈଶ୍ୱର କଳ୍ପନା (universal god concept) ରେ କଳ୍ପିତ ଏକ ମହାନ୍, ଉଦାର, ପ୍ରେମମୟ, ଉଦ୍ଧାରକାରୀ ଚିରନ୍ତନ ଭଗବାନ– ତାହାଠୁ ବଳି ଆଉ ଏକ ଅପେକ୍ଷାକୃତ ଭଲ (Better) ଇଷ୍ଟ ଚିନ୍ତା କରାଯାଇ ପାରିବ ନାହିଁ । ଏଇ ହେଲା'ଜଗତ'ର ନାଥ ଶ୍ରୀଜଗନ୍ନାଥ ଓ ପୁରୁଷ ମଧ୍ୟରେ ଉତ୍ତମ ଶ୍ରୀପୁରୁଷୋତ୍ତମ । କିନ୍ତୁ ତା'ର ମହିମା ଶୁଣିଲେ, ଦେଖିଲେ ବିଶ୍ୱାସ ହୁଏନା ସେ ଆମ ଚକାଡୋଳିଆ, ଜଗା କାଳିଆ । ସମୁଦ୍ର କୂଳରେ କେଉଁ କାଳୁ ଆମ ପୂର୍ବ ପୁରୁଷମାନେ ତାକୁ ଜଗୁଆଳୀ କରି ରଖି ଦେଇ ଆସିଛନ୍ତି ଆମ ସୁଖ ଦୁଃଖ ହାନି ଲାଭ ବୁଝିବାକୁ ।

ତେଣୁ ଆଗାମୀ ଶତାବ୍ଦୀ ଶତାବ୍ଦୀ ପାଇଁ ମଣିଷ ଥିବା ଯାଏ ଏ କ୍ଷେତ୍ରରେ ମହାତ୍ମ୍ୟ ରହିବ ଓ ବଢ଼ି ଚାଲିଥିବ । ତେଣୁ ଏ ମାଟି, ମନ୍ଦିର ଧନ୍ୟ । ରଥଯାତ୍ରା ଆଠକାଳି ବାରମାସୀ ଯାତ୍ରା ମଧ୍ୟରେ ଅନ୍ୟତମ । ଏ ଯାତ୍ରା ଗ୍ରହ ଗ୍ରହାନ୍ତରକୁ ବ୍ୟାପିଯିବ । ଯେଉଁଠି

ମଣିଷ ସଭ୍ୟତା ଗଢ଼ିବ ସେଠିକି ସେ ଯିବ । ସେ ଆପେ ଯିବ ନବେଦ୍ ଡ଼ୋରି ଲଗେଇ ଟାଣିବ । ସମସ୍ତଙ୍କୁ ତା'ର ରହସ୍ୟ, ସତ୍ୟ, ନିତ୍ୟ ମୁକ୍ତିର ସୁଗନ୍ଧ ବିତରଣ କରିବାକୁ, ପତିତପାବନ କରିବାକୁ, ନୀଳାଚଳ, ଶରଧା ବାଲିରେ, ପ୍ଲାବିତ କରିବାକୁ ସେ ଡ଼ାକିବ । ମହାଶୂନ୍ୟରୁ ଆହ୍ୱାନ ଦେବ, ଶୟନେ ସ୍ୱପନେ ଦେଖା ଦେବ, ଭରା ଦେବ । ରୋମାଞ୍ଚ ସୃଷ୍ଟି କରିବ । କେତେବେଳେ ଫୋପାଡ଼ି ଦେବ, ଦୁଃଖ ଦେବ । ତୁମକୁ ଦେଶାନ୍ତରୀ କରିବ, ପତିତ କରିବ, ତୁମକୁ ପରୀକ୍ଷା କରିବ । ତୁମେ କିନ୍ତୁ ତା'ର ଭୀମ, ଭୈରବ ଓ ବାଳାନ୍ତକ ଯମ ରୂପ ଦେଖି କେବେ ଡରିଯିବ ନାହିଁ । ତାକୁ ଗାଳି ଦେଇ ଦେଉ ବା ତା ଦଉଡ଼ାକୁ ଟାଣି ଧରି ଘୁଷୁରି ଘୁଷୁରି ହେଉ ତାକୁ ପାଖରେ ଧରିଥିବ, ପଛରେ ଗୋଡ଼ାଉ ଥିବ । ଛାଡ଼ିବ ନାହିଁ । ତୁମେ ନ ଛାଡ଼ିଲେ ସେ ଛାଡ଼ିବ ନାହିଁ । ତାକୁ ଧରିଥିଲେ ସଂସାରର ମହାସାଗର ବାଲବାଟୀ, ଦୁଃଖ କଷ୍ଟର ପାହାଡ଼, ଜୀବନର ମହାଶୂନ୍ୟ ସବୁ ପାର ହୋଇଯିବ । ଜୀବନଟା ଉଶ୍ୱାସିଆ, ହାଲୁକା ଲାଗୁଥିବ ।

ଏହିଭଳି ଦିଅଁଟିଏ ଆମେ ରଖିଛୁ । ବୋଧହୁଏ ଆମେ ଗଢ଼ିଛୁ । ସେ ଆମ ଘର ଜଣା, ଓଡ଼ିଆ ନାଗରିଆ ବା ଗୋରୁଚରା ଟୋକାଟିଏ ଭଳି ନାଁ ତା'ର ଜଗା କାଳିଆ । ଥରେ ତାକୁ ମନ ପୂରେଇ ଦେଖି ଆସ ତ । ଯେଉଁ ରୂପରେ ଦେଖିବାକୁ ଗ୍ରହିବ ସେ ସେମିତି ଦେଖା ହେବ । ଏମିତି ବିଶ୍ୱର ଏକ ଅଦ୍ଭୁତ, ଆଶ୍ଚ... ଅନୁଷ୍ଠାନ କୋଉଠି ପାଇବ ନାହିଁ । ତାକୁ ଠାକୁର କହ ବା ଦେ... ଗଡ଼ କହ, କଣ୍ଢେଇ କହ କି ପାଗଳାମି ଅନ୍ଧ ବିଶ୍ୱାସ କହ ... ସଂସ୍କୃତି ସବୁଥିରେ ଏକନମ୍ବର । ଯଥାଃ– ଅତି ପ୍ରାଚୀନ, ଅ... ଆଧୁନିକ, ଅତି ତଥ୍ୟମୟ, ଅତି ଲୀଳାମୟ, ଅତି ମାଧୁର୍ଯ୍ୟମୟ, ଅତି ସାର୍ବଭୌମ, ଅତି ମହିମାମୟ, ଅତ୍ୟୁଚ୍ଚ ଭାବ ସମନ୍ୱୟ, ଅ... ଭାବ ଗଦ୍‌ଗଦ୍ ମୟ, ଅତି ଦର୍ଶନମୟ, ଅତି ସମାଜ ବିଜ୍ଞ... ତତ୍ତ୍ୱମୟ, ଅତି ବିଭୂତି ପୂର୍ଣ୍ଣ, ଅତି ପ୍ରାଣ ପ୍ରଚୁରତା ପୂର୍ଣ୍ଣ, ଅତି ଅସୀମ ପୁଣି ଅତି ସହଜିଆ ସିନ୍ଧୁରେ ବିନ୍ଦୁ ପରି ପୁଣି ବିନ୍ଦୁରେ ସିନ୍ଧୁ ପରି–ଏ... ଅତୀତ ବର୍ତ୍ତମାନ ଓ ଭବିଷ୍ୟତକୁ ଗ୍ରୁଡ ତଥ୍ୟରେ ବାନ୍ଧି ର... ପାରୁଥିବା ମାନବ ଧର୍ମାନୁମୋଦିତ ଚିରନ୍ତନ ସତ୍ୟ । କିନ୍ତୁ ଆମ... ବଡ଼ ଦାଣ୍ଡରେ ବଡ଼ ଦେଉଳରେ ବ୍ରହ୍ମାଣ୍ଡରେ ... ଠାକୁର–ମହାପାତକ ନାଶନକାରୀ ମହାପ୍ରସାଦ ବିତରଣକାରୀ ମହାପ୍ରଭୁ– ଏହା ସବୁଠାରୁ 'ଆଶ୍ଚର୍ଯ୍ୟ' ସୃଷ୍ଟି ନୁହେଁ ତ ଆ... କ'ଣ ? ଓଡ଼ିଆର ବିଶ୍ୱ ସଂସ୍କୃତିକୁ ସବୁଠାରୁ ବଡ଼ ଅବଦାନ–ଚ... କାଳିଆ ସଂସ୍କୃତି–ଶ୍ରଦ୍ଧା, ଭକ୍ତି, ଭାତୃତ୍ୱ, ବସୁଧୈବ କୁଟୁମ୍ବକ୍–ର ଆଧ୍ୟାତ୍ମବାଦୀ ବାସ୍ତବ କାର୍ଯ୍ୟକାରୀ ସମ୍ଭାବନା ଓ ଚେତନା (a spiritual, realistic working hypothesis and conscience) ଯାହାକି ମାନବ ସଭ୍ୟତାକୁ ଧ୍ୱଂସ ମୁଖରୁ ରକ୍ଷା କରି ପାରିବ ।



"ବିଜେ କରିଥିବ ନନ୍ଦିଘୋଷ ରଥେ
ମୁଁ ଥିବି ତୁମ୍ଭ ସେବାରେ" ।
ଛେରାପହଁରା ପାଇଁ ଗଜପତି ରାଜାଙ୍କର ଯାତ୍ରା ।






ଭାଗବତ ବେହେରା

ଓଡ଼ିଶାର ୪୮୦ କି.ମି. ସମୁଦ୍ର ବେଳାଭୂମି ମଧ୍ୟରେ ବର୍ତ୍ତମାନ କେବଳ ପାରାଦ୍ୱୀପ ଓ ଗୋପାଳପୁରଠାରେ ଦୁଇଗୋଟି ବନ୍ଦର ରହିଛି । ଗୋପାଳପୁର କ୍ଷୁଦ୍ର ବନ୍ଦର ବର୍ଷର କେବଳ ଅକ୍ଟୋବର ମାସଠାରୁ ମାର୍ଚ୍ଚ ମାସ ପର୍ଯ୍ୟନ୍ତ କାର୍ଯ୍ୟକ୍ଷମ ହୁଏ । ଅନ୍ୟାନ୍ୟ ମାସଗୁଡ଼ିକରେ ଏହି ବନ୍ଦରରେ ପାଗ ପ୍ରତିକୂଳ ରହୁଥିବାରୁ ମାଲ ସରବରାହ ହୋଇପାରେ ନାହିଁ । ଏହାକୁ ଏକ ସବୁଦିନିଆ ବନ୍ଦରରେ ପରିଣତ କରିବା ପାଇଁ ସରକାର ପଦକ୍ଷେପ ନେଉଛନ୍ତି ।

ଓଡ଼ିଶା ସରକାର ବାଲେଶ୍ୱର ନିକଟସ୍ଥ ପଞ୍ଚୁପଡା ନଦୀର ଦକ୍ଷିଣ ପାର୍ଶ୍ୱର ବାହାବଳପୁରଠାରେ ଏକ କ୍ଷୁଦ୍ର ବନ୍ଦର ସ୍ଥାପନ କରିବାକୁ ପଦକ୍ଷେପ ନେଇଛନ୍ତି । ଏଠାରେ ବିଭିନ୍ନ ଆନୁଷଙ୍ଗିକ ସୁବିଧା ସୁଯୋଗ ରହିବା ସଙ୍ଗେ ସଙ୍ଗେ ପ୍ରାକୃତିକ ଭାବେ ନୌ-ଚଳାଚଳ ପାଇଁ ଗଭୀରିଆ ହୋଇଥିବାରୁ ଏହା ଏକ ଆଦର୍ଶ ବନ୍ଦରରେ ପରିଣତ ହୋଇପାରିବ । ଅନ୍ୟ ବନ୍ଦର ଭଳି ଏଠାରେ ବାଲୁକା ସଞ୍ଚାଳନ ଫଳରେ ନଦୀର ମୁହାଣ ପୋତି ହୋଇଯାଏ ନାହିଁ କିମ୍ବା ମୁହାଣ ବାରମ୍ବାର ସ୍ଥାନାନ୍ତରିତ ହୁଏ ନାହିଁ । ତେଣୁ ଅଳ୍ପ ଟଙ୍କା ବ୍ୟୟରେ ଏହା ଏକ ଉନ୍ନତ ପୋତାଶ୍ରୟରେ ପରିଣତ ହୋଇ ପାରିବ । ବନ୍ଦର ନିମିତ୍ତ ମାଲ ସରବରାହ ପାଇଁ ୧୦୦ରୁ ୨୦୦ ଟନ୍‌ର ଡାଙ୍ଗ ଓସାରିଆ ଫ୍ଲେଟ ବୋଟ ଜାହାଜ ସବୁ ଆସିବା ପାଇଁ ୬ ଫୁଟରୁ ୮ ଫୁଟ ପାଣି ଦରକାର ହୋଇଥାଏ । ଯାହାକି ବିନା ଡ୍ରେଜିଂରେ ପ୍ରାକୃତିକ ସୁବିଧା ଯୋଗୁଁ ଏଠାରେ ସମ୍ଭବପର ହୋଇଛି ।

ବନ୍ଦର କ୍ଷେତ୍ରରେ ଆମେ ଅନ୍ୟ ରାଜ୍ୟଗୁଡ଼ିକଠାରୁ ବହୁତ ପଛରେ ପଡ଼ିଛୁ । ଆମର ଯେଉଁ ୨ଟି ବନ୍ଦର ଅଛି ତାହା ମଧ୍ୟ ଭାରତର ଅନ୍ୟାନ୍ୟ ବନ୍ଦର ତୁଳନାରେ ବହୁତ ପଛରେ ଅଛି । ଗୋପାଳପୁର ସବୁଦିନିଆ ବନ୍ଦର ହୋଇ ନଥିବାରୁ ବହୁତ କମ୍ ମାଲ ଯାତାୟାତ କରୁଛି । ବାହାବଳପୁର ବନ୍ଦର ବର୍ତ୍ତମାନ ଯେଉଁ ଅବସ୍ଥାରେ ଅଛି ଏଥିରେ ୨ ଲକ୍ଷ ଟନରୁ ଅଧିକ ମାଲ ଯାତାୟାତ ହୋଇପାରିବ ବୋଲି ଆଶା କରାଯାଏ ।

ବିଗତ ଦୁଇବର୍ଷ ମଧ୍ୟରେ ରାଜ୍ୟ ସରକାର ବାହାବଳପୁରକୁ ଏକ ବାଣିଜ୍ୟିକ ବନ୍ଦର ଭାବେ ପ୍ରତିଷ୍ଠିତ କରିବା ପାଇଁ ନିଶ୍ଚାପର ଉଦ୍ୟମ ଅବ୍ୟାହତ ରଖିଛନ୍ତି । ପ୍ରଥମ ପଦକ୍ଷେପରେ ଆବଶ୍ୟକ ହାଇଡ୍ରୋଗ୍ରାଫିକ ସର୍ଭେ କରି ବାହାବଳପୁରକୁ ଏକ କ୍ଷୁଦ୍ର ବାଣିଜ୍ୟିକ ବନ୍ଦରଭାବେ ଘୋଷଣା କରିଛନ୍ତି । କେନ୍ଦ୍ର ସରକାର ବିଭିନ୍ନ ସାର ସଂସ୍ଥାମାନଙ୍କୁ ଏହି ବନ୍ଦରବାଟେ ସାର ସରବରାହ ପାଇଁ ନିର୍ଦ୍ଦେଶ ଦେଇ ଉଦ୍ୟମ କରୁଛନ୍ତି ।

ଆବଶ୍ୟକ ଅର୍ଥର ବ୍ୟବସ୍ଥା କରାଗଲେ ଏହି ବନ୍ଦର ଜରିଆରେ ୨ ଲକ୍ଷ ଟନ୍ ମାଲ ଆମଦାନୀ, ରପ୍ତାନି କରାଯାଇପାରିବ । ଏହାଦ୍ୱାରା ଉତ୍ତର ଓଡ଼ିଶାର ସର୍ବାଙ୍ଗୀନ ଉନ୍ନତିର ପଥ ଖୋଲିଯିବ ।

---

*ମନ୍ତ୍ରୀ, ବାଣିଜ୍ୟ ଓ ପରିବହନ,*
*ଭୁବନେଶ୍ୱର ।*





ଡଃ ପ୍ରସନ୍ନ ପାଟଶାଣୀ

ଥରଟିଏ ତୁମକୁ ଅନାଇ ଦେଲେ,
ମନେହୁଏ ସତେ ଯେମିତି କଳା ହନୁଟିଏ,
କେଉଁ ଘୋର ବନସ୍ତର ଗଛ ଶାଖାରେ ବସି
ବତ୍ସରର ଏ ଡାଳରୁ
ସେ ଡାଳକୁ ଡେଉଁଛି,
ଆୟୁଷକୁ ବଦଳାଇ ଦେଉଛି ।
ଥରଟିଏ ଷୁହିଁଦେଲେ
ନିମଗଛର କୋରଡରେ
ଘୁମାଇ ପଡ଼େ ମହାକାଳ,
ତୁମରି ଗଳାରେ
ରୁଦ୍ରାକ୍ଷର ମାଳାପରି ଝୁଲନ୍ତି
ଗ୍ରହ,ଉପଗ୍ରହ ମାଳ ମାଳ ।
ତମରି ଗୋଟିଏ ଆଖିରେ ସୂର୍ଯ୍ୟ
ଅନ୍ୟ ଆଖିରେ ଚନ୍ଦ୍ର
ଉଦୟ ଓ ଅସ୍ତ ଯାନ୍ତି
ତୁମରି ଗୋଟିଏ ହାତରେ ପୂର୍ଣ୍ଣିମା,
ଅନ୍ୟହାତରେ ଅମାବାସ୍ୟା
ଆତଯାତ ହୁଅନ୍ତି ।
ଅନନ୍ତ ଆକାଶରେ ମେଞ୍ଚା ମେଞ୍ଚା ତାରାସବୁ
ତୁମରି ଆଖି ମଣିଷ ପାଇଁ
ବିଶ୍ୱାସର ନୈବିଦ୍ୟ ।
ତୁମରି ସେହି କଳା ହାଣ୍ଡିଆ
ମେଘର ମୁହଁ ଭିତରେ
ଉଦାସୀ ମନଟିଏ
ବିଜୁଳି ହୋଇ ଝଲସେ ।
ଝରାର ପଉସା ସବୁ
ଜୀବନର ଭୋଗେଇରୁ
ବିଛାଡ଼ି ହୋଇ ପଡ଼େ ।
ବେଳେ ବେଳେ ଦୁଃଖ
ବନ୍ୟାହୋଇ ଭାଙ୍ଗି ଦିଏ/ଭଲ ପାଇବାର ଚଡ଼ା

ସେତେବେଳେ ଥରଟିଏ ତୁମେ ଷୁହିଁଦେଲେ
ଅଟକିଯାଏ ଉଛୁଳି ପଡୁଥିବା ନଈ
ଉଛାଳି ହୋଇଯାଏ ସମୁଦ୍ର ।
କେଉଁ ହାତୀର ମଥାରେ
କାହାପାଇଁ ସାଇତିଛି ମୋତି
କେଉଁ ସାପର ମଥାରେ କାହାପାଇଁ
ଆଙ୍କିଚ କଠୋର
କେବଳ ତୁମକୁ ହିଁ ଜଣା ।
କେଉଁ ମୟୂର ପୁଚ୍ଛରେ
ଟାଙ୍ଗି ଦେଇଛ ଚିତ୍ରିତ ଚନ୍ଦ୍ରଆ
କେବଳ ତୁମକୁ ହିଁ ଗୋଚର,
ସତ ସହସ୍ର ଦେଉଳ ଦେହରେ
ତୁମେବି ଆଙ୍କି ହୋଇ ଯାଇଛ
ଅନେକ ସ୍ୱପ୍ନ ।
କେତେବେଳେ ଦେବଦାସୀର ଓଠରେ
ତୁମେ ପାଲଟି ଯାଅ ମୁଠାଏ ହସ,
କଟିରେ ତା'ର ଗୁଡ଼ାଇଦିଅ ନଦୀକୁ
ଅଣ୍ଟା ସୁତାର ଖିଅଟିଏ ପରି
କେଉଁ ଅନ୍ତରୀକ୍ଷର ନିଃସଙ୍ଗ ନକ୍ଷତ୍ରଟିଏ
କପାଳରେ ତା'ର ଚନ୍ଦନ ଚିତାପରି ଦପ୍‌ଦପ୍ ଜଳେ ।
ପାଦରେ ତା'ର ଘୁଙ୍ଗୁର ହୋଇ
ନିର୍ଜନତାର ସଙ୍ଗୀତ ଗାଏ ପବନ,
ତୁମେ ବିଚିତ୍ର ବୈଭବରେ ବିମଣ୍ଡିତ ।
ତୁମେ ସେହି କ୍ଷୁଧା
ସହସ୍ର ସହସ୍ର ଉଦରର,
ନିଜେ ଭୋକିଲା ରହି
ସାରା ପୃଥିବୀକୁ ପରଶି ଯାଅ
ପ୍ରେମର କୈବଲ୍ୟ ।

୨-ନୂଆପଲ୍ଲୀ, ଭୁବନେଶ୍ୱର ।

# ବିଗତ ବର୍ଷରେ ପଶୁସମ୍ପଦ ବିକାଶ କାର୍ଯ୍ୟକ୍ରମ







ଶ୍ରୀ ସୂର୍ଯ୍ୟନାରାୟଣ ପାତ୍ର

ଆମ ରାଜ୍ୟର ଆର୍ଥିକ ଓ ସାମାଜିକ ବିକାଶରେ ପଶୁ ସମ୍ପଦର ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ଆର୍ଥିକ ଦୁର୍ବଳ ଶ୍ରେଣୀ ଲୋକଙ୍କର ସାମାଜିକ ଓ ଅର୍ଥନୈତିକ ଅଭ୍ୟୁଦୟ ତଥା ବେକାର ଯୁବକ ଯୁବତୀଙ୍କ ଆତ୍ମ ନିଯୁକ୍ତି କ୍ଷେତ୍ରରେ ପଶୁ ପାଳନର ପର୍ଯ୍ୟାପ୍ତ କ୍ଷେତ୍ର ରହିଅଛି । ତେଣୁ ସରକାର ଅଷ୍ଟମ ଯୋଜନାର ପ୍ରଥମ ବର୍ଷରେ ବିଭିନ୍ନ ପଶୁ ପକ୍ଷୀ ସମ୍ପଦର ବିକାଶ ଘଟାଇ ସେଗୁଡ଼ିକୁ ଅଧିକ ଉତ୍ପାଦନକ୍ଷମ କରିବା ପାଇଁ ପଦକ୍ଷେପମାନ ଗ୍ରହଣ କରିଅଛନ୍ତି ।

ଆମ ରାଜ୍ୟରେ ଥିବା ଗୋ–ସମ୍ପଦ ସାଧାରଣତଃ ଦେଶୀ ଜାତୀୟ ଓ ଅଣ ଉତ୍ପାଦନକ୍ଷମ । ଗତ କିଛି ବର୍ଷ ହେଲା ଆରମ୍ଭ କରାଯାଇଥିବା ହିମୀକୃତ ଶୁକ୍ର ପ୍ରଜନନ କାର୍ଯ୍ୟକ୍ରମକୁ ଅଧିକ ବ୍ୟାପକ କରାଯିବାର ବ୍ୟବସ୍ଥା ଗ୍ରହଣ କରାଯାଇଛି । ଚଳିତ ବର୍ଷ ଅତୁଟି ୨୦୦ କେନ୍ଦ୍ର ଖୋଲାଯାଇ ହିମୀକୃତ ଶୁକ୍ର ମାଧ୍ୟମରେ ପ୍ରଜନନ କରାଯିବାର ବ୍ୟବସ୍ଥା କରାଯାଇଛି । ବାଲେଶ୍ୱର, ମୟୂରଭଞ୍ଜ ଓ ସୁନ୍ଦରଗଡ଼ ଜିଲ୍ଲାରେ ଭାରତ ସରକାରଙ୍କ ଆର୍ଥିକ ସହାୟତାରେ ହିମୀକୃତ ଶୁକର ପ୍ରଜନନ କେନ୍ଦ୍ରମାନ ଖୋଲାଯିବାର ବ୍ୟବସ୍ଥା ଗ୍ରହଣ କରାଯାଇଛି । ଚଳିତ ବର୍ଷ ଏହି ଜିଲ୍ଲାମାନଙ୍କରେ ଅତୁଟି ୨୫୦ ଗୋଟି କେନ୍ଦ୍ର ଖୋଲାଯିବ । ଆମ ରାଜ୍ୟର ଦେଶୀ ଗାଈ ଓ ମହିଷିମାନେ ଖୁବ୍ କମ୍ କ୍ଷୀର ଦେଇ ଥାଆନ୍ତି । ତେଣୁ ସେମାନଙ୍କର ଗୁଣାତ୍ମକ ମାନ ବୃଦ୍ଧି କରି ସେମାନଙ୍କୁ ଅଧିକ ଉତ୍ପାଦନକ୍ଷମ କରିବା ପାଇଁ ଭାରତ ସରକାରଙ୍କ ଆର୍ଥିକ ସହାୟତାରେ ଏକ କାର୍ଯ୍ୟକ୍ରମ ହାତକୁ ନିଆଯାଇଛି । ଏହି କାର୍ଯ୍ୟକ୍ରମ ମାଧ୍ୟମରେ ଚିଲିକା ମହିଷିମାନଙ୍କର କ୍ରମ ଉନ୍ନୟନ କାର୍ଯ୍ୟକ୍ରମ ଆରମ୍ଭ କରାଯାଇଛି ଓ ନିକଟ ଭବିଷ୍ୟତରେ ବିଞ୍ଝାରପୁରୀ ଓ ଖଇରପରୀ ପ୍ରଭୃତି ରାଜ୍ୟସ୍ତରୀୟ ଗୋ–ଜାତୀୟ ଉନ୍ନତି କରାଯିବାର ବ୍ୟବସ୍ଥା କରାଯିବ । ଗତବର୍ଷଠାରୁ ଆରମ୍ଭ ହୋଇଥିବା ଇଣ୍ଡୋ–ସୁଇସ୍ କାର୍ଯ୍ୟକ୍ରମ ଗଞ୍ଜାମ ଜିଲ୍ଲାରେ ଚଳିତ ବର୍ଷ ମଧ୍ୟ ଚାଲୁରହିବ । ଏହା ଫଳରେ ଗଞ୍ଜାମ ଜିଲ୍ଲାର ଗୋ–ସମ୍ପଦର ଉନ୍ନୟନ ସଙ୍ଗେ ସଙ୍ଗେ ଦୁଗ୍ଧ ଓ ଦୁଗ୍ଧଜାତ ଦ୍ରବ୍ୟର ସୁଗମ ରୂପେ ବିକ୍ରିବଟା କରାଯାଇ ପାରିବ । ନିକଟ ଭବିଷ୍ୟତରେ ଡେନ୍‌ମାର୍କ ସରକାରଙ୍କ ଆର୍ଥିକ ସହାୟତାରେ କୋରାପୁଟ ଜିଲ୍ଲାରେ ଗୋଟିଏ ଗୋ–ଉନ୍ନୟନ ପ୍ରକଳ୍ପ ଆରମ୍ଭ କରାଯାଇଛି । ଅଳ୍ପ ଦିନ ତଳେ ଓଡ଼ିଶା ରାଜ୍ୟ ଟୀକା ଉତ୍ପାଦନ ପ୍ରତିଷ୍ଠାନର ଏକ ଶାଖା ବ୍ରହ୍ମପୁରଠାରେ ସ୍ଥାପିତ ହୋଇଛି । ଏହାଦ୍ୱାରା ଦକ୍ଷିଣାଞ୍ଚଳର ପଶୁପକ୍ଷୀମାନଙ୍କୁ ସୁବିଧାରେ ସଂକ୍ରାମକ ରୋଗ ପ୍ରତିଷେଧକ ଟୀକା ଯୋଗାଇ ଦିଆଯିବ । ଏହାଛଡ଼ା କଟକର ଫୁଲନଖରାଠାରେ ଗୋଟିଏ ପଶୁ ରୋଗ ଗବେଷଣା ପ୍ରତିଷ୍ଠାନ ଓ ଭୁବନେଶ୍ୱରର ବରମୁଣ୍ଡା ରେଣ୍ଟାଲ୍ କଲୋନୀଠାରେ ଭାରତୀୟ ପଶୁ ରୋଗ ପ୍ରତିଷ୍ଠାନର ଏକ ଶାଖା ସ୍ଥାପିତ ହୋଇଅଛି । ଓଡ଼ିଶାରେ ପଶୁମାନଙ୍କଠାରେ ଭ୍ରୂଣ ସଞ୍ଚାଳନ ପ୍ରକ୍ରିୟା ଆରମ୍ଭ କରାଯାଇଛି । ସୁଖର କଥା ଯେ ଓମ୍‌ଫେଡ୍ ଅନୁଷ୍ଠାନ ତରଫରୁ ଓଡ଼ିଶାରେ ପ୍ରଥମ ଥର ପାଇଁ ୧୪ ଗୋଟି ଗାଈଙ୍କଠାରେ ଭ୍ରୂଣ ରୋପଣ କରାଯାଇଛି । ଏହି ପରୀକ୍ଷା ପରେ କୃଷୀ ଭାଇମାନେ ଇଚ୍ଛା ଅନୁସାରେ ଉନ୍ନତ ବା ସଙ୍କର ମାଈ କିମ୍ବା ଅଣ୍ଡିରା ବାଛୁରୀ ପାଇବାକୁ ସକ୍ଷମ ହୋଇ ପାରିବେ । ଚଳିତ ବର୍ଷ ନୂତନ ଭାବେ କୃତ୍ରିମ ପ୍ରଜନନ କେନ୍ଦ୍ରଗୁଡ଼ିକୁ ପୁଞ୍ଜିଭୂତ ଭାବେ ପୁନର୍ଗଠନ କରିବା ପାଇଁ ବ୍ୟବସ୍ଥା କରାଯାଇଛି । ଆହୁରି ମଧ୍ୟ ବୁଲା ଷଣ୍ଢଗୁଡ଼ିକୁ ଅପସାରଣ କରାଯିବାର ପଦକ୍ଷେପ ନିଆଯାଇଛି । ଆର୍ଥିକ ଦୁର୍ବଳ ଶ୍ରେଣୀ ଲୋକଙ୍କର ୨,୦୦୦ ସଙ୍କର ମାଈ ବାଛୁରୀମାନଙ୍କୁ ମାଗଣାରେ ସୁଷମ ଖାଦ୍ୟ ଯୋଗାଇ ଦିଆଯିବା ପାଇଁ ବ୍ୟବସ୍ଥା କରାଯାଇଛି । ଚଳିତ ବର୍ଷଠାରୁ ଓଡ଼ିଶାରେ ଶବ ବିନିଯୋଗ କାର୍ଯ୍ୟକ୍ରମ ବା (Carcasutilisation scheme) ଭାରତ ସରକାରଙ୍କ ଆର୍ଥିକ ସହାୟତାରେ ଆରମ୍ଭ କରାଯାଇଛି । ସଙ୍କର ପଶୁ କିମ୍ବା ପକ୍ଷୀମାନଙ୍କର ପରିପାଳନ କୃଷୀଭାଇମାନଙ୍କର ସର୍ବାଦୌ କର୍ତ୍ତବ୍ୟ । ଏ ସମ୍ବନ୍ଧରେ ସେମାନଙ୍କର ସବିଶେଷ ଜ୍ଞାନ ରହିବା ଦରକାର । ସେଥିପାଇଁ ବିଭିନ୍ନ ପ୍ରକାର ପଶୁପକ୍ଷୀ ପାଳନ ତଥା ଘାସ ଚାଷ ସମ୍ବନ୍ଧରେ ବିଶେଷ ପ୍ରଶିକ୍ଷଣ ଶିବିର ପରିଚାଳନା ଉପରେ ଗୁରୁତ୍ୱ ଦିଆଯାଇଛି । ବିଶ୍ୱ ବ୍ୟାଙ୍କର ଆର୍ଥିକ ସହାୟତାରେ ଓଡ଼ିଶାରେ ବ୍ୟାପକ ଘାସ ଚାଷ କାର୍ଯ୍ୟକ୍ରମ ଆରମ୍ଭ

କରାଯାଇଛି । କୃଷୀମାନଙ୍କୁ ମିନିକିଟ୍ ବିହନ ମୁଣା ଯୋଗାଇ ଦେବାର ବ୍ୟବସ୍ଥା ହୋଇଛି ଓ ପ୍ରତି ଜିଲ୍ଲାରେ ୩ ଜଣ ସର୍ବୋତ୍କୃଷ୍ଟ ଘାସ ଚାଷୀଙ୍କୁ ପୁରସ୍କୃତ କରାଯିବାର ବ୍ୟବସ୍ଥା କରାଯାଇଛି । ଟିରୋଟ ସମୟ ତଥା ଦୈବି ଦୁର୍ବିପାକ ସମୟରେ ଦୁର୍ଦ୍ଦଶାଗ୍ରସ୍ତ ପଶୁମାନଙ୍କୁ ଘାସ ଯୋଗାଇବା ଉଦ୍ଦେଶ୍ୟରେ ତୃଣ ଭଣ୍ଡାର (Fodder Bank) ପ୍ରତିଷ୍ଠା କରାଯିବାର ପଦକ୍ଷେପ ନିଆଯାଇଛି । ନଡ଼ା ଇତ୍ୟାଦି ପ୍ରଭୃତି ଖାଦ୍ୟସାରହୀନ ପଦାର୍ଥକୁ ଉଦ୍ଭିଦ ଉପଯୁକ୍ତ ଦ୍ୱାରା ପୁଷ୍ଟିକର ଓ ସୁସ୍ୱାଦୁ ଗୋ–ଖାଦ୍ୟରେ ପରିଣତ କରିବା ପାଇଁ ପଦକ୍ଷେପ ନିଆଯାଇଛି ଓ ଏ ସମ୍ବନ୍ଧରେ କୃଷୀମାନଙ୍କୁ ଶିକ୍ଷା ଦିଆଯିବା ପାଇଁ ସ୍ଥିର କରାଯାଇଛି । କୁକୁଡ଼ା ଚାଷୀଙ୍କୁ ଅଧିକ ଫଳପ୍ରଦ କରିବା ପାଇଁ କୁକୁଡ଼ା ଚାଷୀମାନଙ୍କୁ କୋହଳ ଋଣ ମାଧ୍ୟମରେ ଉତ୍ସାହିତ କରାଯାଇଛି । ଏହାଛଡ଼ା ଏନ୍‌. ସି. ଡି. ସି. ସଂସ୍ଥାର ଆର୍ଥିକ ସହାୟତାରେ ଓପୋଲ୍‌ଫେଡ୍ ଦ୍ୱାରା କୁକୁଡ଼ା ଶିଳ୍ପର ବ୍ୟାପକ ସମ୍ପ୍ରସାରଣ କରିବାର ବ୍ୟବସ୍ଥା କରାଯାଇଛି ।

ଗଞ୍ଜାମ ଜିଲ୍ଲାରେ ଏନ୍‌. ସି. ଡି. ସି. ସଂସ୍ଥାର ଆର୍ଥିକ ସହାୟତାରେ ଓପୋଲ୍‌ଫେଡ୍ ଦ୍ୱାରା କୁକୁଡ଼ା ଶିଳ୍ପର ବ୍ୟାପକ ସମ୍ପ୍ରସାରଣ କରିବାର ବ୍ୟବସ୍ଥା ଗ୍ରହଣ କରାଯାଇଛି ।

ଗଞ୍ଜାମ ଜିଲ୍ଲାରେ ଏନ୍‌. ସି. ଡି. ସି. ସହାୟତାରେ ଦୁଗ୍ଧ ସଂଗ୍ରହ ଓ ବିକ୍ରିବଟାର ସୁବ୍ୟବସ୍ଥା କରାଯାଇଛି ।

ରାଜ୍ୟର ଅଗମ୍ୟ ଅଞ୍ଚଳକୁ ପ୍ରଜନନର ସୁବିଧା ଯୋଗାଇ ଦେବା ଉଦ୍ଦେଶ୍ୟରେ ଉତ୍କଳ ଗୋ–ମଙ୍ଗଳ ସମିତି ସଙ୍କର ଷଣ୍ଢ ଯୋଗାଉଛନ୍ତି । ଚଳିତ ବର୍ଷ ମଧ୍ୟ ସଙ୍କର ଷଣ୍ଢ ଓ ପୋଢ଼ ଯୋଗାଇବା ପାଇଁ ସ୍ଥିର ହୋଇଛି ।

ରାଜ୍ୟର ଯୋଜନା ଅଞ୍ଚଳକୁ ତଥା ଆର୍ଥିକ ଦୁର୍ବଳ ଶ୍ରେଣୀ କୃଷୀମାନଙ୍କୁ ଏବଂ ଆଗ୍ରହୀ ପଶୁ ପାଳକମାନଙ୍କୁ ଉନ୍ନତ ଧରଣର ଛେଳି, ମେଣ୍ଢା, ଘୁଷୁରୀ ଓ ଠେକୁଆ ଯୋଗାଇବା ଉଦ୍ଦେଶ୍ୟରେ ରାଜ୍ୟରେ ଥିବା ଏହି ଜାତୀୟ ଫାର୍ମମାନଙ୍କୁ ସକ୍ରିୟ କରାଯିବାର ବ୍ୟବସ୍ଥା ଗ୍ରହଣ କରାଯାଇଛି । ଏହାଛଡ଼ା ଭାରତ ସରକାରଙ୍କ ସହାୟତାରେ ବିଦେଶରୁ ଘୁଷୁରୀ କିଣାଯିବା ପାଇଁ ସ୍ଥିର କରାଯାଇଛି ।

ରାଜ୍ୟରେ ପଶୁପକ୍ଷୀମାନଙ୍କ ଚିକିତ୍ସା ପାଇଁ ପ୍ରତି ଜିଲ୍ଲାରେ ଜଣେ ବିଶେଷଜ୍ଞଙ୍କୁ ଅବସ୍ଥାପିତ କରାଯାଇଛି ଓ ଆଉ ୪ ଗୋଟି ପଶୁ ଚିକିତ୍ସାଳୟ ଖୋଲାଯିବା ଦ୍ୱାରା ରାଜ୍ୟର ପଶୁ ଚିକିତ୍ସାଳୟ ସଂଖ୍ୟା ୫୨୮କୁ ବୃଦ୍ଧି କରାଯାଇଛି ।

ଏହାଛଡ଼ା ୮ ଗୋଟି ଭ୍ରାମ୍ୟମାଣ ପଶୁ ଚିକିତ୍ସାଳୟ ଓ ୨୫ ଗୋଟି ପଶୁ ସହାୟକ କେନ୍ଦ୍ର ଖୋଲାଯିବାର ମଧ୍ୟ ସ୍ଥିର କରାଯାଇଛି । ଭାରତ ସରକାରଙ୍କ ସମ୍ପୂର୍ଣ୍ଣ ସହାୟତାରେ ଆମ ରାଜ୍ୟରେ ଗୋ–ମଡ଼କ ନିରାକରଣ କାର୍ଯ୍ୟକ୍ରମ ମଧ୍ୟ ଚାଲୁ ରହିବ । କୃମି ଦ୍ୱାରା ଆକ୍ରାନ୍ତ ହେବା ହେତୁ ଛେଳି ଓ ମେଣ୍ଢାମାନଙ୍କ ଉପରେ ବିଶେଷ ପ୍ରତିକୂଳ ପ୍ରଭାବ ପଡୁଥିଲା । ଗ୍ରାମାଞ୍ଚଳରେ ଅବସ୍ଥାପିତ ପଶୁ ଚିକିତ୍ସକଙ୍କ ଦ୍ୱାରା ଦଳଗତ ଚିକିତ୍ସା ଓ ବ୍ୟାପକ କୃମିନାଶକ ପ୍ରତିଷେଧକ ଦ୍ୱାରା ଉକ୍ତ ସମସ୍ୟାର ସମାଧାନ କରାଯାଉଛି ।

ସର୍ବୋପରି କୃଷୀମାନଙ୍କର ଆଗ୍ରହ ଓ ଉତ୍ସାହ ସୃଷ୍ଟି କରିବା ଉଦ୍ଦେଶ୍ୟରେ ପଶୁ ପାଳନ ସମ୍ବାଦ ସରବରାହ ସଂସ୍ଥା ରେଡ଼ିଓ ରାଜ୍ୟର ବିଭିନ୍ନ ଅଞ୍ଚଳରେ ଚଳଚ୍ଚିତ୍ର ଓ ପ୍ରାମାଣିକ ଚଳଚ୍ଚିତ୍ର ପ୍ରଦର୍ଶନ, ପ୍ରଚାର ପୁସ୍ତିକା ବଣ୍ଟନ, ବିଜ୍ଞାପନ, ଗୋ–ପ୍ରଦର୍ଶନୀ ଓ ଗଣମାଧ୍ୟମ ପ୍ରଭୃତିରେ କୃଷୀ ଭାଇମାନଙ୍କର ସଚେତନତା ସୃଷ୍ଟି କରାଯାଉଛି । ପଶୁ ସମ୍ପଦର ବିକାଶ ପାଇଁ ଜନ ସହଯୋଗର ଏକାନ୍ତ ଆବଶ୍ୟକତା ରହିଛି ।

ତେଣୁ କୃଷୀ ଭାଇମାନଙ୍କୁ ଅନୁରୋଧ ଯେ ସେମାନେ ପଶୁ ସଫଳ ବିକାଶ ପାଇଁ ସରକାରୀ କାର୍ଯ୍ୟକ୍ରମ ସହ ସହଯୋଗ କରନ୍ତୁ ରାଜ୍ୟରେ ପଶୁ ସମ୍ପଦର ବିକାଶ ଘଟିବା ପରେ ସେ ସେମାନଙ୍କର ଆର୍ଥିକ ବିକାଶ ଘଟିପାରିବ ।

---

*ରାଷ୍ଟ୍ରମନ୍ତ୍ରୀ*
*ମତ୍ସ୍ୟ ଓ ପଶୁ ସମ୍ପଦ ବିଭାଗ, ଓଡ଼ିଶା,*
*ଭୁବନେଶ୍ୱର ।*




ଓଡ଼ିଶା କର୍ମଜୀବୀ ସାମ୍ବାଦିକ ୟୁନିୟନର ମାସିକ ମୁଖପତ୍ର 'କର୍ମଜୀବୀ' ମାନ୍ୟବର ରାଜ୍ୟପାଳ ଶ୍ରୀ ଯଜ୍ଞଦତ୍ତ ଶର୍ମା ଉନ୍ମୋଚନ କରି ରାଜସ୍ୱ ମନ୍ତ୍ରୀ ଶ୍ରୀ ସୁରେନ୍ଦ୍ରନାଥ ନାୟକ ଏବଂ ସାଧାରଣ ଅଭିଯୋଗ ମନ୍ତ୍ରୀ ଶ୍ରୀ ପ୍ରସନ୍ନ ପାଟଶାଣୀଙ୍କୁ ଦେଉଛନ୍ତି । (୨୩/୫/୧୯୯୨) ।



# ଅସାଧାରଣ ଦେବତା ଶ୍ରୀ ଜଗନ୍ନାଥ ...

ପ୍ରଫେସର ଗୌରୀକୁମାର ବ୍ରହ୍ମା

ଆମର ଜଗନ୍ନାଥ ମନ୍ଦିର କେବଳ ଓଡ଼ିଶାର ଏକ ବିଖ୍ୟାତ କୀର୍ତ୍ତି ନୁହେଁ, ସମଗ୍ର ଭାରତ ବର୍ଷ ପାଇଁ ଏହା ଏକ ବିଶ୍ୱ ଶ୍ରେଷ୍ଠ କୀର୍ତ୍ତି। ଓଡ଼ିଶାରେ ଗଙ୍ଗ ବଂଶର ପ୍ରତିଷ୍ଠାତା ଚୋଡ଼ଗଙ୍ଗ ଦେବଙ୍କ ଦ୍ୱାରା ନିର୍ମିତ ଏହି ମନ୍ଦିର ସମଗ୍ର ଭାରତରେ ପ୍ରତିଷ୍ଠିତ ହୋଇଥିବା ଚତୁର୍ବିଧ ମନ୍ଦିର କଳାର ଏକ ଅନୁପମ ଏବଂ ଅଦ୍ୱିତୀୟ ସୁନ୍ଦର ସମନ୍ୱୟର ପ୍ରତୀକ। ଜଗନ୍ନାଥ ଭାରତର ଅଗଣିତ ମହାମହିମ ଧର୍ମଗୁରୁମାନଙ୍କୁ ଆକୃଷ୍ଟ କରି ଆସିଛନ୍ତି। କିନ୍ତୁ କୌଣସି ଧର୍ମଗୁରୁ ଜଗନ୍ନାଥଙ୍କୁ ନିଜର କରିପାରି ନାହାନ୍ତି। ଅର୍ଥାତ୍ କେବଳ ନିଜ ଧର୍ମମତର ସର୍ବଶ୍ରେଷ୍ଠ ଉପାସ୍ୟ ଦେବତାବୋଲି କହିପାରି ନାହାନ୍ତି। ଭାରତରେ ଅସଂଖ୍ୟ ମନ୍ଦିର ମଧ୍ୟରେ ଜଣେ ଜଣେ ଦେବଦେବୀ ପୂଜିତ ହେଉଛନ୍ତି। କିନ୍ତୁ ଆମର ଜଗନ୍ନାଥ ମନ୍ଦିର କୌଣସି ଏକ ନିର୍ଦ୍ଦିଷ୍ଟ ଦେବଦେବୀଙ୍କର ଉପାସନାର ପୀଠ ନୁହେଁ। ଏଭଳି ଉଦାରତା, ମହନୀୟତା, ବ୍ୟାପକତା ଏବଂ ସମନ୍ୱୟବାଦିତା, ଭାରତର ଅନ୍ୟ କୌଣସି ପ୍ରସିଦ୍ଧ ପୀଠରେ ପରିଦୃଷ୍ଟ ହୁଏ।

ଉତ୍କଳମଣି ଗୋପବନ୍ଧୁ ଦାସ ବଡ଼ ଆବେଗଭରା କଣ୍ଠରେ କହିଥିଲେ ଯେ, ଏହି ଜଗନ୍ନାଥ ହେଉଛନ୍ତି ଉତ୍କଳର ନେତା, ନାୟକ। ସତ୍ୟହେଉ ବା ନ ହେଉ, ଜଗନ୍ନାଥଙ୍କର ଭକ୍ତମଣ୍ଡଳୀ ଏକଥା ବିଶ୍ୱାସ କରିଆସିଛନ୍ତି ଯେ, ଗର୍ବସ୍ଫୀତ ବକ୍ଷରେ ଉତ୍କଳରେ ପଦାର୍ପଣ କରି ଯେଉଁମାନେ ଜଗନ୍ନାଥଙ୍କ ପ୍ରତି ସମ୍ମାନ ପ୍ରଦର୍ଶନ କରି ନାହାନ୍ତି, ସେମାନଙ୍କର ଦୟନୀୟ ଦୁର୍ଗତି ଘଟିଛି। ତେଣୁ ଓଡ଼ିଶାର ଜନସାଧାରଣ ଜଗନ୍ନାଥଙ୍କଠାରେ ଅନ୍ତରର ଭକ୍ତି ଅର୍ଘ୍ୟ ସମର୍ପଣ କରି, ତାଙ୍କର ଶରଣାପନ୍ନ ହୋଇଆସିଛନ୍ତି। ଆଜିମଧ୍ୟ ଯଦି ଆସେତୁ-ହିମାଚଳ ଏହି ବିଶାଳ ଭାରତବର୍ଷରେ ଓଡ଼ିଆମାନଙ୍କୁ କେହି ଚିହ୍ନିଥାଏ ବା ସମ୍ମାନ ଦେଉଥାଏ, ତାହେଲେ, କେବଳ ଜଗନ୍ନାଥ ହିଁ ତହିଁର ମୂଳ ଓ ମୁଖ୍ୟ କାରଣ ବୋଲି ଉପଲବ୍ଧ ହୋଇଥାଏ। ରଥଯାତ୍ରା ଦିନ ଶ୍ରୀକ୍ଷେତ୍ରରେ ଓଡ଼ିଶାର ବହୁଗତ ଆଡ଼ମ୍ବରେ ରଥଯାତ୍ରା ପାଳିତ ହେଉଥିଲାବେଳେ, ଭାରତର ଅନେକ ମହାନଗରୀରେ ଏବଂ ଭାରତ ବାହାରେ, ବହୁ ସଭ୍ୟ ଦେଶରେ ଜଗନ୍ନାଥଙ୍କ ରଥ ଘର୍ଘରନାଦରେ ଗତି କରିଥାଏ। ଯେହେତୁ ସମଗ୍ର ପୃଥିବୀର ରଥଯାତ୍ରାର ମୂଳଦେଉଛନ୍ତି, ଆମ ଶ୍ରୀକ୍ଷେତ୍ରର ଜଗନ୍ନାଥ, ସେହିହେତୁ, ରଥଯାତ୍ରା ମାଧ୍ୟମରେ ଓଡ଼ିଆ ଜାତି, ସମଗ୍ର ବିଶ୍ୱରେ, ଭାବୁକମାନଙ୍କର ହୃଦୟ କନ୍ଦରକୁ ଅନ୍ତତଃ କେତୋଟି ମୁହୂର୍ତ୍ତ ପାଇଁ କମ୍ପିତ କରିଦେଉଥାଏ। "ଜଗନ୍ନାଥ-ବିହୀନ" ଓଡ଼ିଆଜାତି କିଭଳି ଭାବରେ ନିଜର ଅସ୍ତିତ୍ୱ ରକ୍ଷା କରିପାରିବ, ସେକଥା ପରମ୍ପରାର ପରିପ୍ରେକ୍ଷୀରେ କଳ୍ପନା ମଧ୍ୟ କରିହୁଏ ନାହିଁ।

ଅଥଚ, ଜଗନ୍ନାଥ ମନ୍ଦିରକୁ କେନ୍ଦ୍ରକରି ଓଡ଼ିଆ ଜାତିକୁ କିଭଳି ଭାବରେ କଳଙ୍କିତ କରିଦିଆଯାଉଛି, ସେକଥା କେହିକେବେ ଚିନ୍ତାକରନ୍ତି ନାହିଁ। ଜଗନ୍ନାଥଙ୍କ କୃପାବଳରେ ଗତ କୋଡ଼ିଏ ବର୍ଷରୁ ଅଧିକକାଳଧରି ମୁଁ ପର୍ଯ୍ୟଟକମାନଙ୍କର ପଥକ (ଗାଇଡ୍) ଭାବରେ ବହୁ ସହସ୍ର ବୈଦେଶିକଙ୍କର ଏବଂ ଭାରତବର୍ଷର ଅଗଣିତ ବିଶିଷ୍ଟ ବ୍ୟକ୍ତିଙ୍କର ସେବା କରିଆସିଛି। ଯେଉଁମାନେ ବିଦେଶରୁ ଆସନ୍ତି କିମ୍ବା ହିନ୍ଦୁ ନୁହନ୍ତି, ସେମାନେ ବଡ଼ ଦେଉଳର ସିଂହଦ୍ୱାର ପର୍ଯ୍ୟନ୍ତ ଯାଆନ୍ତି। ସେମାନଙ୍କର ପଥକ ଭାବରେ ମୁଁ ସେମାନଙ୍କୁ ଅନେକ କଥା କହିଥାଏ। ସତ୍ୟଯୁଗରେ ଯେ ଥିଲେ ବିଷ୍ଣୁନାରାୟଣ, ତ୍ରେତାଯୁଗରେ ସେ ଥିଲେ ମର୍ଯ୍ୟାଦାପୁରୁଷୋତ୍ତମ ରାମଚନ୍ଦ୍ର। ପରବର୍ତ୍ତୀ ଦ୍ୱାପରଯୁଗରେ ସେ ହେଲେ ଲୀଳାପୁରୁଷୋତ୍ତମ ଶ୍ରୀକୃଷ୍ଣ ଏବଂ କଳିଯୁଗରେ ସେ ହେଉଛନ୍ତି ଦାରୁବ୍ରହ୍ମ ରୂପୀ ଜଗନ୍ନାଥ। ତେଣୁ, ବିଶ୍ୱପାଳକ ବିଷ୍ଣୁ ରୂପରେ ସେ ହେଉଛନ୍ତି, ଦଶଅବତାରର ମୂଳ। ତାଙ୍କୁ ଅବତାରୀ (ସବୁ ଅବତାରର ମୂଳ) ଭାବରେ ଯୁଗଯୁଗଧରି ଭକ୍ତକବି ଓ ପଣ୍ଡିତମାନେ ପ୍ରତିପାଦନ କରିଆସିଛନ୍ତି। ଏଭଳି ଭାବରେ ମୁଁ ସେମାନଙ୍କୁ ଜଗନ୍ନାଥଙ୍କର ମହିମା ବୁଝାଇବା ସଙ୍ଗେ ସଙ୍ଗେ ଭାରତବର୍ଷର ଅତୁଳନୀୟ, ଅସାଧାରଣ ଏବଂ ବିଲକ୍ଷଣ ଦେବତା ଭାବରେ ଜଗନ୍ନାଥଙ୍କୁ ପ୍ରତିପାଦନ କରିଥାଏ।

ଦିନେ ଦିଲ୍ଲୀର ଜଣେ ବିଶିଷ୍ଟ ବ୍ୟକ୍ତି ଆସିଥିଲେ। ସିଂହଦ୍ୱାର ବାଟେ ଦେଉଳ ଭିତରେ ପ୍ରବେଶ କରିବା ପୂର୍ବରୁ ମୁଁ ତାଙ୍କୁ ପାଞ୍ଚୋଟି

ଇଥା ଦେଖାଇଥିଲି, ଯଥା –(୧) କୋଣାର୍କରୁ ଆସିଥିବା ଅରୁଣ ସ୍ତମ୍ଭ (୨) ପୂର୍ବଦ୍ୱାର ଲଲାଟରେ ରହିଥିବା ଦଶାବତାରଙ୍କର ଦଶଟି ମୂର୍ତ୍ତି । (୩) କେବଳ ହିନ୍ଦୁମାନେ ଯାଇପାରିବେ, ଏ କଥା ଲେଖାଥିବା ମାର୍ବଲ ପଥରର ଫଳକ । (୪) ପତିତପାବନଙ୍କ ମୂର୍ତ୍ତି ଏବଂ (୫) ବାଇଶି ପାହାଚ । ତାପରେ, ବଟ ଗଣେଶ ବାଟେ ଯାଇ ଆମେ ପହଞ୍ଚିଲୁ ଗରୁଡ଼ସ୍ତମ୍ଭ ନିକଟରେ । ଗରୁଡ଼ ସ୍ତମ୍ଭ ନିକଟକୁ ଯିବା ପାଇଁ ଆଉମାଡ଼ି ଦଶହାତ ଅଛି, ଡାହାଣପଟ କାନ୍ଥରେ ଥିବା ଦଶବତାର ମୂର୍ତ୍ତି ଉପରେ ତାଙ୍କ ଆଖି ପଡ଼ିଗଲା । ପଚାରିଲେ, "ଏଠାରେ ପୁଣି ଆସ୍ଥାନରେ ଦଶବତାର ମୂର୍ତ୍ତି ରହିଛି କାହିଁକି ?" ଏହା କହି, ସେହି ଲାବଣ୍ୟମୟ ମୂର୍ତ୍ତିଗୁଡ଼ିକୁ ପାଖରେ ଠିଆହୋଇ ଦେଖିଲେ । ଆଠଗୋଟି ଅବତାର ମୂର୍ତ୍ତି ଦେଖିବାପରେ, ଯେତେବେଳେ ନବମ ଅବତାର ମୂର୍ତ୍ତି ଉପରେ ତାଙ୍କର ଆଖି ପଡ଼ିଗଲା, ସେ ଟିକିଏ ବିବ୍ରତ ହୋଇପଡ଼ିଲା ପରି ଜଣାଗଲା । ମୁଁ ତାଙ୍କୁ ପଚାରିଲି, "ଆପଣଙ୍କୁ କେଉଁ ମୂର୍ତ୍ତିଟି ଭଲଲାଗୁଛି" । ସେ କହିଲେ, "ମତେ ଭଲଲାଗିବା କଥା ନୁହେଁ । ଆପଣତ ଭୁବନେଶ୍ୱରରୁ ଏପର୍ଯ୍ୟନ୍ତ ଜଗନ୍ନାଥଙ୍କର ମହତ୍ତ୍ୱ ଓ ମହନୀୟତା ସମ୍ପର୍କରେ ମତେ ନାନାକଥା କହିଆସୁଛନ୍ତି, ଆଉ ଜଗନ୍ନାଥଙ୍କ ମନ୍ଦିରରେ, ତାଙ୍କୁ ଗୋଟିଏ ଅବତାର ରୂପେ କିପରି ପ୍ରଦର୍ଶନ କରାଯାଇଛି ଓ କାହିଁକି ? ମୁଁ ଯେତେ ସବୁ ବହି ପଢ଼ିଛି, କୌଣସିଠାରେ ଏପରି ଆଲୋଚନା ଦେଖିନାହିଁ । ଯଦି ମାଛପରି ଏବଂ କଇଁଚପରି ଜଗନ୍ନାଥ ହେଉଛନ୍ତି ଗୋଟିଏ ଅବତାର ମାତ୍ର, ତାଙ୍କୁ ଆପଣ ଏଡ଼େ ବଡ଼ବୋଲି କହୁଛନ୍ତି କାହିଁକି ? ଆପଣମାନେ ଜାତୀୟସ୍ୱାର୍ଥରେ ମିଛ କହି ଓଡ଼ିଶା ପାଇଁ କଳଙ୍କ ଅର୍ଜନ କରୁନାହାନ୍ତି କି ?"

ତାଙ୍କର ଏଭଳି ଆକ୍ଷେପ ତଥା ଅଭିଯୋଗ ଶୁଣିବାପରେ, ତାଙ୍କୁ କହିଲି, "ଯେତେବେଳେ ଓଡ଼ିଆମାନେ ପରାଧୀନ ଭାବରେ ଜୀବନଯାପନ କରୁଥିଲେ, ସେତେବେଳେ ସେମାନଙ୍କୁ କଳଙ୍କିତ କରିବା ପାଇଁ, ଏଭଳି ଏକ ଷଡ଼ଯନ୍ତ୍ର କରାଯାଇଛି । ଆମର "ଦର୍ଶନ" ଶେଷ ହୋଇଯାଉ, ମୁଁ ଆପଣଙ୍କୁ ସେ କଥା କହିବି" ।

ସେହି ସମୟରୁ ମୁଁ ଲକ୍ଷ୍ୟକରିଛି ଯେ, ଭାରତର ବଡ଼ଠାକୁର ଜଗନ୍ନାଥ ବୋଲି ତାଙ୍କର ଯେଉଁ ଧାରଣାଥିଲା, ଗୋଟିଏ ଅବତାର ଭାବରେ ଏବଂ ତାହା ପୁଣି ଜଗନ୍ନାଥଙ୍କ ନିଜ ମନ୍ଦିରରେ ଜଗନ୍ନାଥଙ୍କ ମୂର୍ତ୍ତି ପ୍ରଦର୍ଶିତ ହୋଇଥିବା ଦେଖି, ସେହି ଧାରଣା ଟିକିଏ ଶିଥିଳ ହୋଇଗଲା । ମୁଁ ତାଙ୍କୁ ଯାହା କହିଲି, ସେକଥା ଟିକିଏ ପରେ କହିବି । ତାହା ଆଗରୁ ଆଉଦିନକର ସେଭଳି ଏକ ଅନୁଭୂତି ଏଠାରେ ଦର୍ଶାଇ ଦେଉଛି ।

ବିଲାତରେ ଜଣେ ବିଶିଷ୍ଟ ପଣ୍ଡିତ ମଧ୍ୟ କୋଣାର୍କ ଏବଂ ପୁରୀ ମନ୍ଦିର ଦେଖିବାକୁ ଗଲାବେଳେ ମୁଁ ତାଙ୍କର "ପଥକ" ଭାବରେ ଯାଇଥିଲି । ତାଙ୍କୁ ଜଗନ୍ନାଥଙ୍କ ସମ୍ପର୍କରେ ନାନାକଥା କହି କହି ସିଂହଦ୍ୱାରରେ ପହଞ୍ଚାଇଲି । ଯେତେବେଳେ ସିଂହଦ୍ୱାରର "ପ୍ରବେଶ ମନ୍ଦିର"ର ଲଲାଟପଟରେ ଥିବା ଦଶଅବତାର ଦେଖାଇଲି, ସେ ଗୋଟି ଗୋଟିକରି ବଡ଼ ଆଗ୍ରହରେ ପ୍ରତ୍ୟେକ ମୂର୍ତ୍ତି ଦେଖିଗଲେ । ତା'ପରେ ମତେ ପଚାରିଲେ, "ଆପଣ ପରା କହୁଥିଲେ, ସମଗ୍ର ହିନ୍ଦୁ ଜଗତରେ ଜଗନ୍ନାଥଙ୍କ ପରି ମହା... ଦେବତା ଆଉ ନାହାନ୍ତି ଏବଂ ସେ ହେଉଛନ୍ତି ସମ... ଦେବଦେବୀଙ୍କର ସମନ୍ୱିତ ବିଗ୍ରହ । କିନ୍ତୁ ଏଠାରେ ତ ଆପ... ମତେ ଦେଖାଉଛନ୍ତି ଯେ, ସେ ଜଣେ ଅବତାର ମାତ୍ର । ମୁଁ ... ଯେଉଁ ବୁଦ୍ଧଦେବଙ୍କୁ ଆପଣଙ୍କର ଭାରତୀୟ ସଂସ୍କୃତିରେ ନବ... ଅବତାର ବୋଲି କୁହାଯାଇଛି, ସେ ବୁଦ୍ଧଦେବଙ୍କୁ ଦଶାବତା... ତାଲିକାରୁ ବିଦାୟ ଦେଇ ଆପଣ ହିନ୍ଦୁ ସଂସ୍କୃତି ପ୍ରତି ଅବି... କରିନାହାନ୍ତି କି ?" ଇତ୍ୟାଦି ।

ତାହାପରେ ମୁଁ ତାଙ୍କୁ ସମୁଦ୍ରକୂଳକୁ ନେଇଗଲି । ଗଲାବେଳେ କହିଲି, "ଆପଣ ଏଠାରେ ଯାହାସବୁ ଦେଖିବା କଥା ଦେଖି ନିଅନ୍ତୁ, ସମୁଦ୍ରକୂଳକୁ ଯିବାପରେ ସେଠାରେ ସମୟ ମିଳିବ ଏବଂ ... ସମ୍ପର୍କରେ ଆପଣଙ୍କୁ ମୁଁ ବୁଝାଇଦେବି" । ସେ କହିଲେ, "ଆ... ବୁଝାଇଦେବେ କଅଣ" ? ଆପଣମାନେ ବିଦେଶୀ ପର୍ଯ୍ୟଟକମାନଙ୍କୁ ଏହାଦ୍ୱାରା ଠକୁଛନ୍ତି, ପ୍ରତାରଣା କରୁଛ... ଖାଲିତ ପଥରର ଦେଉଳଟାଏ ତୋଳାହୋଇଗଲେ, ଆପଣ... ହିନ୍ଦୁମତରେ ଦେବତାର ଗୌରବ ବଢ଼ିଯିବ ନାହିଁ । ଆପଣମାନେ ଗୋଟିଏ ଛୋଟିଆ ଦିଅଁଙ୍କୁ ନେଇ ଖୁବ୍‌ବଢ଼ କରିବାକୁ ବସି... ଲେଖୁଛନ୍ତି ସିନା, ପ୍ରକୃତରେ ଜଗନ୍ନାଥ ତେତେ ବଡ଼ ନୁହଁ... ଇତ୍ୟାଦି ।

ଓଡ଼ିଶା ସରକାରଙ୍କର ପର୍ଯ୍ୟଟନ ବିଭାଗର ଜଣେ କର୍ମଚାରୀ ଥିବା ବେଳର ଏଭଳି ତିକ୍ତ ଏବଂ ତୀବ୍ର ଅନୁଭୂତି... ଏପର୍ଯ୍ୟନ୍ତ ଦୁଃଖଦାୟକ ଭାବରେ ମୋ ମନରୁ ଯାଇନାହିଁ । ଯେତେବେଳେ ବିଶିଷ୍ଟ ବ୍ୟକ୍ତିମାନେ ଜଗନ୍ନାଥଙ୍କ ମନ୍ଦିର ଦେଖି ତାଙ୍କର କ୍ଷୁଦ୍ରତାର ପ୍ରଦର୍ଶନ କଥା ଉଠାଇଛନ୍ତି, ସେତେବେଳେ ମୁଁ ସେମାନଙ୍କୁ ଏଭଳି ଭାବରେ କହିଛି –

"୧୮୦୩ ଖ୍ରୀଷ୍ଟାବ୍ଦରେ ଗୋରାମାନେ ଓଡ଼ିଶା ଅଧିକାର କଲେ । ଗୋରାମାନେ ଆସିବା ସଙ୍ଗେ ସଙ୍ଗେ ଦକ୍ଷିଣରୁ ... ଆଜିର ଆନ୍ଧ୍ରପ୍ରଦେଶରୁ ବହୁବ୍ୟକ୍ତି ରାଜକର୍ମଚାରୀ ରୂପେ ଆସି ଆଜିର ଦକ୍ଷିଣ ଓଡ଼ିଶାରେ ଦୃଢ଼ ଆସ୍ଥାନ ଜମାଇ ବସିଥିଲେ । ସେମାନେ ଭାଷାଭିତ୍ତିରେ ଆପ ପ୍ରତିଷ୍ଠା କରିବାକୁ ଯାଇ, ଓଡ଼ିଆ ଜାତିର ସ୍ୱାର୍ଥ ବିରୋଧୀ କେତେକ କାର୍ଯ୍ୟ କରିଯାଇଥିଲେ, ... କିନ୍ତୁ ବଙ୍ଗଦେଶରୁ ଯେଉଁମାନେ ଆସି ଉତ୍ତର ଓଡ଼ିଶାର ପ୍ରଶାସନ କ୍ଷେତ୍ରରେ ପ୍ରବଳହୋଇ ଉଠିଲେ, ସେମାନେ କେବଳ ଓଡ଼ିଆ ଭାଷା ବିରୋଧୀ ଆନ୍ଦୋଳନ କରିନଥିଲେ, ଓଡ଼ିଶାର ଧାର୍ମିକ ପରମ୍ପରା ଉପରେ ନିଜର ଆଦର୍ଶଗତ ବ୍ୟକ୍ତିତ୍ୱ ଜାହିର କରି, ମୁଗ୍ଧରେ ... ସୃଷ୍ଟିକରିଥିଲେ । ଚଳିତ ଶତାବ୍ଦୀର ପ୍ରଥମ ଦଶକରେ, ... ମନ୍ଦିରର ପରିଚାଳନା କ୍ଷେତ୍ରରେ, କେତେଜଣ ବଙ୍ଗୀୟ ... କର୍ମଚାରୀ କ୍ଷମତାର ଯାଦୁବିଦ୍ୟା ପ୍ରଦର୍ଶନ କରିଥିଲେ । ... ଶତାବ୍ଦୀର ଦ୍ୱିତୀୟ ଅର୍ଦ୍ଧରେ, ଓଡ଼ିଶାର "ନ-ଅଙ୍କ" ଦୁର୍ଭିକ୍ଷ... ଭୟଙ୍କର ବିପତ୍ତି ପଡ଼ିବା ସମୟରୁ ଲୋକେ କେବଳ ... ପାଇଁ ପ୍ରାଣ ବିକଳରେ କଲିକତା ଏବଂ ରେଙ୍ଗୁନ୍ ପ୍ରଭୃତି ସହର... ଚାଲିଯାଉଥିଲେ । କଲିକତାର ଅନେକ ଚଟକଳ ଏବଂ ... ସହରର ୨୭ ନମ୍ବର ଗଳିରେ ଥିବା କୋଠାବାଡ଼ିକୁ ଯଦି ...

...ଥିଯାଇ ପାରନ୍ତା, ତାହାହେଲେ ପରାଧୀନ ଓଡ଼ିଶାରେ ବିପର୍ଯ୍ୟସ୍ତ ଓଡ଼ିଆମାନଙ୍କର କରୁଣ କାହାଣୀ ଶୁଣିବାକୁ ମିଳନ୍ତା ।

ଏଭଳି ଅବସ୍ଥାରେ, ଓଡ଼ିଶାର ଅନେକ ବଡ଼ ବଡ଼ ଜମିଦାରୀକୁ "ଭାତରେ ଶାଗବିଡ଼ା"ର ମୂଲ୍ୟରେ କଲିକତାର କର୍ମଚାରୀମାନେ କିଣି ନେଇଗଲେ । ପ୍ରଶାସନ କ୍ଷେତ୍ରରେ ଓଡ଼ିଆମାନେ ମୁହଁ ଖୋଲି କିଛି କହିବାର ସୁଯୋଗ ପାଇଲେ ନାହିଁ । ଏପରି ହେଉ ହେଉ ସମୟ ଆସିଲା, ଆଜକୁ ପ୍ରାୟ ଅଶି ବର୍ଷ ପୂର୍ବେ ଦଳେ କର୍ମଚାରୀ ବଙ୍ଗାଳୀର ଆଦେଶ ଅନୁସାରେ ଶ୍ରୀକୃଷ୍ଣଙ୍କୁ ବଡ଼ କରିବାକୁ ଯାଇ ଏବଂ ବିପର୍ଯ୍ୟସ୍ତ ଓଡ଼ିଆଙ୍କର ଜଗନ୍ନାଥଙ୍କୁ ଜଣେ ଛୋଟିଆ ଦେବତା ରୂପେ ପ୍ରତିପାଦନ କରିବାକୁ ଯାଇ, ଜଗନ୍ନାଥ ମନ୍ଦିରକୁ ଲକ୍ଷ୍ୟକରି, ବଡ଼ ଚତୁରତାର ସହିତ, ଜଗନ୍ନାଥଙ୍କୁ କ୍ଷୁଦ୍ର ରୂପେ ଚିତ୍ରଣ କରିବାକୁ ଅପଉଦ୍ୟମ ଆରମ୍ଭ କରିଦେଇଥିଲେ । ସେହି ସମୟରେ ଦଶଅବତାର ମୂର୍ତ୍ତିମାନଙ୍କ ମଧ୍ୟରୁ, ନବମ ଅବତାର ବୁଦ୍ଧଦେବଙ୍କୁ ଉଠାଇଦେଇ, ତାଙ୍କ ସ୍ଥାନରେ ଜଗନ୍ନାଥଙ୍କୁ ବସାଇ ଦେଲେ । ଗରୁଡ଼ସ୍ତମ୍ଭ ପଛକୁ ଥିବା ଦକ୍ଷିଣପଟ କାନ୍ଥରେ ମଧ୍ୟ ଲକ୍ଷ୍ୟକରି ଦଶଅବତାର ମୂର୍ତ୍ତି ସ୍ଥାପନ କଲେ ଏବଂ ସେଠାରେ ମଧ୍ୟ ଓଡ଼ିଆ ପ୍ରାଣକୁ ବାଧୁଥିଲା ପରି ଜଗନ୍ନାଥଙ୍କୁ ବୁଦ୍ଧଦେବଙ୍କ ସ୍ଥାନରେ ବସାଇ ଦେଇ, ତାଙ୍କ ଅପଉଦ୍ୟମର ଜୈତ୍ରପତାକା ଉଡ଼ାଇଥିଲେ । ଜଗନ୍ନାଥଙ୍କ କୃପାରୁ ଏହି ଅପଉଦ୍ୟମର ନିଃସାରତା ଏବେ ମନ୍ଦିର ଦେହରୁ ଚୂନ ଛଡ଼ାଯିବା ପରେ, ପ୍ରମାଣିତ ହୋଇଗଲା ।

ଭୁବନେଶ୍ୱରରେ ଲିଙ୍ଗରାଜ ମନ୍ଦିରପରି ପୁରୀର ଜଗନ୍ନାଥ ମନ୍ଦିର ଶିଳାଖଣ୍ଡମାନଙ୍କ ଦ୍ୱାରା ନିର୍ମିତ । କିନ୍ତୁ କେତେକ କାରଣରୁ, ପ୍ରାୟ ତିନିଶହ ବର୍ଷତଳୁ ତା ଦେହରେ ଚୂନର ପ୍ରଲେପ ଦିଆଯାଇଥିଲା । ୧୯୭୪ରୁ ଭାରତ ସରକାର ସେହି ଚୂନର ପ୍ରଲେପକୁ ଛଡ଼ାଇବା ପାଇଁ ଉଦ୍ୟମ କରିଆସୁଛନ୍ତି । ଏବେ ପ୍ରାୟ ତିରିଶହ ଫୁଟ ପର୍ଯ୍ୟନ୍ତ ଚୂନ ଛଡ଼ାଇ ଦିଆଗଲାଣି । ମନ୍ଦିରର ବେଢ଼ା ପଥରରୁ ପ୍ରାୟ ପଞ୍ଚତିରିଶ ଫୁଟ ଉଚ୍ଚରେ ମୀନ ଓ କୂର୍ମଙ୍କଠାରୁ ଆରମ୍ଭକରି, ବୁଦ୍ଧ ଏବଂ କଳକିଙ୍କ ପର୍ଯ୍ୟନ୍ତ, ଦଶଅବତାରଙ୍କ ମୂର୍ତ୍ତି ଦେଖିବାକୁ ମିଳିଲାଣି । ଶ୍ରୀମନ୍ଦିରର ପଛପଟେ ଅଛି ସରସ୍ୱତୀଙ୍କ ମନ୍ଦିର । ସେହି ମନ୍ଦିର ଆଗରେ ଠିଆହୋଇ ବଡ଼ଦେଉଳର ପିଠିପଟକୁ ଚାହିଁଲେ, ପ୍ରାୟ ପଞ୍ଚତିରିଶ ଫୁଟ ଉଚ୍ଚରେ ନବମ ଅବତାର ବୁଦ୍ଧଦେବଙ୍କର ମନୋହର ମୂର୍ତ୍ତି ଦୃଷ୍ଟି ପଥାରୂଢ଼ ହୁଏ । ବୁଦ୍ଧଙ୍କ ଡାହାଣପଟକୁ (ମହାଲକ୍ଷ୍ମୀଙ୍କ ମନ୍ଦିରଆଡ଼କୁ) ଅଛି କଳକିଙ୍କ ମୂର୍ତ୍ତି । ସେତିକି ଉଚ୍ଚରେ ମନ୍ଦିର ଗାତ୍ରର ଚତୁର୍ଦ୍ଦିଗରେ ରହିଛି, ଦଶଅବତାରଙ୍କ ମୂର୍ତ୍ତିମାଳା । ଏଥିରୁ ଜଣାଯାଏ, ଆଜକୁ ଆଠଶହ ବର୍ଷ ପୂର୍ବେ ଯେତେବେଳେ ଏ ମନ୍ଦିରର ନିର୍ମାଣ କାର୍ଯ୍ୟ ଆରମ୍ଭ ହୋଇଥିଲା, ସେତେବେଳେ ଦଶାବତାର ମୂର୍ତ୍ତି–ବଳୟ ମଧ୍ୟରେ ବୁଦ୍ଧଦେବଙ୍କୁ ହିଁ ନବମ ଅବତାର ରୂପେ ଗ୍ରହଣ କରାଯାଇଥିଲା । ତେଣୁ ବିନା ସନ୍ଦେହରେ ଏକଥା ଗ୍ରହଣ କରାଯାଇ ପାରିବ ଯେ, ଓଡ଼ିଆମାନେ ମନ୍ଦିର ନିର୍ମାଣ ସମୟରୁ ବୁଦ୍ଧଦେବଙ୍କୁ ହିଁ ନବମ ଅବତାର ରୂପେ ସମ୍ମାନିତ କରି ଆସିଛନ୍ତି ।"

ତା'ହେଲେ, ସିଂହଦ୍ୱାର–ମନ୍ଦିରର ଭାଲପଟରେ ଥିବା ଦଶାବତାର ମୂର୍ତ୍ତିମାନଙ୍କ ଭିତରୁ ବୁଦ୍ଧଦେବଙ୍କୁ ବାହାର କରି, ଜଗନ୍ନାଥଙ୍କୁ ସ୍ଥାପନ କଲାକିଏ ? କେଉଁ ସମୟରୁ ଏବଂ କାହିଁକି ? ଏହାର ଗବେଷଣା ହେବା ଦରକାର । ସ୍ୱର୍ଗତ ସୁବିଖ୍ୟାତ ଡକ୍ଟର ସୁନୀତି କୁମାର ଚାଟାର୍ଜୀ ତାଙ୍କର ମୃତ୍ୟୁର ଦୁଇବର୍ଷ ପୂର୍ବରୁ ମତେ ଥରେ କହିଥିଲେ ଯେ, ବୋଧହୁଏ, ଏହା ୧୯୦୬ ଖ୍ରୀଷ୍ଟାବ୍ଦର କଥା । ସ୍ୱର୍ଗତ ପଣ୍ଡିତ ସଦାଶିବ ରଥଶର୍ମା ମଧ୍ୟ ପ୍ରାୟ ସେହିକଥା କହିଥିଲେ । ଏଣୁ ଜଗନ୍ନାଥ ମନ୍ଦିର ଗାତ୍ରରେ ଜଗନ୍ନାଥଙ୍କୁ ନବମ ଅବତାର ରୂପେ ଚିତ୍ରଣ କରାଯାଇଥିବା ତ୍ରୁଟିକୁ ଶୀଘ୍ର ଦୂର କରିବା ପାଇଁ ପଦକ୍ଷେପ ଗ୍ରହଣ କରାଯିବା ଉଚିତ୍ । ଜୟ ଜଗନ୍ନାଥ !

ଭୁବନେଶ୍ୱର–୨ ।





# ଶ୍ରୀପୁରୁଷୋତ୍ତମ ଜଗନ୍ନାଥଙ୍କ ଐତିହ୍ୟମଣ୍ଡିତ ଯାତ୍ରାନୁଷ୍ଠାନ

ସତ୍ୟନାରାୟଣ ରାଜଗୁରୁ

ଶ୍ରୀଜଗନ୍ନାଥଙ୍କ ଯାତ୍ରାଗୁଡ଼ିକ ଯେଉଁ ପଦ୍ଧତିରେ ବର୍ତ୍ତମାନ ଅନୁଷ୍ଠିତ ହେଉଛି ତାହା ବିଶ୍ଳେଷଣ କଲେ ଜଣାଯାଏ ଯେ ଖ୍ରୀ: ୧୨ଶ ଶତାବ୍ଦୀରେ ଯେଉଁ ସବୁ ପଦ୍ଧତି ପ୍ରାଚୀନ କଳିଙ୍ଗ ରାଷ୍ଟ୍ରରେ ପ୍ରତିଷ୍ଠିତ ବିଷ୍ଣୁ ମନ୍ଦିରମାନଙ୍କରେ ପ୍ରଚଳିତ ଥିଲା ତାହା ହିଁ ଶ୍ରୀମନ୍ଦିରରେ ଗୃହୀତ ହେଲା । ମହାରାଜା ଚୋଡ଼ଗଙ୍ଗ ଦେବ ଖ୍ରୀଷ୍ଟୀୟ ୧୨ଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଉତ୍କଳର ତତ୍କାଳୀନ ସୋମ ବଂଶୀୟ ରାଜା କର୍ଣ୍ଣକେଶରୀଙ୍କୁ ଯୁଦ୍ଧରେ ପରାସ୍ତ କରି ଯେତେବେଳେ କଳିଙ୍ଗ ଏବଂ ଉତ୍କଳ ଉଭୟ ରାଜ୍ୟକୁ ଏକତ୍ରିତ କଲେ ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତ ସାମ୍ରାଜ୍ୟ ଗଠିତ ହେଲା । ତାଙ୍କ ରାଜଧାନୀ ବଂଶଧାରା ନଦୀ କୂଳସ୍ଥ କଳିଙ୍ଗ ନଗରରୁ ଉଠାଇ ଆଣି ମହାନଦୀ ତଟବର୍ତ୍ତୀ ବିଦ୍ୟାନାସୀ କଟକଠାରେ ସ୍ଥାପନ କଲେ । ଚୋଡ଼ଗଙ୍ଗ ଦେବ କେବଳ ବୀର ନଥିଲେ, ଶାସନ କାର୍ଯ୍ୟରେ ମଧ୍ୟ ତାଙ୍କର ଯଥେଷ୍ଟ ଦକ୍ଷତା ଥିବାର ଜଣାଯାଏ । ସେ ନିଜେ ଶିବ, ବିଷ୍ଣୁ ଏବଂ ଦୁର୍ଗାଙ୍କର ପରମଭକ୍ତ ହୋଇଥିବାରୁ ନୀଳାଚଳ ଧାମରେ ସେହି ତିନି ଦେବତାଙ୍କ ଆରାଧନା ସକାଶେ ଶ୍ରୀପୁରୁଷୋତ୍ତମ, ଶ୍ରୀବଳଦେବ ଓ ସୁଭଦ୍ରାଙ୍କୁ କେନ୍ଦ୍ରିତ କରି ଗୋଟିଏ ମନ୍ଦିର ସ୍ଥାପନ କରିବା ପାଇଁ ପ୍ରୟାସ କଲେ । ଶାସ୍ତ୍ର ସମ୍ମତ ପଦ୍ଧତି ଅନୁସରଣ କଲେ । ଉତ୍କଳ ଜୟ କରିବା ପୂର୍ବରୁ ସେ ସୋମ ବଂଶୀୟ ମହାରାଜା ଯଯାତିକେଶରୀ ଯେଉଁଠାରେ ଶ୍ରୀପୁରୁଷୋତ୍ତମଙ୍କ ଶିଳା ବିଗ୍ରହ ସ୍ଥାପନ କରିଥିଲେ ସେହି ମନ୍ଦିରରେ ଚୋଡ଼ଗଙ୍ଗ ଦେବଙ୍କ ଶଂସିତ ମୂର୍ତ୍ତିତ୍ରୟ ପ୍ରତିଷ୍ଠିତ ହେଲେ । ସେହି ମନ୍ଦିରଟି ଏବେ ମୁକ୍ତିମଣ୍ଡପ ସନ୍ନିକଟ ନୃସିଂହ ମନ୍ଦିର ବୋଲି ସ୍ପଷ୍ଟ ଜଣାଯାଉଛି ।

ଯଯାତିକେଶରୀଙ୍କ ଦ୍ୱାରା ପ୍ରତିଷ୍ଠିତ ଚତୁର୍ଭୁଜ ବିଶିଷ୍ଟ ଶ୍ରୀପୁରୁଷୋତ୍ତମ ମାଧବଙ୍କ ମୂର୍ତ୍ତି କୌଣସି ଅଜ୍ଞାତ କାରଣରୁ ବହୁକାଳ ପର୍ଯ୍ୟନ୍ତ ଅପୂଜିତ ହେବା ଦୃଷ୍ଟିରୁ ସେହି ମୂର୍ତ୍ତିଙ୍କୁ ଅନ୍ୟତ୍ର ସ୍ଥାପନ କରି ସେଠାରେ ଶ୍ରୀପୁରୁଷୋତ୍ତମ, ବଳଭଦ୍ର ଓ ସୁଭଦ୍ରାଙ୍କ ମୂର୍ତ୍ତି ପ୍ରତିଷ୍ଠା କରାଗଲା । ନୃସିଂହ ମନ୍ଦିରରୁ ପ୍ରାପ୍ତ ଏକ ଶିଳାଲେଖରୁ ଏହାର ପ୍ରମାଣ ସୂଚିତ ହୋଇଛି ।

ତିନିମୂର୍ତ୍ତି ଧର୍ମଶାସ୍ତ୍ର ଏବଂ ଶିଳ୍ପ ଶାସ୍ତ୍ରର ପଦ୍ଧତି ଅନୁସାରେ ଗଠିତ ହୋଇଥିବା ଜଣାଯାଏ । ସେହି ଶିଳାମୂର୍ତ୍ତି ନୃସିଂହ ମନ୍ଦିର ପଶ୍ଚି ଏକ କ୍ଷୁଦ୍ର ମନ୍ଦିରରେ ସ୍ଥାପନ କରାଯାଇ ଥିବାରୁ ମହାରାଜା ଚୋଡ଼ଗଙ୍ଗ ଦେବଙ୍କ ପରି ଜଣେ ସମ୍ରାଟଙ୍କ ପକ୍ଷେ ଶ୍ରୀପୁରୁଷୋତ୍ତମଙ୍କୁ ଇଷ୍ଟ ଦେବତା ରୂପେ ସମସ୍ତ ନୀତି ନିୟମ ଅନୁସାରେ ଆରାଧନା କରିବା ଏବଂ ଅନ୍ୟାନ୍ୟ ବିଷ୍ଣୁ କ୍ଷେତ୍ରରେ ପ୍ରବର୍ତ୍ତିତ ଉତ୍ସବ ଆଦି କ୍ରିୟା ସମ୍ପାଦନ କରିବା ସମ୍ଭବ ହେଲା ନାହିଁ । ଚୋଡ଼ଗଙ୍ଗଙ୍କ ପିତୃ ପିତାମହ କଳିଙ୍ଗରେ ରାଜତ୍ୱ କରୁଥିବା ବେଳେ ତତ୍ରସ୍ଥ ଦୁଇଟି ବିଷ୍ଣୁ ମନ୍ଦିରରେ ଅର୍ଥାତ୍ ସିଂହାଚଳ ଓ ଶ୍ରୀକୂର୍ମ ମନ୍ଦିରରେ ଯେଉଁ ସବୁ ରୀତି, ନୀତି ପ୍ରଚଳିତ ହୋଇଥିଲା ତାହା ସେହି ନୃସିଂହ ମନ୍ଦିରରେ ପ୍ରବର୍ତ୍ତନ କରିବା ସମ୍ଭବ ହେଲା ନାହିଁ । ସୁତରାଂ ସେ ତାଙ୍କ ରାଜତ୍ୱର ଶେଷ କାଳରେ ନିଜର ଜ୍ୟେଷ୍ଠ ପୁତ୍ର କାମାର୍ଣ୍ଣବଙ୍କ ହସ୍ତରେ ରାଜ୍ୟର ଶାସନ ଭାର ଅର୍ପଣ କରିବାକୁ ଯାଇ ତାଙ୍କୁ ଯୌବରାଜ୍ୟାଭିଷେକରେ ଅଭିଷିକ୍ତ କରି ସାମ୍ରାଜ୍ୟର ଶାସନ ଭାର ସମର୍ପଣ କରିଥିବା ସମ୍ଭବ । ଏହା ୧୧୪୨ ଖ୍ରୀଷ୍ଟାବ୍ଦରେ ସମ୍ପୂର୍ଣ୍ଣ ହୋଇଥିଲା । ସେତେବେଳକୁ ଚୋଡ଼ଗଙ୍ଗଙ୍କ ବୟସ ପ୍ରାୟ ଷାଠିଏ ଥିବା ଅନୁମିତ ହୁଏ । ଏହାପରେ ସେ ୨୫ ବର୍ଷ ଜୀବିତ ରହିଥିବା ଏବଂ ସେହି କାଳ ମଧ୍ୟରେ ଧର୍ମ ଚର୍ଚ୍ଚା ଓ ଶ୍ରୀପୁରୁଷୋତ୍ତମଙ୍କ ଏକ ବିରାଟ ମନ୍ଦିର ନିର୍ମାଣ କରାଇବା ପରିକଳ୍ପନା ପୂର୍ଣ୍ଣ କରିବାକୁ ଯାଇ ଉତ୍କଳର ଜଣେ ସୁପ୍ରସିଦ୍ଧ ଶିଳ୍ପୀ ତଥା କର୍ମକାର କୁଳସୁଙ୍ଗ ଓଝା ନାମକ ବ୍ୟକ୍ତିଙ୍କୁ ସେହି କାର୍ଯ୍ୟରେ ନିଯୁକ୍ତ କରିଥିବା ଶିଳାଲେଖମାନଙ୍କରୁ ପ୍ରମାଣିତ ହୋଇଛି ।

ଚୋଡ଼ଗଙ୍ଗ ଦେବ ସେହି ନୂତନ ମନ୍ଦିରକୁ ସୋମବଂଶୀୟ ରାଜାଙ୍କ ଦ୍ୱାରା ଗଠିତ ଶ୍ରୀଲିଙ୍ଗରାଜ ମନ୍ଦିରଠାରୁ ଅଧିକ ଉଚ୍ଚରେ ନୀଳାଚଳ ଧାମରେ ଗଠିତ କରିବା ପାଇଁ ଯୋଜନା ପ୍ରସ୍ତୁତ ହେଲା । ସେତେବେଳେ ତାଙ୍କର ବୈଷ୍ଣବ ଗୁରୁଙ୍କ ନିର୍ଦ୍ଦେଶକ୍ରମେ ମନ୍ଦିରଟି କଳାସୌଷ୍ଠବ ସମ୍ପୂର୍ଣ୍ଣ ପୂର୍ବକ ଧର୍ମ ଶାସ୍ତ୍ରୋକ୍ତ ପଦ୍ଧତି ଅନୁସାରେ ଗଠିତ ହେଲା । କିନ୍ତୁ ତାହା ଚୋଡ଼ଗଙ୍ଗଙ୍କ ଜୀବିତ କାଳ ମଧ୍ୟରେ ଶେଷ ହୋଇ ପାରିଲା ନାହିଁ । ତେଣୁ ତାଙ୍କ ପ୍ରତିଷ୍ଠିତ ବିଗ୍ରହ ସେହି

ସୁରକ୍ଷା ନୃସିଂହ ମନ୍ଦିରରେ ହିଁ ପୂଜିତ ହେଉଥିଲା । ପ୍ରାୟ ୯୦ ବର୍ଷ ପର୍ଯ୍ୟନ୍ତ ତାଙ୍କର ଉତ୍ତରାଧିକାରୀମାନେ ସାମ୍ରାଜ୍ୟର ଉପାନ୍ତ ଅଞ୍ଚଳରେ ସଂଗଠିତ ଯୁଦ୍ଧ ବ୍ୟାପାରରେ ଲିପ୍ତ ହୋଇଥିବାରୁ ସେଥିପାଇଁ ମନ୍ଦିରର ନିର୍ମାଣ କାର୍ଯ୍ୟ ମଧ୍ୟ ସ୍ଥଗିତ ରହିଥିଲା । ପରିଶେଷରେ ଖ୍ରୀଃ ତ୍ରୟୋଦଶ ଶତାବ୍ଦୀର ଆରମ୍ଭରେ ଯେତେବେଳେ ଶତ୍ରୁ ଉପଦ୍ରବ ପ୍ରଶମିତ ହେଲା ଏବଂ ମହାବୀର ଓ ଧର୍ମପ୍ରାଣ ମହାରାଜା ତୃତୀୟ ଅନଙ୍ଗଭୀମ ଦେବ ଶାସନ ଭାର ଗ୍ରହଣ କଲେ ସେତେବେଳେ ଶ୍ରୀମନ୍ଦିରର ଗଠନ କାର୍ଯ୍ୟ ସମ୍ପୂର୍ଣ୍ଣ ହୋଇ ପାରିବାରୁ ବହୁ ଦାନ, ଯଜ୍ଞ ଏବଂ ଭୂମିଦାନ ସମେତ ବିରାଟ ଉତ୍ସବରେ ନବଗଠିତ ମନ୍ଦିରଟି ପ୍ରତିଷ୍ଠିତ ହେଲା ଏବଂ ସେଥିରେ ପ୍ରସ୍ତର ନିର୍ମିତ ହସ୍ତପଦଯୁକ୍ତ ଶ୍ରୀପୁରୁଷୋତ୍ତମ, ଶ୍ରୀବଳଭଦ୍ର ଏବଂ ସୁଭଦ୍ରାଙ୍କ ମୂର୍ତ୍ତି ରତ୍ନ ସିଂହାସନରେ ସ୍ଥାପିତ ହେଲେ ।

ଅନଙ୍ଗଭୀମଙ୍କ ଦାନ ସମ୍ବଳିତ ଗୋଟିଏ ତାମ୍ର ଶାସନ ପୁରୀ ଜିଲ୍ଲା ନାଗରୀ ଗ୍ରାମରୁ ଆବିଷ୍କୃତ ଅଭିଲେଖରେ ବର୍ଣ୍ଣିତ ହୋଇଛି । ଶ୍ରୀପୁରୁଷୋତ୍ତମଙ୍କ ପ୍ରତିଷ୍ଠା ସମ୍ପର୍କୀୟ ବିଷୟ ସେଥିରେ ବର୍ଣ୍ଣିତ ହୋଇ ତାହା ୧୨୩୦ ଖ୍ରୀଷ୍ଟାବ୍ଦରେ ହୋଇଥିବା ଉଲ୍ଲେଖ ହୋଇଛି । ବାସ୍ତବରେ କହିବାକୁ ଗଲେ ମନ୍ଦିରର ଆକାର ଦୃଷ୍ଟିରୁ ସେଥିରେ ସ୍ଥାପିତ ମୂର୍ତ୍ତିଗୁଡ଼ିକର ଆକାର ଯଥେଷ୍ଟ ବଡ଼ିଥିବା ଜଣାଯାଏ ।

ଶ୍ରୀପୁରୁଷୋତ୍ତମଙ୍କ ପୂଜା ପଦ୍ଧତି ଏବଂ ଯାନିଯାତ୍ରୀଗୁଡ଼ିକ ଅନଙ୍ଗଭୀମଙ୍କ ଗୁରୁ ଦ୍ୱୈତାଦ୍ୱୈତବାଦୀ ଶ୍ରୀବୈଷ୍ଣବ ସମ୍ପ୍ରଦାୟର ପଦ୍ଧତି ଅନୁସାରେ ପରିଚାଳିତ ହେଲା ।

ମହାପ୍ରଭୁ ଶ୍ରୀପୁରୁଷୋତ୍ତମଙ୍କ ରଥଯାତ୍ରା ସେତେବେଳେ ସମ୍ଭବତଃ ଉତ୍ସବ ପ୍ରତିମାମାନଙ୍କ ସାହାଯ୍ୟରେ ଅନୁଷ୍ଠିତ ହେଉଥିଲା । ଠିକ୍ ଏହିପରି ଉତ୍ସବମାନ କଳିଙ୍ଗ ରାଜ୍ୟରୁ ପ୍ରତିଷ୍ଠିତ ଶ୍ରୀନୃସିଂହନାଥ ମନ୍ଦିରରେ ଶ୍ରୀବୈଷ୍ଣବ ସମ୍ପ୍ରଦାୟ ଗୁରୁଙ୍କ ଅଧ୍ୟକ୍ଷତାରେ ପରିଚାଳିତ ହେଉଥିଲା । ତେଣୁ ସେହି ଗୁରୁମାନଙ୍କ ଉପଦେଶ ଅନୁସାରେ ପ୍ରସ୍ତର ବିଗ୍ରହଙ୍କୁ ତାଙ୍କ ସିଂହାସନରୁ ଉଠାଇ ରଥଯାତ୍ରା ସମ୍ପନ୍ନ କରିବା ପରିବର୍ତ୍ତେ ଉତ୍ସବ ପ୍ରତିମାମାନଙ୍କୁ ନେଇ ରଥୋତ୍ସବ ହେଉଥିବା ସମ୍ଭବ । ଏହି ଉତ୍ସବକୁ ଦକ୍ଷିଣ ଭାରତୀୟ ବୈଷ୍ଣବ ମନ୍ଦିରମାନଙ୍କରେ କଲ୍ୟାଣୋତ୍ସବ ବା ରଥୋତ୍ସବ ନାମରେ ଅଭିହିତ କରାଯାଏ । ଏହାର ତାତ୍ପର୍ଯ୍ୟ ହେଉଛି ଶ୍ରୀବିଗ୍ରହଙ୍କର ବିବାହ ଉତ୍ସବ । କଲ୍ୟାଣ ମଣ୍ଡପରେ ବିଷ୍ଣୁ ଏବଂ ଲକ୍ଷ୍ମୀଙ୍କର ବିବାହ କର୍ମ ପଦ୍ଧତି ସମ୍ପୂର୍ଣ୍ଣ ହୋଇ ଯେଉଁ ଯାତ୍ରା କରାଯାଉଥିଲା ତାହା ରଥୋତ୍ସବ ଆକାରରେ ସାହିମାନଙ୍କରେ ବୁଲାଇ ଶ୍ରୀମନ୍ଦିରକୁ ଫେରି ଆସିବା ପଦ୍ଧତି । ଅଦ୍ୟାପି ଏହି ପଦ୍ଧତି ଅନୁସୃତ ହେଉଛି ।

ଉପରୋକ୍ତ ଦୃଷ୍ଟାନ୍ତମାନଙ୍କରୁ ଆମ୍ଭେ ସ୍ଥିର କରିପାରୁ ଯେ ଯେତେଦିନ ପର୍ଯ୍ୟନ୍ତ ହସ୍ତପଦଯୁକ୍ତ ପ୍ରସ୍ତର ମୂର୍ତ୍ତି ଶ୍ରୀମନ୍ଦିରରେ ସ୍ଥାପିତ ହୋଇଥିଲେ ସେ ପର୍ଯ୍ୟନ୍ତ ତାଙ୍କୁ ସିଂହାସନ ଚ୍ୟୁତ କରିବା ସମ୍ଭବ ନଥିଲା । ଧର୍ମ ଶାସ୍ତ୍ରମାନଙ୍କରେ ସ୍ପଷ୍ଟ ଉଲ୍ଲେଖ ଅଛି ଯେ ପ୍ରତିଷ୍ଠିତ ମୂର୍ତ୍ତି ସ୍ଥାନଚ୍ୟୁତ ହେଲେ ତାଙ୍କୁ ଫେରାଇ ଆଣି ସିଂହାସନରେ ପୂଜିତ କରାଇବା ଧର୍ମ ବିରୋଧୀ କାର୍ଯ୍ୟ । ଅତଏବ ପ୍ରସ୍ତର ମୂର୍ତ୍ତିକୁ ଦାରୁ ମୂର୍ତ୍ତିରେ ପରିଣତ କରିବା କାଳ ପର୍ଯ୍ୟନ୍ତ ଉତ୍ସବ ପ୍ରତିମା ହିଁ ରଥଯାତ୍ରା ପାଇଁ ଉଦ୍ଦିଷ୍ଟ ହୋଇଥିଲା ।

ଅନଙ୍ଗଭୀମ ଦେବଙ୍କ ପୁତ୍ର ନରସିଂହ ଦେବ ୧ମ ମଧ୍ୟ ଜଣେ ପରାକ୍ରମୀ ବୀର ଏବଂ ଧର୍ମପ୍ରାଣ ରାଜା ଥିଲେ । ତାଙ୍କ ସମୟରେ ବଙ୍ଗର ମୁସଲମାନ ସୁଲତାନମାନେ ଓଡ଼ିଶା ଆକ୍ରମଣ କରିବାକୁ ବାରମ୍ବାର ଚେଷ୍ଟା କରୁଥାନ୍ତି ସେମାନଙ୍କ ଯୁଦ୍ଧ ନୀତି ଦୃଷ୍ଟିରୁ ଓଡ଼ିଶାର ହିନ୍ଦୁ ଶସ୍ତ୍ରାନ୍ୱିତ ସୈନ୍ୟମାନେ ପ୍ରତି ଆକ୍ରମଣ କରିବା ସମ୍ଭବ ହୋଇନଥିଲା । କାରଣ ଆଉରଙ୍ଗଜେବ ଯେପରି ଶିବାଜୀଙ୍କ ବିପକ୍ଷରେ ଯୁଦ୍ଧ କରିବା ବେଳେ ହିନ୍ଦୁ ସୈନ୍ୟମାନଙ୍କୁ ନିରୁତ୍ସାହିତ କରିବା ଉଦ୍ଦେଶ୍ୟରେ ଗୋଟିଏ ଗୋଟିଏ ଗୋରୁ ପଲକୁ ଆଗରେ ରଖି ମୁସଲମାନ ସୈନ୍ୟଙ୍କ ସହିତ ପଛରେ ଥାଇ ଯୁଦ୍ଧ କରୁଥିଲେ ଠିକ୍ ସେହିପରି ପ୍ରଥା ବଙ୍ଗର ମୁସଲମାନମାନେ ଉତ୍କଳ ଜୟ କରିବାକୁ ଗୋରୁ ପଲ ବ୍ୟବହାର କରୁଥିବା ସମ୍ଭବ । ତେଣୁ ଉତ୍କଳର ଧର୍ମ ଭୀରୁ ଶସ୍ତ୍ରାନ୍ୱିତ ସୈନ୍ୟମାନେ ପଶ୍ଚାଦ୍‌ପଦ ହୋଇ ଯୁଦ୍ଧ କ୍ଷେତ୍ରରେ ଅସ୍ତ୍ର ତ୍ୟାଗ କରିଥିବା ମଧ୍ୟ ସମ୍ଭବ । ଏ ଦୃଷ୍ଟିରୁ ବିଚାର କଲେ ଜଣାଯାଉଛି ଯେ ନରସିଂହ ଦେବଙ୍କ ପକ୍ଷରେ ଏକ ବିରାଟ ସମସ୍ୟା ଦେଖାଗଲା । ତେଣୁ ସେ ନିଜ ଗୁରୁଙ୍କ ପରାମର୍ଶ କ୍ରମେ ଶବରମାନଙ୍କୁ ଆଣାଇ ତାଙ୍କୁ ସୈନ୍ୟ ଶ୍ରେଣୀରେ ଅନ୍ତର୍ଭୁକ୍ତ କଲେ । ସେମାନଙ୍କର ଉପସ୍ଥିତି ହେତୁ ମୁସଲମାନମାନଙ୍କ ଯୁଦ୍ଧ କୌଶଳ ହାର ମାନିଲା । ଉତ୍କଳ ସୈନ୍ୟ ସେତେବେଳେ ବଙ୍ଗର ଲକ୍ଷ୍ମଣାବତୀ ପର୍ଯ୍ୟନ୍ତ ଅସ୍ତ୍ର ଚାଳନା କରିବାକୁ ସମର୍ଥ ହୋଇ ପାରିଥିଲେ । ଏ ସମ୍ପର୍କରେ ମୁସ୍‌ଲିମ୍ ଐତିହାସିକମାନେ ମଧ୍ୟ ଉଲ୍ଲେଖ କରିଛନ୍ତି ।

ଶବରମାନଙ୍କ ଦେବତାଙ୍କୁ ଆରାଧନା କରିବା ପାଇଁ ସେମାନଙ୍କର ପ୍ରବଳ ଇଚ୍ଛା ହେତୁ ପ୍ରସ୍ତର ମୂର୍ତ୍ତିଙ୍କୁ ଶ୍ରୀମନ୍ଦିରରୁ ବାହାର କରି ଆଦିବାସୀ ପୂଜିତ ଦେବତାଙ୍କ ସ୍ୱରୂପରେ ଦାରୁ ମୂର୍ତ୍ତି ସ୍ଥାପନ କରାଗଲା ଏବଂ ବ୍ରାହ୍ମଣମାନଙ୍କୁ ସନ୍ତୁଷ୍ଟ କରିବା ପାଇଁ ନବ ଗଠିତ ଦାରୁ ବିଗ୍ରହଙ୍କ ହୃଦୟ ମଧ୍ୟରେ ଦୁଇଟି ଶାଳଗ୍ରାମ ଶିଳା ସ୍ଥାପିତ ହେଲା । ନବ କଳେବର ବେଳେ ଅତି ଗୁପ୍ତରେ ଏହା ରଖାଯାଇଥାଏ । ସେହି ଦୁଇଟି ପବିତ୍ର ଶାଳଗ୍ରାମ ମଧ୍ୟରୁ ଗୋଟିଏ ନେପାଳର ଗଣ୍ଡକି ନଦୀରୁ ଏବଂ ଅନ୍ୟଟି ଦ୍ୱାରକାରୁ ଅଣାଯାଇ ଶ୍ରୀଜଗନ୍ନାଥଙ୍କ ହୃଦୟ ମଧ୍ୟରେ ସଂସ୍ଥାପିତ ହେବା ଯୋଗୁଁ ଆଦି ଶଙ୍କରାଚାର୍ଯ୍ୟଙ୍କ ମତାନୁସାରେ ସେ ସ୍ଥାନରେ ନିଶ୍ଚିତ ଭାବରେ ହରିହରଙ୍କ ଅବସ୍ଥିତି ପ୍ରମାଣିତ । ତେଣୁ ଉଭୟେ ଆଦିବାସୀ ଓ ବ୍ରାହ୍ମଣମାନେ କୌଣସି ଆକ୍ଷେପ ନକରି ସର୍ବଧର୍ମ ସମନ୍ୱିତ ଧର୍ମ ରୂପେ ଶ୍ରୀମନ୍ଦିରରେ ପ୍ରତିଷ୍ଠିତ ଦାରୁ ବିଗ୍ରହଙ୍କୁ ଆରାଧନା କରିବାକୁ ଲାଗିଲେ । ତଦ୍‌ବଧି ଯେଉଁ ରଥୋତ୍ସବ ଅନୁଷ୍ଠିତ ହେଲା ସେଥିରେ କେବଳ ହିନ୍ଦୁ ନୁହନ୍ତି ବୌଦ୍ଧ, ଜୈନ, ଶିଖ ଏବଂ କବୀର ପନ୍ଥୀମାନେ ମଧ୍ୟ ସହଯୋଗ କରିବା ଏବଂ ଏହି ରଥଯାତ୍ରା ଉତ୍ସବକୁ ଭାରତର ଅନ୍ୟାନ୍ୟ ହିନ୍ଦୁ ମନ୍ଦିରମାନଙ୍କରେ ଅନୁଷ୍ଠିତ ରଥୋତ୍ସବମାନଙ୍କ ମଧ୍ୟରେ ବହୁ ଆଡ଼ମ୍ବର ସହକାରେ ଅଦ୍ୟାପି ପାଳନ କରାଯାଉଛି ।





ଶ୍ରୀ ବିକ୍ରମ କେଶରୀ

(୧)

ପଡୁଛି କି ବନ୍ଧୁ ତୁମ ମନେ
ଏ ଜାତିଟା ଥିଲା କେତେ ବଡ଼
ଅତୀତରେ ଦିନେ ।

(୨)

ପାଷାଣେ ଯେ ଜୀବ ଦାନ ଦେଲା
ଦାରୁକୁ ଯେ ପରଂବ୍ରହ୍ମ କଲା
ରଣକ୍ଷେତ୍ରେ ମରିବାଟା
ଯାରଥିଲା ପରମ ସମ୍ମାନ
ସାଗରର ଉତ୍ତାଳ ତରଙ୍ଗ ଭେଦି
ବିଦେଶରେ କଲା ଯିଏ ସାମ୍ରାଜ୍ୟ ସ୍ଥାପନ
କହେ ସେହି ଅମାନିଆ ଜାତି
ଝଡ଼ ଓ ବତାସ ଯୁଦ୍ଧ ଯାର ଥିଲା ସାଥୀ ।

(୩)

ଏ ଜାତି ଅଲିଭା ଦୀପ
ଜଳୁଥିବ କାଳେ କାଳେ ହୋଇ ମହାଦୀପ
ପ୍ରଗତିର ନନ୍ଦିଘୋଷ ଚାଲୁଥିବ ବଡ଼ ଦାଣ୍ଡେ
ତାକୁ କେହି ରୋକି ନ ପାରିବ ।

(୪)

ଉଠ ବନ୍ଧୁ ସିଂହ ନାଦେ
ମେଘାସନ କହୁ ଆଜି କଥା
ଗଙ୍ଗାଠାରୁ ଗୋଦାବରୀ ଖୁଲ ମାଡ଼ି
ଗଡ଼ି ଯାତେ କମ୍ପଇ ବସୁଧା ।

---

ଅଧ୍ୟକ୍ଷ, ରାଜ୍ୟ ବିତ୍ତ ନିଗମ ।



ଶ୍ରୀମତୀ ସୁକାମିନୀ ନନ୍ଦ

ପୁରୁଷୋତ୍ତମ ଆଉ କେତେଦୂର ନନା ! ଥକାମନ ଥକା ପାଦରେ ଅଣ୍ଟେଇ ଯାଉଯାଉ ପଚାରିଥିଲା ପଦ୍ମାବତୀ ।

ଅଣ୍ଟେଇ ଯାଉଯାଉ ଅଟକି ଗଲେ ଦେବଶର୍ମା । ଝିଅ ମୁହଁକୁ ଚାହିଁଲେ । ଖରାତାପରେ ଝାଉଁଳି ପଡ଼ିଛି । କେବେତ ଚାଲିବା ଅଭ୍ୟାସ ନଥିଲା । ସାନ୍ତ୍ୱନା ଦେବାକୁ ଯାଇ କହିଲେ, ଦେଖ ମା' ଆଗରେ ଅଠରନଳା ଦେଖାଗଲାଣି । ପୁରୁଷୋତ୍ତମରେତ ଆମେ ପହଞ୍ଚି ଗଲେଣି । ଅଠରନଳାରୁ ଗଡ଼ିଯାଇ ଗାଆଣ ଅଡ଼େ ମୁହେଁଇ ଯିବା । ନରେନ୍ଦ୍ର ପୋଖରୀ କଡ଼ଦେଇ ଦେବାଙ୍କରେ ଉଠିବା ।

ଅଠରନଳା ଉପରେ ଚାଲୁଚାଲୁ ଶୁଣା କଥାଟିଏ ମନରେ ହେତୁ ହେଲା । ଏଇ ଅଠରନଳା ଉପରେ ଥାଇ ଯାହା ମନାସିବ, ସେ ଫଳ ପାଇବ । କିବା କଥା ମନାସିବ ଯେ ! ସେ'ତ ଦେବଦାସୀ ହେବାକୁ ପୁରୁଷୋତ୍ତମ ଆସିଚି । ସବୁଦିନ ଲାଗି ଦେବତାଙ୍କ ସେବାରେ ସମର୍ପିତା ହେବ । ଗାଁର ଆଉ ପାଞ୍ଚଟା ଝିଅଙ୍କ ଭଳି ସେ ରକ୍ତମାଂସର ସଂସାର ଭିତରେ ନ ପଶି ସେ ଦେବତାର ଅର୍ଚ୍ଚନା କରିବ । ଗାଁଲୋକ କହିଲେ, ଧନ୍ୟ, ଧନ୍ୟ, କୋଟି ଜନ୍ମର ତପସ୍ୟା ଯୋଗୁ ଦେବଦାସୀ ହେଲା । ଛିଃ , ନିଜକୁ ଧିକ୍କାରିଲା ଏ ମୁକ୍ତି ଜୀବନ ଯେ ! ଅଠରନଳାରୁ ଗଡ଼ିଗଲା ଆଗରୁ ଭାବିଲା, ପ୍ରଭୁହେ, ଏଇ ଦେବଦାସୀ ଜୀବନରୁ ହେଲେ ମୁକ୍ତି କରିଦିଅନ୍ତ !

ଆଗରେ ବଡ଼ ପୋଖରୀକୁ ଦେଖି ଦେବଶର୍ମା କହିଲେ, ଏଇଟା ନରେନ୍ଦ୍ର । ଏଇଠି ଜଗନ୍ନାଥଙ୍କର ଚଳନ୍ତି ପ୍ରତିମା ଚନ୍ଦନ ଯାତ୍ରାବେଳେ ଚାପ ଖେଳନ୍ତି ।

ନରେନ୍ଦ୍ର କାଚକେନ୍ଦୁ ଭଳି ପାଣିକୁ ଦେଖି ମୁହଁ ହାତ ଧୋଇବାକୁ ଇଚ୍ଛା ହେଲା ପଦ୍ମାବତୀର । କହିଲା, ନନା ! ମୁଁ ପାଣିରେ ଟିକେ ମୁହଁ ଧୋଇପକାନ୍ତି । ଭାରି ଖରା ।

ଦେବଶର୍ମା କହିଲେ, ଯା, ଯାଉନୁ । ମୁଁ ଏଇ ହୁଡ଼ା ଉପର ବରଗଛ ମୂଳେ ଥକାମାରୁଛି । ତୋ ବୋଉ କ'ଣ ସବୁ ବାନ୍ଧି ଦେଇଚି । ତୁ ମୁହଁ ହାତ ଧୋଇ ଆସିଲେ ମୁହଁରେ ପକାଇ ମନ୍ଦିର ଆଡ଼କୁ ସଳଖିବା ।

ପୋଖରୀ ପାହାଚରେ ବସି ପାଣି ଭିତରକୁ ଅନାଇଁଲା ପଦ୍ମାବତୀ । ସୂର୍ଯ୍ୟ ବୁଡ଼ି ଯାଉଥିଲେ । ବୁଡ଼ନ୍ତା କିରଣ ନରେନ୍ଦ୍ର ପୋଖରୀ ପାଣିରେ ପଡ଼ି ଚକ୍‌ଚକ୍ କରୁଚି । ପଦ୍ମାବତୀ ପାଣିରେ ନିଜ ରୂପ ଦେଖିଲା । ଗାଁରେ ସମସ୍ତେ ତାକୁ କହନ୍ତି ସୁନ୍ଦରୀ । ଗାଁର ତାଙ୍କ ଘରପାଖର ନୀଳମଣି ମଧ୍ୟ କହେ । ଦିନେ ଦିନ ତଳେ ବେଳବୁଡ଼ଟାରେ ପଛରୁ ଡାକି କହିଲା, ପଦ୍ମା, ତୋ'ର ଏଇ ସୁନ୍ଦର ରୂପ, ଶେଷରେ ଦେବଦାସୀ ହେବୁ । ତତେ ମୁଁ ଭାରି ସୁଖପାଏ । ଚାଲ ଆମେ କେଉଁଆଡ଼େ ଚାଲିଯାଇ ସଂସାର କରି ରହିବା ।

ଜିଭ କାମୁଡ଼ିଥିଲା ପଦ୍ମାବତୀ । ସେମିତି କଥା ତୁଣ୍ଡରେ ଧରନ୍ତିନି । ଠାକୁରେ କୋପ କରିବେ । ପୂର୍ବଜନ୍ମର ତପସ୍ୟା ଯୋଗୁ ମୁଁ ଦେବଦାସୀ ବୋଲି ସମସ୍ତେ କହୁଛନ୍ତି ।

–ତୋ ମନ କ'ଣ ଏକଥା ମାନୁଚି ପଦ୍ମା : ସାରାଜୀବନ ଗୋଟାଏ ଦାରୁମୂର୍ତ୍ତି ପାଖରେ ଦେବଦାସୀ ହୋଇ ପଡ଼ିରହିବାକୁ ! ତୁ କାହାର ସ୍ତ୍ରୀ କାହାର ମା' ହେବୁନି, ଏକଥା ଚିନ୍ତା କରି ଦେଖିଚୁ !! ଭୟାତୁର କଣ୍ଠରେ ପଦ୍ମା କହିଥିଲା, ଛିଃ , ସେମିତି କଥା ତୁଣ୍ଡରେ ଧରନାହିଁ । ମୁଁ ଦେବଦାସୀ । ଦେବତାର ପୂଜାଲାଗି ମୋର ଜନ୍ମ ।

ବୋଉ ମୁହଁ ମନେ ପଡ଼ିଲା । ଆହା, ଗର୍ଭଧାରିଣୀ ଜନନୀ ତା'ର ଶାଶୁ ଘରକୁ ପଠାଇଲାପରି ତାକୁ ବେଶ କରି ପଠାଇଚି । ସର୍ବାଙ୍ଗରେ ଅଳଙ୍କାର । ଦେହର ବାରହାତର ଦକ୍ଷିଣୀ ରୂପପକା ପାଟ । ବୋଉ ତା'ର ଭାବିନି ଯେ ଏଇ କନ୍ୟା ବେଶ ଦେଖିବ କିଏ ! ଜିଏ ଦେଖିବ ସେ କାଷ୍ଠ ପ୍ରତିମା । ପ୍ରଥା ଅନୁସାରେ ମରିବା ପର୍ଯ୍ୟନ୍ତ ନୃତ୍ୟ ପ୍ରଦର୍ଶନ କରୁଥିବ ।

ବୋଉ ତା'ର ଲୁହ ନିଗୁଡ଼ା ଆଖିରେ ବିଦାୟ ଦେଇଥିଲା । ନନା ବୋଉକୁ ବୁଝାଇ କହିଥିଲେ, କାନ୍ଦନାହିଁ ପଦ୍ମାବୋଉ ।

ଦେବଦାସୀ ହେବା ପୂର୍ବ ଜନ୍ମର ସୁକୃତ । ପୁନଃଜନ୍ମ ହେବ ନାହିଁ । ସେତେବେଳେ ଏସବୁ କଥା ମନକୁ ଘେନିନଥିଲା । ପରବାସରେ ଏକୁଟିଆ କେମିତି ଦିନ କଟାଇବ ।

ଦେବ ଶର୍ମା ଡାକିଲେ, ଆ, ମା, ଶୀଘ୍ର ଆ । ଆଳତୀବେଳ ଗଡ଼ିଯିବ । ଧୂପ ଆଗରୁ ମନ୍ଦିରରେ ପହଞ୍ଚି, ଆଳତୀ ଦେଖିବା ଯେ ।

ଖାଉଖାଉ ସାନଭାଇଟି କଥା ମନେପଡ଼ିଗଲା । ଭୋର୍ ଭୋର୍ ବାହାରି ଆସିଛି । ଭାଇ ତା'ର ଉଠି ନଥିଲା । ଉଠି ଦେଖିବ ନାନୀ ନାହିଁ । ଅଜଟ କରି କାନ୍ଦିବ । କୋହଟିଏ ପେଟକୋଣରୁ ଉଠୁରି ଆସି ଗଳାରେ ଅଟକି ଗଲା । ଝିଅ କାନ୍ଧରେ ହାତ ପକାଇ ଦେବ ଶର୍ମା କହିଲେ, ମୋ' ସୁନା ଝିଅଟା ପରା, କାନ୍ଦୁଛିନି ! ଝିଅର ମୁହଁକୁ ଚାହିଁବାମାତ୍ରେ କେମିତି ଏକ ପଞ୍ଜରାଥରା ଦୀର୍ଘ ଶ୍ୱାସଟିଏ ଦେବ ଶର୍ମାଙ୍କ ଛାତି ଭିତରୁ ଉଠି ଆସିଲା । ଉପରେ ଯିନା ସାନ୍ତ୍ୱନା ଦେଉଛନ୍ତି; ହେଲେ ତାଙ୍କ ମନ କ'ଣ ଆଉଟି ହୋଇ ଯାଉନି ! ତେବେ ମନରେ କେମିତି ଏକ ନିଶ୍ଚିନ୍ତ ଭାବନାଟିଏ । ରାତିର ସ୍ୱପ୍ନ ତାଙ୍କୁ ଟାଣି ଆଣିଚି ଶ୍ରୀକ୍ଷେତ୍ରକୁ । ସେ ସ୍ୱପ୍ନରେ ଦେଖିଛନ୍ତି ନୀଳାଚଳ ବିହାରୀ ସ୍ୱୟଂ ଲୀଳାମୟଙ୍କୁ । ଅପରୂପ ସେଇ ଲାବଣ୍ୟ ମୂର୍ତ୍ତି । ତ୍ରିଭଙ୍ଗ ଭଙ୍ଗିମା । ଅଧରରେ ମୃଦୁ ମନ୍ଦ ହାସ୍ୟ । କହୁଛନ୍ତି, ଦେବଶର୍ମା ! କନ୍ୟା ତୁମର ଦେବଦାସୀ ହେବ ନାହିଁ । ମୋ ଭକ୍ତ ଜୟଦେବ । ଯିଏ ଦିନରାତି ଶରଧାବାଲି ନିକଟରେ ଥିବା କୁଟୀରଟିରେ ମୋ ପାଇଁ ପଦାବଳୀ ରଚନା କରୁଛି, ସେଇ ତୁମର କନ୍ୟାର ଉପଯୁକ୍ତ ପାତ୍ର । ସ୍ୱପ୍ନ ଭିତରେ ଦେବ ଶର୍ମା ପଚାରିଲେ, ପ୍ରଭୁ କେମିତି ଚିହ୍ନିବି ଜୟଦେବ ଗୋସାଇଁଙ୍କୁ !

ପ୍ରଭୁ କହିଥିଲେ, ସନ୍ଧ୍ୟାଆଳତୀବେଳେ ଭକ୍ତ ଜୟଦେବ ନିଜର ରଚିତ ପଦାବଳୀକୁ ଶ୍ରୀମନ୍ଦିର ଦ୍ୱାରରେ ବସି ଗାନ କରୁଥିବ । ଯାହାକୁ ପଚାରିଲେ ସେ ଜୟଦେବ ଗୋସାଇଁଙ୍କ କଥା କହିଦେବ । ସେଇଠାରେ ତୁମେ ଠାବ କରିବ ଓ ମୋ ସ୍ୱପ୍ନାଦେଶ କଥା କହିବ । ସେଇଥି ପାଇଁ ତ ସେ ସକାଳୁ ଭଲକରି ରାତି ନପାହୁଣୁ ଝିଅକୁ ଧରି ଶ୍ରୀକ୍ଷେତ୍ର ବାହାରି ଆସିଛନ୍ତି । ଏକଥା କାହାକୁ ଜଣାଇ ନାହାନ୍ତି । ସ୍ୱପ୍ନ କଥା ଯଦି ସତ ନହେବ; ଲୋକେ ପରିହାସ କରିବେ ।

ବାପ ଝିଅ ଉଠି ପଡ଼ିଲେ । ପାଦେ ପାଦେ ହୋଇ ବଡ଼ଦାଣ୍ଡରେ ପାଦ ଦେଲେ । ବଡ଼ଦାଣ୍ଡରେ ପାଦ ପଡ଼ିବାମାତ୍ରେ ମନଟା ଯେମିତି ଆନନ୍ଦରେ ପରିପୂର୍ଣ୍ଣ ହୋଇଗଲା । ଘଣ୍ଟା, କାହାଳୀ, ମର୍ଦ୍ଦଳ, ମୃଦଙ୍ଗର ମିଳିତ ଧ୍ୱନିରେ ଗହଗହ ହେଉଥିଲା ବଡ଼ଦାଣ୍ଡ । ଗହଳିରେ ଫାଟି ପଡୁଚି । ଗହଳି ଆଡ଼େଇ ଝିଅର ହାତଧରି ଆଗେଇ ଗଲେ ଦେବଶର୍ମା ।

ଅରୁଣ ସ୍ତମ୍ଭ ନିକଟରେ ଠିଆହୋଇ ପତିତପାବନଙ୍କୁ ଚାହିଁଲେ । ମନେମନେ କହିଲେ, ହେ ଦୟାମୟ ସ୍ୱପ୍ନ ଯେପରି ସତ୍ୟ ହୁଏ । ବାଇଶି ପାହାଚ ପାଖରେ କାଶୀ ବିଶ୍ୱନାଥ ଦର୍ଶନ କଲେ । ତା'ପରେ ଭୋଗମଣ୍ଡପ, ସତ୍ୟନାରାୟଣ, ବଟଗଣେଶ, ମଙ୍ଗଳା, ରୋହିଣୀକୁଣ୍ଡ, ବିମଳା, ସରସ୍ୱତୀ, ଲକ୍ଷ୍ମୀମନ୍ଦିର, ଗୋଟିଗୋଟି କରି ଝିଅକୁ ଚିହ୍ନାଇଲେ । ଲକ୍ଷ୍ମୀ ମନ୍ଦିରରୁ ବାହାରି ନିଳଚକ୍ର ଚାହିଁଲେ । ଫର୍‌ଫର୍ ହୋଇ ବାନା ଉଡୁଛି । ମନ୍ଦିର ଭିତରେ ପଶିଲେ । ଭିଡ଼ରେ ଠେଲାପେଲା । ଝିଅ ହାତଧରି ଭୟରେ ଗୋଟିଏ କଣକୁ ଠିଆ କରାଇ ଗରୁଡ଼ସ୍ତମ୍ଭ ନିକଟକୁ ନିଅ ଗଲେ । ଯେତେ ପାରନ୍ତି ଛାତିରେ ଚାପି ଧରିଲେ ଗରୁଡ଼ ସ୍ତମ୍ଭକୁ । ଭାବବିହ୍ୱଳ ହୋଇଗଲେ ଦେବ ଶର୍ମା । ଆଖିରୁ ଝରି ପଡ଼ିଲା ଲୋତକ ଧାର ।

ଭିଡ଼ ପତଳାବାରୁ ଝିଅ ହାତକୁ ଧରି ଚନ୍ଦନ ଅର୍ଗଳୀ ପାଖରେ ଠିଆ ହୋଇ କହିଲେ, ମା, ଦେଖ୍ ମା, ଭଲକରି ଦେଖ୍ ସଂସାରର କର୍ତ୍ତା ଚକାନୟନଙ୍କୁ ।

ପଦ୍ମାବତୀ ଚାହିଁଲା ଜଗତର ନାଥ ଜଗନ୍ନାଥଙ୍କୁ । ଏ କେଉଁରୂପ । ଅଧାଗଢ଼ା ଦିଶୁ । ତଥାପି ସଂସାରର ସବୁ ସୌନ୍ଦର୍ଯ୍ୟ ଯେମିତି ଏକାଠି ହୋଇଚି । ପୀତବସନ । ଗଳାରେ ତୁଳସୀ ଦୟଣାର ମାଳା । ମଥାରେ ରତ୍ନମୁକୁଟ ଝଲମଲ ହେଉଜଳୁଚି । ପ୍ରଣାମ କଲା ପଦ୍ମାବତୀ । ଅପୂର୍ବ ରୂପ ମାଧୁରୀ । ଚକାଚକା ଆଖିକୁ ଚାହିଁ ଧାର ଧାର ହୋଇ ଲୁହ ଗଡ଼ିପଡ଼ିଲା । ଅଭିମାନ ଉଠୁରି ଉଠିଲା । କହିଲା, ହେ ଚକାନୟନ, ଅନ୍ତର୍ଯ୍ୟାମୀ । ତମକୁ କେଉଁ କଥା ଅଜଣା ଯେ ମୁଁ ଜଣାଇବି । ରକ୍ତ ମାଂସ ଧାରୀ ସାମାନ୍ୟ ନାରୀଟିଏ ମୁଁ । ମୋ ଗୁହାରୀ ଘେନାକର । ମତେ ଏଇ ଦେବଦାସୀ ଜୀବନରୁ ମୁକ୍ତକର ପ୍ରଭୁ ।

ପଦ୍ମାବତୀର ମନେ ହେଲା ଯେପରି ପ୍ରଭୁ ଲୀଳାମୟଙ୍କ ଓଠ ଅଧରୁ ବଙ୍କା ହସଟିଏ ଝଲ୍ସିଲି ଉଠିଲା । ସତେକି କହିଲେ, ମୋ ମନକଥା ରଖିବି ।

ଭିଡ଼ ଭିତରେ ଦେବ ଶର୍ମା ଡାକିଲେ, ଆ, ମା, ପଦ୍ମ, ରାତିପାଇଁ କେଉଁଠି ଆସ୍ଥାନ ଖୋଜିବା । ପଦ୍ମାବତୀ ଜାଣିଚି, ତାଙ୍କୁ ମନ୍ଦିରର ନିୟମ ଅନୁସାରେ ଯେଉଁଠି ପହଞ୍ଚାଇବା କଥା, ପହଞ୍ଚାଇ ଦେଇ ନନା ଗାଁକୁ ଚାଲିଯିବେ । ପ୍ରିୟ ପରିଜନ ସମସ୍ତଙ୍କୁ ଛାଡ଼ି ଏକା ସେ ଜୀବନ ନିର୍ବାହ କରିବେ । ଏଇକଥା ଭାବି ଭାବି କୋହଟିଏ ଆସିଲା ।

ଆନନ୍ଦ ବଜାରରୁ କିଛି ମହାପ୍ରସାଦ କିଣି ଖାଇଲେ । ଖାଇସାରି ଦେଉଳରୁ ବାହାରି ଆସିଲେ । ଜଣେ ମନ୍ଦିର ସେବକଙ୍କଠାରୁ ଜୟଦେବ ଗୋସେଇଁଙ୍କ ବିଷୟରେ ଦେବଶର୍ମା ଜାଣିବାକୁ ପାଇଲେ । ଶରଧାବାଲି ପାଖରେ ଗୋଟିଏ ଛୋଟ ଚାଳ ଘରଟିରେ ରହିବା କଥା, ସେବକ ଜଣକ କହିଲେ ।

ଶରଧାବାଲି ନିକଟରେ ଥିବା ଚୋଟ ଚାଳଘରଟିର ଦ୍ୱାର ନିକଟରେ ଠିଆ ହୋଇ ଦେଖିଲେ ଦ୍ୱାର ବନ୍ଦ ଅଛି । ଦେବଶର୍ମା ଝିଅକୁ ଡାକିଲେ, ଆ, ରାତିଟା ଏଇ ଘର ପିଣ୍ଡାରେ ଶୋଇ କଟାଇଦେବା ।

ସେଇ ମୁହୂର୍ତ୍ତରେ ଘର ଦ୍ୱାରରେ ଆସି ପହଞ୍ଚିଲେ ଜଣେ ଯୁବକ । ଗୋଟିଏ ହାତରେ ଭୋଗ କୁଡ଼ୁଆ ଅନ୍ୟ ହାତରେ

ହାତ ଲେଖା ପୋଥି । କଣ୍ଠରେ ଜଗନ୍ନାଥଙ୍କ ପଦାବଳୀ । ଦେବଶର୍ମାଙ୍କର ମନେ ହେଲା ଏଇ ଯେମିତି ଭକ୍ତ ଜୟଦେବ । ଯାହାକୁ ସେ ଖୋଜି ଶ୍ରୀକ୍ଷେତ୍ରରେ ପହଞ୍ଚିଛନ୍ତି ।

ନିଜ ଘର ଦ୍ୱାରରେ ଅପରିଚିତ ଦୁଇଜଣଙ୍କୁ ଦେଖି ଆଶ୍ଚର୍ଯ୍ୟ ହେଲେ ଜୟଦେବ ।

ଆନନ୍ଦରେ ଆତ୍ମହରା ହୋଇ ଦେବଶର୍ମା ପଚାରିଲେ, ଆପଣ ଜୟଦେବ ଗୋସାଇଁ ନା !

-ହଁ । ଉତ୍ତର ଦେଲେ ଜୟଦେବ ।

-ଆପଣ ନିତିଦିନ ପଦାବଳୀ ରଚନା କରି ପ୍ରଭୁଙ୍କ ଶ୍ରୀଛାମୁରେ ଶୁଣାଉଛନ୍ତି ଦିଅନ୍ତି ।

-ଆପଣ କେମିତି ଜାଣିଲେ ! ମୁଁତ କେବେ ଆପଣଙ୍କୁ ଦେଖିଥିବା ଭଳି ମନେ ହେଉନି !!

-ଏସବୁ ପ୍ରଭୁ ନିଳାଦ୍ରୀବିହାରୀ । ମୁଁ ଦେବଶର୍ମା । ଦକ୍ଷିଣରେ ମୋର ନିବାସ । ପ୍ରଭୁ ଜଗନ୍ନାଥଙ୍କର ସ୍ୱପ୍ନାଦେଶ ନେଇ ମୁଁ ଆସିଚି ।

-କାହିଁକି ?

-ମୋ କନ୍ୟା ପଦ୍ମାବତୀକୁ ଆପଣଙ୍କ ହସ୍ତରେ ଅର୍ପଣ କରିବାକୁ !

ଚମକି ଉଠିଲେ ଜୟଦେବ । ଏ ବ୍ୟକ୍ତି ତାଙ୍କର ଅପରିଚିତ । ମିଥ୍ୟା କଥା କହି ତାଙ୍କୁ ବିବ୍ରତ କରିବାକୁ ବସିଚି । ସେ କହିଲେ ।

ଏହା ଅସମ୍ଭବ । ଦରିଦ୍ର ବ୍ରାହ୍ମଣ ମୁଁ । ପଦାବଳୀ ରଚନାକରି ଶ୍ରୀମନ୍ଦିରରେ ପ୍ରଭୁଙ୍କ ସମ୍ମୁଖରେ ଗାନ କରେ । ଦୈନିକ ଗୋଟିଏ ଅନ୍ନ ଭୁଲୁଆ ମୋର ଆୟ । କିପରି ସଂସାର କରିବାର କଥା ଭାବିନି । ସଂସାରିକ ବନ୍ଧନରେ ମୁଁ ବାନ୍ଧି ହେଲେ ମୁଁ ମୋ ପ୍ରଭୁଙ୍କ ପାଇଁ ପଦାବଳୀ ରଚନା କରିବି କେମିତି ! ଆପଣ ଆପଣଙ୍କ କନ୍ୟାକୁ ନେଇ ଗାଁକୁ ଫେରିଯାଆନ୍ତୁ । କହି ଗୃହଭିତରେ ପଶି ଦ୍ୱାର ବନ୍ଦ କରିଦେଲେ ଜୟଦେବ ।

ପଦ୍ମା ଭାବିଲା ନନାଙ୍କର କ'ଣ ମତି ଭ୍ରମ ହୋଇଗଲାକି ? ପ୍ରଭୁଙ୍କ ଦେବଦାସୀ କରିବାକୁ ଆଣିଛନ୍ତି, ପୁଣି ଏ ଯୁବକଙ୍କୁ ଏଭଳି କଥା କାହିଁକି କହିଲେ । ସେ ପୁଣି ବାରଣ କରି ଦେଲେ । ଛି ! ସତେଅବା ଲଜ୍ଜାରେ ପାତାଳରେ ପଶିଯିବ ପଦ୍ମା । ରାତି ପାହୁ ସେ ନନାଙ୍କୁ କହି ଏଠାରୁ ଶୀଘ୍ର ଚାଲିଯିବେ । ସେଇ ଗାଁରେ ବାପଝିଅ ମନଦୁଃଖରେ ସେଇ ପିଣ୍ଡାରେ ରାତି କଟାଇଲେ ।

ରାତି ଅବସାନ ହେବାର ସଙ୍କେତ ଦେଇ ସକାଳ ପକ୍ଷୀମାନେ ରାବି ଉଠିଲେ । ପୂର୍ବାକାଶ ଅବିର ରଙ୍ଗରେ ବୋଲି ହୋଇଗଲା । ଦୂରରୁ ତୀର୍ଥଯାତ୍ରୀମାନଙ୍କର କୀର୍ତ୍ତନ ସ୍ୱର ଶୁଣି ଉଠିପଡ଼ିଲେ ଦେବଶର୍ମା । ଏଇ ଉପଯୁକ୍ତ ସମୟ । ଝିଅକୁ ନିଦରୁ ଉଠାଇ କହିଲେ, ମା, ପଦ୍ମା । ତୁ ଦେବଦାସୀ ହେବା କଥା । ହେଲେ ପ୍ରଭୁ ଜଗନ୍ନାଥଙ୍କର ସ୍ୱପ୍ନରେ ମତେ ନିର୍ଦ୍ଦେଶ ଦେବାକଥା ମୁଁ ଅମାନ୍ୟ କରିବି ନାହିଁ । ଆଜିଠାରୁ ଜୟଦେବ ଗୋସେଇଁ ତୋ'ର ସ୍ୱାମୀ । ମୁଁ ତତେ ତାଙ୍କ ଆଶ୍ରୟରେ ଛାଡ଼ି ଚାଲି ଯାଉଚି । ପ୍ରଭୁ ନିଳାଦ୍ରୀବିହାରୀ ତତେ ରକ୍ଷା କରନ୍ତୁ । ଦେବଶର୍ମା ଚାଲିଗଲେ । ତାଙ୍କ ଯିବାବାଟକୁ ଚାହିଁ ଚାହିଁ ଆଖିରୁ ଲୁହ ଝରି ଯାଉଚି । କିଭଳି ଅବସ୍ଥାରେ ନନା ତାକୁ ଛାଡ଼ି ଚାଲିଗଲେ । ପ୍ରଭୁଙ୍କ ଆଦେଶରେ ଯାହା ହସ୍ତରେ ତାକୁ ଛାଡ଼ିଗଲେ ସେ ଯେ ତାକୁ ପତ୍ନୀ ରୂପରେ ଗ୍ରହଣ କରିବାକୁ ଅସ୍ୱୀକାର କରୁଛନ୍ତି । ପ୍ରଭୁ ଜଗନ୍ନାଥ । ଇଏ ତୁମର କିଭଳି ପରୀକ୍ଷା ପ୍ରଭୁ । କାନ୍ଦିଉଠିଲା ପଦ୍ମା । ପ୍ରାତଃ ସ୍ନାନ ପାଇଁ ସମୁଦ୍ରକୁ ବାହାରି ଯାଇଥିଲେ ଜୟଦେବ । ସ୍ନାନପରେ ପ୍ରଭୁଙ୍କ ନାମ ସ୍ମରଣ କରି ଗୀତ ରଚନା କରିବେ । ପୁଣିଯାଇ ମନ୍ଦିରରେ ଗାନ କରିବେ ।

ଗୃହ ସମ୍ମୁଖରେ ପୂର୍ବରାତିର ସେଇ ଯୁବତୀଙ୍କୁ ଏକାକିନୀ ଦେଖି ଆଶ୍ଚର୍ଯ୍ୟ ହେଲେ ଜୟଦେବ । ସେ ଭାବିଥିଲେ ପିତା କନ୍ୟା ଦୁହେଁ ନିଜ ଗ୍ରାମକୁ ଏ ଭିତରେ ଫେରି ଯାଇଥିବେଣି ।

ପଦ୍ମାବତୀ ନିକଟକୁ ଆସି ପ୍ରଶ୍ନକଲେ, ତୁମେ ଯାଇନାହଁ ଦେବୀ । ଲୁହଭରା କଣ୍ଠରେ ତଳକୁ ମୁହଁ କରି ପଦ୍ମାବତୀ କହିଲା, ନନାମତେ ସାଙ୍ଗରେ ଗ୍ରାମକୁ ନେଲେ ନାହିଁ । ସେ କହିଲେ ପ୍ରଭୁଙ୍କ ଆଦେଶ ଅମାନ୍ୟ କଲେ ନର୍କଗାମୀ ହେବେ । କହି କାନ୍ଦିଉଠିଲା ସେ ।

ସତେକି ଜୟଦେବଙ୍କ କାନରେ ଦୈବିବାଣୀ ହେଲା । "ଭକ୍ତ ଜୟଦେବ । ଭକ୍ତିମତୀ ପଦ୍ମାବତୀଙ୍କୁ ପତ୍ନୀରୂପେ ଗ୍ରହଣ କର । ତୁମେ ରଚନା କରିବ କାନ୍ତକୋମଳ ପଦାବଳୀ । ସଙ୍ଗୀତକୁ ଜୀବନ୍ତ କରାଇବେ ପଦ୍ମାବତୀ । ତୁମେ ଦୁହେଁ ମୋର ଭକ୍ତ । ଜଣେ ମୋ ସମ୍ମୁଖରେ ଭକ୍ତି ସଙ୍ଗୀତ ଗାନକରିବ, ଆଉଜଣେ ତା'ର ଭାବ ପ୍ରକାଶ କରିବ ନୃତ୍ୟ ମାଧ୍ୟମରେ ।

ପ୍ରଭୁଙ୍କ ନିର୍ଦ୍ଦେଶମାନି ଜୟଦେବ ପଦ୍ମାବତୀଙ୍କୁ ବିବାହକଲେ । ତା'ପରେ ରଚନା କଲେ ଗୀତ ଗୋବିନ୍ଦ । ପ୍ରତ୍ୟେହ ଶ୍ରୀମନ୍ଦିରରେ ଜଗନ୍ନାଥଙ୍କ ସମ୍ମୁଖରେ ଗୀତଗୋବିନ୍ଦ ଗାନ କରନ୍ତି ଜୟଦେବ । ଛନ୍ଦୋବଦ୍ଧ ସଙ୍ଗୀତକୁ ମୃଦଙ୍ଗର ତାଳେ ତାଳେ ନୃତ୍ୟମାଧ୍ୟମରେ ପରିବେଷଣ କରେ ଗୀତଗୋବିନ୍ଦ । ସେଇ ଗୀତଗୋବିନ୍ଦର ପଂକ୍ତିଟିଏ ହେଲା "ପଦ୍ମାବତୀ ଚରଣେ ଚାରଣ ଚକ୍ରବର୍ତ୍ତୀ"

*ନିକ୍ସ ଜନ୍ ରୋଡ଼,*
*କୋର୍ଟପେଟ, ବ୍ରହ୍ମପୁର ।*





# ଗୀତଗୋବିନ୍ଦ ହିଁ ମୃତସଞ୍ଜୀବନୀ

**ଗଣେଶ ପ୍ରସାଦ ପରିଡ଼ା**

ପ୍ରିୟେ ! ତୁମେ ସେହି ଦ୍ୱାପର ଯୁଗର ରାଧା । ତା' ନହେଲେ ଏତେ ରୂପର ସମ୍ଭାର ଧରି ମଣିଷ କ'ଣ ଜନ୍ମ ହୋଇପାରେ ? ତୁମକୁ ଦେଖିଲେ ମୋର ଶୁଷ୍କ ହୃଦୟରେ ଫଲଗୁ ଆନନ୍ଦ ସ୍ରୋତ ବହି ଆସୁଛି । ଅଦିନରେ ସ୍ୱତଃ ଅନ୍ତରର ଆମ୍ର କୁଞ୍ଜରେ ଶୁଭୁଛି କୋକିଳର କୁହୁତାନ । ସାଧନା କ୍ଲିଷ୍ଟ ମନ ଆଖିରେ କିଏ ଯେପରି ଅଞ୍ଜନ ବୋଳି କହୁଛି, ମୁକ୍ତିରେ କ'ଣ ଏତେ ପ୍ରେମ, ଏତେ ଆନନ୍ଦ ଆସିପାରେ ? ଚିର ଆନନ୍ଦ ପାଇଁ ତ ଜୀବର ମୁକ୍ତି ଦରକାର । ତୁମେ ମୋ ପାଖରେ ଥିଲେ ଯଦି ସେହି ଅଫୁରନ୍ତ ଆନନ୍ଦ ମୋର ଆସେ ତେବେ ମୁକ୍ତି କିବା ଆବଶ୍ୟକ ?

ସ୍ୱାମୀ ! ତୁମେ ମୋର ସର୍ବସ୍ୱ । ଗୋପର ସେହି ଶ୍ରୀକୃଷ୍ଣ ବିରହିଣୀ ରାଧା ମୁଁ ହୋଇପାରିବି, ଏହା ସ୍ୱପ୍ନରେ ବି ଭାବି ନାହିଁ । କିନ୍ତୁ ମୁଁ ମୋ ଜନନୀଙ୍କଠାରୁ ଶୁଣିଛି ମୋ ପିତାଙ୍କର କୌଣସି ସନ୍ତାନ ଜନ୍ମ ହୋଇନଥିଲେ । ସେଥିପାଇଁ ସେ ଆସିଲେ ପୁରୁଷୋତ୍ତମ କ୍ଷେତ୍ରକୁ । ସେ ମହାପ୍ରଭୁ ଜଗନ୍ନାଥଙ୍କୁ ଜଣାଣ କଲେ, ହେ ମହାପ୍ରଭୁ ! ମୋତେ ନିଃସନ୍ତାନ ଦୋଷରୁ ପରିତ୍ରାଣ କର । ମୁଁ ଜାଣିଛି ତୁମର ଶକ୍ତି ଅସୀମ । ନିଃସନ୍ତାନକୁ ସନ୍ତାନ ଦେବା ତୁମ ପାଖରେ କିଞ୍ଚିତ ମାତ୍ର । ତୁମରି ଦୟାରୁ ମୋର ଯେଉଁ ପ୍ରଥମ ସନ୍ତାନ ହେବ ତାହାକୁ ମୁଁ ତୁମକୁ ସମର୍ପଣ କରିବି । ଏହା ମୋର ତ୍ରିବାର ସତ୍ୟ । ଶୁଣିଛି ମାତାଙ୍କଠାରୁ, ପିତା ଯେତେବେଳେ ଏହିପରି କଥା କହୁଥିଲେ, ସେତେବେଳେ ତୁଆଡ଼େ ମହାପ୍ରଭୁ ଜଗନ୍ନାଥଙ୍କଠାରୁ ତୁଳସୀ ସ୍ତବକ ଖସି ଆସିଲା ।

କୁହ କୁହ ପ୍ରିୟେ ! ସେହି ମଧୁର କଥା । ମୋ ଦେଶର, ମୋ ଜାତିର ପରମାରାଧ୍ୟ ମହାପ୍ରଭୁ ଜଗନ୍ନାଥଙ୍କ ବିଷୟ । ମୁଁ ଜାଣିଛି ମୋ ପ୍ରଭୁ ସାଧାରଣ ନୁହନ୍ତି । ସମସ୍ତ ଅବତାର ପୁରୁଷ ତାଙ୍କରି ଭିତରୁ ବାହାରି ତାଙ୍କରି ମଧ୍ୟରେ ଲୀନ ହୋଇଯାନ୍ତି । ସେ ସୃଷ୍ଟି କରିଛନ୍ତି ଏ ସଚରାଚର ବିଶ୍ୱକୁ । ଶ୍ରୀକୃଷ୍ଣ ଯେଉଁଭଳି ପୁଅ, ନାତି, ଅଣନାତି ଆଦି ବହୁ ସୃଷ୍ଟି କରି ପୁଣି ତାଙ୍କୁ ସଂହାର କଲେ ସେହିଭଳି ସେ ମଧ୍ୟ ମୋହ ମାୟା ତ୍ୟାଗ କରି ପ୍ରଳୟ ଆଣନ୍ତି ବିଶ୍ୱରେ । ସେ କାହାରି ଅଧୀନ ନୁହନ୍ତି — ଖାଲି ଏ ବିଶ୍ୱ କାହିଁକି କୋଟି କୋଟି ବିଶ୍ୱର ସେ ଅଧୀଶ୍ୱର ।

ମୁଁ ଜାଣିଛି ସ୍ୱାମୀ ! ମହାପ୍ରଭୁ ଅନ୍ୟାନ୍ୟ ଦେବ ଦେବୀଙ୍କ ଭଳି ନୁହନ୍ତି । ତାଙ୍କରି ଦୟାରୁ ମୁଁ ପ୍ରଥମେ ଜନ୍ମିଲି । ତା'ପରେ ମା'ଙ୍କଠାରୁ କେତୋଟି ଭାଇ ଜନ୍ମ ହେଲେ । ବାପ ମା'ଙ୍କ ଆଖିରେ ତାଙ୍କର ପୁଅ ଝିଅ ଯେତେ ବଡ଼ ହୁଅନ୍ତୁ ନା କାହିଁକି ସେ ପିଲା । ସେହିଭଳି ମୋତେ ଛୋଟ ପିଲା ଭାବେ ବାପ ମା' ଦେଖୁଥିଲେ । ଦିନେ ବାପା ସ୍ୱପ୍ନ ଦେଖିଲେ ମହାପ୍ରଭୁ ଜଗନ୍ନାଥ ତାଙ୍କୁ କହୁଛନ୍ତି, ଦେବଶର୍ମା ! ତୁ କହିଥିଲୁ ତୋର ପ୍ରଥମ ସନ୍ତାନକୁ ମୋତେ ଦେବୁ — କାହିଁ ତୁ ତ ତାକୁ ଦେଲୁନାହିଁ ? ତା' ପରଦିନ ମୋ ପିତା ମାତା ମୋତେ ଧରି ଶ୍ରୀକ୍ଷେତ୍ରକୁ ଆସିଲେ । ମୋତେ ନେଇ ମହାପ୍ରଭୁଙ୍କୁ ସମର୍ପଣ କରିବାକୁ ଗଲାବେଳେ ଶୂନ୍ୟରୁ ଶୁଣିଲେ, ଦେବଶର୍ମା ! ତୁମେ କନ୍ୟାଟିକୁ ମୋର ଭକ୍ତ ଜୟଦେବଙ୍କୁ ପ୍ରଦାନ କର । ସେ ଏହି ଶ୍ରୀକ୍ଷେତ୍ରରେ କୁଟୀର ନିର୍ମାଣ କରିଅଛନ୍ତି । ତାଙ୍କ ଛଡ଼ା ଏ କନ୍ୟା ଆଉ କାହାରି ପାଣି ଗ୍ରହଣ କରିପାରିବ ନାହିଁ । ସେହି ଶୂନ୍ୟବାଣୀ କେବଳ ମୋ ପିତା ଶୁଣିଲେ ତାହା ନୁହେଁ ମୁଁ ମଧ୍ୟ ଶୁଣିଲି । ଶୁଣିଲେ ମୋର ମାତା ଆଉ ମହାପ୍ରଭୁଙ୍କ ପଣ୍ଡା ।

ମୁଁ ସେ ସବୁ କଥା ତୁମ ପିତାଙ୍କ ମୁଖରୁ ଶୁଣିଛି । କିନ୍ତୁ ବିଶ୍ୱାସ କରିନଥିଲି । ତେଣୁ ମୁଁ କେବେ ରାଜି ନଥିଲି ତୁମକୁ ଗ୍ରହଣ କରିବା ପାଇଁ । ତୁମ ପିତା ମାତା ଯେତେବେଳେ ତୁମକୁ ମୋ ପାଖରେ ଛାଡ଼ି ଚାଲିଗଲେ ସେତେବେଳେ ମୋତେ କିପରି ଶୁଭିଲା, ଜୟଦେବ ! ତୁମେ ମୋ ବିଷୟରେ, ଆଉ ମୋର ଅବତାର କୃଷ୍ଣଙ୍କ ବିଷୟରେ ଯେଉଁ ଗ୍ରନ୍ଥ ରଚନା କରିବା ପାଇଁ ଇଚ୍ଛା କରିଛ ତା'ର ଉତ୍ସ ହେବ ଏହି କନ୍ୟା ପଦ୍ମା । ତୁମେ ତାକୁ ଗ୍ରହଣ କର ।

ପଦ୍ମା ! ତା'ପରେ ମୁଁ ତୁମକୁ ନେଇ ତୁମ ପିତାଙ୍କ ପାଖରେ ପାଣି ଗ୍ରହଣ ପାଇଁ ଅନୁରୋଧ କଲି । ଏହାପରେ ରାଧା କୃଷ୍ଣଙ୍କ

ମନର ଯେଉଁ ଝଙ୍କାର ମୋ ଭିତରେ ଅନୁଭବ କରୁଥିଲି ତାହା ପ୍ରକାଶ ପାଇଁ ରୂପ ନେଲା ଲେଖନୀ ତାଳପତ୍ରରେ । କୋମଳ ଲଳିତ ଛନ୍ଦରେ ଯେଉଁ ଗୀତଗୋବିନ୍ଦ ମୁଁ ଲେଖୁଲି ତା'ର ଉତ୍ସ ତୁମେ । ମୋର ଅନେକ ସମୟରେ ମନେହୁଏ ସେହି ଦ୍ୱାପର ଯୁଗର ରାଧା ତୁମେ ଥିଲ । ତା' ନହେଲେ ଏତେ ସୌନ୍ଦର୍ଯ୍ୟ, ଏତେ ନିର୍ମଳ ହୃଦୟ ଧରି ମଣିଷ କେବେ ଜନ୍ମ ହୁଏନାହିଁ ।

ସ୍ୱାମୀଙ୍କ ମୁହଁରୁ ନିଜ ପ୍ରଶଂସା ଶୁଣି ଲାଜେଇଗଲେ ପଦ୍ମା । ସେ ଲାଜ ମିଶା ସ୍ୱରରେ କହିଲେ, ଆଉ ତୁମେ ? ତୁମେ କ'ଣ ସେହି ଭଗବାନ କୃଷ୍ଣଙ୍କ ଅଂଶରୁ ଜନ୍ମ ହୋଇନାହିଁ ? ତୁମରି କଥା ଯଦି ସତ୍ୟ ହୁଏ, ତେବେ ତୁମେ କୃଷ୍ଣ ନହୋଇଥିଲେ ରାଧା ତୁମ ପାଖକୁ ଆସିଥାନ୍ତା କିପରି ? ଗୀତଗୋବିନ୍ଦର ଲଳିତ କୋମଳ ଧ୍ୱନି ଯେତେବେଳେ ତୁମ ମୁଖରୁ ନିର୍ଗତ ହୁଏ ସେତେବେଳେ ମୋ ଅନ୍ତର ଆନନ୍ଦରେ ଫାଟିପଡ଼େ । ନାଚି ନଜାଣିଲେ ମଧ୍ୟ ତୁମ କଣ୍ଠ ସ୍ୱରରେ ପାଗଳୀ ହୋଇ ନାଚି ଉଠେ । ଦିନେ ଦିନେ ମହାରାଣୀ ମୋତେ ଡାକିନେଇ ତୁମରି କଥା ପଚାରନ୍ତି । ଇଚ୍ଛା ହୁଏ ଶତମୁଖ ହୋଇ ତୁମରି କଥା ମୁଁ କହିଯା'ନ୍ତି କି ? କିନ୍ତୁ ପରକ୍ଷଣରେ ମୁଁ ଲଜ୍ଜିତା ହୁଏ । ମହାରାଣୀଙ୍କ ଆଗରେ ମୁଁ ମୋ ସ୍ୱାମୀଙ୍କ କଥା କିପରି କ'ଣ କହିବି ?

ହଠାତ୍ ଜୟଦେବ ଉଠି ପଡ଼ିଲେ । ଆରେ ମୋର ମନେ ନଥିଲା । ମହାରାଜ ମୋତେ କହିଥିଲେ ଯିବାକୁ । ତୁମକୁ ପରା ମହାରାଣୀ କହିଥିଲେ ତାଙ୍କ ପାଖକୁ ଯିବା ପାଇଁ । କୁଡ଼ିଆରେ ଏକା ବସି କ'ଣ କରିବ — ଯାଅ ରାଜ ନଅର ଆଡ଼େ ଟିକିଏ ବୁଲି ଆସ !

ହଁ ମୁଁ ଯିବି ଯେ, କିନ୍ତୁ ମହାରାଣୀଙ୍କ କଥା ଭଲ ଲାଗେ ନାହିଁ । ସେ କହନ୍ତି, ସ୍ୱାମୀ ସହିତ ସହମରଣ ହେବା ଟିକିଏ କଷ୍ଟ । ମୁଁ ମୋଟେ ବୁଝିପାରେ ନାହିଁ ସେ ଏପରି କାହିଁକି କହନ୍ତି । ସ୍ୱାମୀ ମରିଗଲେ ସ୍ତ୍ରୀ ତ ଆପେ ଆପେ ମରିଯିବ । ସ୍ୱାମୀ ସହିତ ନିଆଁରେ କାହିଁକି ସେ ମରିବ ?

ପଦ୍ମା ! ସ୍ୱାମୀ ମଲା ପରେ ସ୍ତ୍ରୀକୁ ଜୋର କରିନେଇ ସ୍ୱାମୀର ଚିତାରେ ପୋଡ଼ିବା ନିହାତ୍ ଅମାନୁଷିକତା । ମହାରାଣୀ ଯାହା କହୁଛନ୍ତି ତାହା ସତ୍ୟ । ସ୍ୱାମୀ ମରିଗଲେ ସ୍ତ୍ରୀର ସହମରଣ ମୋଟେ ଉଚିତ ନୁହେଁ । ସେ ବିଷୟରେ ତୁମର କୌଣସି ମତ ଦେବା ମୋଟେ ଉଚିତ ନୁହେଁ ।

ପଦ୍ମା କଣ କହି ଆସୁଥିଲେ — ବାରଣ କଲେ ଜୟଦେବ । ସେ ତରବର ହୋଇ ବାହାରି ପଡ଼ିଲେ ରାଜ ସଭା ଉଦ୍ଦେଶ୍ୟରେ । ଗଲାବେଳେ କହିଗଲେ ରାଜ ନବର ଯାଇ ମହାରାଣୀଙ୍କୁ ଭେଟିବା ପାଇଁ ।

ସ୍ୱାମୀ ଯେତେବେଳେ କହି ଯାଇଛନ୍ତି ସେତେବେଳେ ଯିବାକୁ ହିଁ ହେବ । ପଦ୍ମା ଘରର କାମ ସାରି ଯିବା ପାଇଁ ଲୁଗା ପିନ୍ଧୁ ପିନ୍ଧୁ ନେବା ପାଇଁ ମହାରାଣୀ ଦୋଳା ପଠାଇଲେ । ତେଣୁ ଅସୁବିଧା କିଛି ହେଲା ନାହିଁ ପଦ୍ମାଙ୍କୁ । ସେ ଦୋଳାରେ ବସି ଗଲେ ରାଜ ନବରକୁ ।

କଳିଙ୍ଗର ମହାରାଣୀ ପଦ୍ମାଙ୍କୁ ଦେଖି ଖୁବ୍ ଖୁସି ହୋଇଗଲେ । କହିଲେ, ମୋର କାହିଁକି ଇଚ୍ଛା ହେଲା ଜୟଦେବଙ୍କ ଗୀତଗୋବିନ୍ଦ ଶୁଣିବାକୁ । ପ୍ରକୃତରେ ଯେ ଯେତେ ବୋଲନ୍ତୁ ନା କାହିଁକି ତୁମ କଣ୍ଠ ଭଳି କାହାରି କଣ୍ଠ ସେତେ ଭଲ ଲାଗେ ନାହିଁ । ନିଜେ ମହାରାଜା କୁହନ୍ତି ବୀଣାଠାରୁ ଅଧିକ ସୁନ୍ଦର ତୁମ କଣ୍ଠ । ସତେ ଯେପରି ତୁମ ଦୁହିଁଙ୍କୁ ଭଗବାନ ସୃଷ୍ଟି କରିଛନ୍ତି ମହାପ୍ରଭୁଙ୍କ ମନ ତୁଷ୍ଟି ପାଇଁ ।

ପଦ୍ମାଙ୍କ ମୁହଁରେ ଛୋଟ ହସଟିଏ ଫୁଟି ଉଠିଲା । ସେ କହିଲେ, ମହାପ୍ରଭୁଙ୍କ ତୁଷ୍ଟି ନିମିତ୍ତ କବି ତାହା ଲେଖିଛନ୍ତି । ମୋ କଣ୍ଠ ଯେ ଏତେ ସୁନ୍ଦର ତାହା ଆପଣଙ୍କଠାରୁ ଶୁଣୁଛି । ହେଉ ଆପଣଙ୍କ କଥା ସତ୍ୟ ହେଉ । ମୋ କଣ୍ଠ ମହାପ୍ରଭୁଙ୍କୁ ସୁଖ ଲାଗୁ । କବିଙ୍କ ଜୀବନ ସାର୍ଥକ ହେଉ ।

ମହାରାଣୀ କହିଲେ ମୁଁ ତ ଶ୍ରୀମନ୍ଦିରକୁ ଯାଇପାରୁ ନାହିଁ । ଦେଶ ଜାତିରେ ଦେବତାଙ୍କ ଦର୍ଶନ ପାଇଁ ମହାରାଣୀଙ୍କର କଟକଣା ଅଛି । ତେଣୁ ମୁଁ ତୁମ ଗୀତଗୋବିନ୍ଦ ଶୁଣିବାକୁ ଯିବା ସହଜ ନୁହେଁ । କେବଳ ନବରରେ ଥିବା ଠାକୁରଙ୍କ ପାଖରେ ତୁମେ ଯେତେବେଳେ ବୋଲୁଛ ମୋତେ ତାହା ଖୁବ୍ ଭଲ ଲାଗୁଛି । ଅନ୍ୟମାନେ କହନ୍ତି ତୁମେ ଯେତେବେଳେ ମହାପ୍ରଭୁଙ୍କ ସମ୍ମୁଖରେ ଗୀତଗୋବିନ୍ଦ ବୋଲ ସେତେବେଳେ କୁଆଡ଼େ ଜଗନ୍ନାଥଙ୍କ ମୁହଁ ପ୍ରଫୁଲ୍ଲ ଦେଖାଯାଏ । ପଖାଉଜର ତାଳେ ତାଳେ ସେ ମୁଣ୍ଡ ହଲାନ୍ତି ।

ମହାରାଣୀ ! ସେ ସବୁ ଅମୀୟ ଦୃଶ୍ୟ ଦେଖିବାର ସୌଭାଗ୍ୟ ମୋର ନାହିଁ । ମୁଁ କେବଳ ଗୀତଗୋବିନ୍ଦ ବୋଲୁ ବୋଲୁ ଭାବରେ ବିଭୋର ହୋଇପଡ଼େ । ନିଜର କଣ୍ଠ ସ୍ୱର ମଧ୍ୟ ବାରିପାରେ ନାହିଁ । କେବେ କବି ଗୀତଗୋବିନ୍ଦ ବୋଲନ୍ତି, ମୁଁ ନାଚେ, ନାଚୁ ନାଚୁ ତନ୍ମୟ ହୋଇପଡ଼େ । ସବୁ ଦିଗରେ ଦେଖେ ମୁଁ ମହାପ୍ରଭୁଙ୍କ ସ୍ୱରୂପ । କେବଳ ଶୁଭୁଥାଏ ପଖାଉଜର ତାଳ । ସେହି ତାଳ ବନ୍ଦ ହେଲେ ଆପେ ଆପେ ମୋ ନାଚ ବନ୍ଦ ହୋଇଯାଏ । ତେଣୁ ମୁଁ କିପରି କହିବି ସେହି ଗୀତ ନାଚକୁ ମହାପ୍ରଭୁ କିପରି ଉପଭୋଗ କରନ୍ତି ? କିନ୍ତୁ ମହାପ୍ରଭୁଙ୍କ ଚିତ୍ରପଟ ବା ପ୍ରତିମା ନିକଟରେ ଗୀତ ବୋଲିଲେ ସେହି ଭାବ କାହିଁକି ଆସେ ନାହିଁ ।

ଏ ମଧ୍ୟରେ ପଖାଉଜ, ବୀଣା, ଗିନି ବାଜି ଉଠେ । ପଦ୍ମା ଗାଇ ଉଠିଲେ, "ଚନ୍ଦନ ଚର୍ଚ୍ଚିତ ନୀଳ କଳେବର ପୀତ ବସନ ବନମାଳୀ" । ମାତ୍ର ଆଠ ପଦରେ ରାମକେରୀ ରାଗରେ ସେ ସର୍ଗଟି ରଚିତ । ନିଠେଇ ନିଠେଇ ପଦ୍ମା ବୋଲି ଗ୍ଲଲିଥାନ୍ତି ଏକ ପରେ ଏକ ପଦ କେବଳ ବାଦ୍ୟର ଝଙ୍କାର ଆଉ ପଦ୍ମାଙ୍କ କଣ୍ଠ ବ୍ୟତୀତ କିଛି ଶୁଭୁ ନଥାଏ । ମହାରାଣୀ ଅନୁଭବ କଲେ ମହାପ୍ରଭୁ ଯେପରି ଗୀତ ଶୁଣି ବିହ୍ୱଳିତ ହୋଇପଡ଼ିଛନ୍ତି । ମଦନ ନିଶାରେ ତାଙ୍କ ଆଖି ଢୁଳ ଢୁଳ ହେଉଛି । ବାହୁ ପ୍ରସାରି ଡାକୁଛନ୍ତି ଆସ, ଆସ ତୁମେ ଗୋପବାଳା ସଦୃଶ ଅନ୍ତଃପୁର ବାସିନୀମାନେ । ତୁମ ଉର୍ଣ ସୁଖ ଦେଇ ମୋତେ ଏ ବ୍ୟାଧିରୁ ଉଦ୍ଧାର କର ।

ମହାରାଣୀ ଦେଖିଲେ ମହାପ୍ରଭୁ ହସୁଛନ୍ତି । ସତେ ଯେପରି କାମ ମଦରେ ସେ ବିଭୋର । ଆହା – ମହାପ୍ରଭୁ ପଡ଼ିଯିବେ କି ? ମହାରାଣୀ ଉଠିପଡ଼ି ମହାପ୍ରଭୁଙ୍କୁ କୁଣ୍ଢାଇ ପକାଇଲେ । ଆହା ମହାପ୍ରଭୁଙ୍କ ଦେହ କେତେ କୋମଳ, କେତେ ଶୀତଳ ।

ସତେ ଯେପରି ମହାପ୍ରଭୁ ହସି ଉଠିଲେ । ତାଙ୍କ ବଙ୍କିମ ଅଧରରୁ ବେଗି ବେଗି ହୋଇ ହସ ଝରି ପଡ଼ିଲା । ମହାରାଣୀ ଅନୁଭବ କଲେ ମହାପ୍ରଭୁଙ୍କ ଦେହର ସ୍ପନ୍ଦନ । ହସିଲା ବେଳେ ତାଙ୍କ ପେଟ ବାରମ୍ବାର ଥରି ଉଠିଲା । ବୁଝି ପାରିଲେ ନାହିଁ ମହାରାଣୀ ମହାପ୍ରଭୁଙ୍କ ମାୟା ।

ଯେତେହେଲେ ଭଗବାନଙ୍କ ହାତ ଗଢ଼ା କଣ୍ଢେଇ ମଣିଷ । ସେ ଭାବେ ତା'ର ଜୀବନ ଅଛି । ଶୀତ–ଉଷ୍ମ–ସ୍ପନ୍ଦନ ଆଦି ତା'ର ଅଛି । କିନ୍ତୁ ଠାକୁର ମଣିଷ ହାତ ଗଢ଼ା ପିତୁଳା । ସେ କାଠ, ପଥର, ଧାତୁରେ ତିଆରି । ସେହି ପିତୁଳା ମଧ୍ୟରେ ଯଦି ସ୍ପନ୍ଦନ ସଞ୍ଚାର ମିଳେ ତେବେ ମଣିଷ କ'ଣ ବିଶ୍ୱାସ କରିପାରିବ ?

ସେଥିପାଇଁ ତ ସଖା କୃଷ୍ଣଙ୍କଠାରେ ବିଶ୍ୱକୁ ଦେଖି ଭୟ ବିହ୍ୱଳିତ ହୋଇପଡ଼ିଥିଲେ ଅର୍ଜୁନ । ସେହି ଦୁର୍ଦ୍ଦଶା ମଧ୍ୟ ଘଟିଥିଲା ମାତା ଯଶୋଦାଙ୍କର । ଶ୍ରୀକୃଷ୍ଣ ମାଟି ଖାଉଥିଲାବେଳେ ସେ କ'ଣ ଖାଉଛନ୍ତି ବୋଲି ପାଟି ମେଲା କରିବାକୁ କହିଲେ । ପୁଅ କୃଷ୍ଣ ପାଟି ମେଲା କଲାରୁ ମା' ଯଶୋଦା ଦେଖିଲେ ତାଙ୍କ ପାଟି ଭିତରେ ବିଶ୍ୱ ବ୍ରହ୍ମାଣ୍ଡ । ଏହା ପୁଅର ଅମଙ୍ଗଳ ସୂଚକ ଭାବି ସେ ଭୟ ପାଇଗଲେ । କିନ୍ତୁ କଳିଙ୍ଗର ମହାରାଣୀ ଶ୍ରୀଜଗନ୍ନାଥଙ୍କ ଦେହରେ ପ୍ରାଣର ସଞ୍ଚାର ଅନୁଭବ କରି ସେ ଭୁଲିଗଲେ ନିଜକୁ । ସେଥିପାଇଁ ତ ପ୍ରେମ ଓ ଭକ୍ତି ସମସ୍ତଙ୍କଠାରୁ ଊର୍ଦ୍ଧ୍ୱରେ ।

ନନ୍ଦଙ୍କ ସହିତ ବାଳୁତ ପୁଅ କୃଷ୍ଣ ଗୋଷ୍ଠକୁ ଯାଇଥିଲେ । ହଠାତ୍ ଚାରିଆଡ଼କୁ ଅନ୍ଧାର କରି ଘୋଟି ଆସିଲା କଳାମେଘ । ନନ୍ଦ ରାଧିକାଙ୍କୁ ଦେଖି କହିଲେ ହେ ରାଧେ ! କୃଷ୍ଣ ଅନ୍ଧାରକୁ ଦେଖି ଡରିଯାଏ । ପିଲାଟା ମୋ ସହିତ ଆସିଥିଲା । ତୁମେ ତାକୁ ଘରକୁ ନେଇଯାଅ । ତା'ର ମା' ଯଶୋଦା ମଧ୍ୟ କଳାମେଘକୁ ଦେଖି ଆଖି ଛଳ ଛଳ କରି സାରିବଣି । ତୁମେ ତୁମ ପଣତ ଘୋଡ଼ାଇ ତାଙ୍କୁ ଯତ୍ନର ସହିତ ନେଇଯିବ ।

ରାଧିକା ବାଳୁତ କୃଷ୍ଣଙ୍କୁ ନେଇ ଗଲାବେଳେ ତମାଳ ତରୁଗୁଡ଼ିକ ଗାଢ଼ ଶ୍ୟାମଳ ଦେଖାଗଲେ । ଅନ୍ଧାର ଦିଶିଲା ବନଭୂମି । ହଠାତ୍ ବାଳୁତ ପୁତ୍ର ଶ୍ରୀକୃଷ୍ଣ ଯୁବକ ହୋଇଗଲେ । ଯୁବତୀ ରାଧା ଯୁବକ କୃଷ୍ଣଙ୍କୁ ଦେଖି ବିହ୍ୱଳିତା ହୋଇ ପଡ଼ିଲେ । କୃଷ୍ଣଙ୍କ ସହିତ ସେ ତରୁଲତା ପୂର୍ଣ୍ଣ କୁଞ୍ଜଲତା ତଳେ, ଯମୁନା କୂଳରେ କେଳି କରିବାକୁ ଲାଗିଲେ । ପ୍ରେମିକ ପ୍ରେମିକାଙ୍କୁ କ'ଣ କୌଣସି ଭୟ ତାଙ୍କ ବାଟରୁ ଦୂରକୁ ନେଇଯାଇପାଏ ?

ଏତିକିବେଳେ ପୁଣି ବାଜି ଉଠିଲା ବୀଣା, ପଖାଉଜ । ପଦ୍ମା ଗାଇ ଉଠିଲେ "ବିହରତି ବନେ ରାଧା.....” । ହଠାତ୍ ସ୍ପନ୍ଦିତ ହେଉଥିବା ମହାପ୍ରଭୁ ଜଗନ୍ନାଥଙ୍କ ବକ୍ଷ ସ୍ଥିର ହୋଇଗଲା । ସତେ ଯେପରି ସେ ପୁଣି କାଠ ପାଲଟି ଗଲେ । ସଙ୍ଗେ ସଙ୍ଗେ ମହାରାଣୀଙ୍କ ମଧ୍ୟରେ ଉଦ୍‌ବେଳିତ ହୋଇ ଉଠିଥିଲା ଯେଉଁ ମହାପ୍ରେମର ଜୁଆର, ତାହା ଭଟ୍ଟା ପଡ଼ିଗଲା । ଅପସରି ଗଲା ମହାନନ୍ଦ । ସତେ ଯେପରି ଯୋଗୀର ଷଟଚକ୍ର ଭେଦ କରି ଉଠୁଥିବା ସରହ ସୁନ୍ଦରୀର ମୁଖପଦ୍ମ ହୋଇଗଲା ମ୍ଳାନ । କାହା ପାଇଁ ? ଏହି ପଦ୍ମା ପାଇଁ ନୁହେଁ ତ ? ସେ ଯଦି ଆଉ ଟିକିଏ ପରେ ଗୀତଗୋବିନ୍ଦ ବୋଲିଥାନ୍ତା ତେବେ ମହାପ୍ରଭୁ ଏକଥି କାଠ ହୋଇ ଯାଇନଥାନ୍ତେ ।

ମହାରାଣୀ ଫେରି ଆସିଲେ ନିଜ ଆସନକୁ । ପଦ୍ମା ବୋଲୁଥାଏ କୋମଳ କଣ୍ଠରେ ଗୀତଗୋବିନ୍ଦର ଲଳିତ ପଦଗୁଡ଼ିକ । ତା' କଣ୍ଠରେ ଝଙ୍କାର ସହିତ ବୀଣାର ଝଙ୍କାର ସମ ଗତିରେ ନିମ୍ନ ସ୍ୱରରେ ବାଜି ଚାଲିଥାଏ । ଗୀତର ତାଳେ ତାଳେ ବାଜି ଉଠୁଥାଏ ପଖାଉଜ । କେବଳ ବାଦ୍ୟଯନ୍ତ୍ର ଓ ଗୀତର ସ୍ୱର ଛଡ଼ା ଆଉ କିଛି ଶୁଭୁ ନଥାଏ । ରାଣୀଙ୍କ ବ୍ୟତୀତ ସମସ୍ତେ ସ୍ଥିର ସ୍ଥାଣୁ ପ୍ରାୟ ।

କିଛି ସମୟ ପରେ ବନ୍ଦ ହୋଇଗଲା ଗୀତ ଓ ବାଦ୍ୟର ଝଙ୍କାର । ଧୀରେ ଧୀରେ ପ୍ରକୃତିସ୍ଥ ହୋଇ ଉଠିଲେ ସମସ୍ତେ । ପ୍ରତ୍ୟେକଙ୍କ ମୁହଁରୁ ପଦ୍ମା କଣ୍ଠର ପ୍ରଶଂସା ମୁଖରିତ ହୋଇ ଉଠିଲା । ପଦ୍ମା ଟିକିଏ ଲଜ୍ଜିତ ହୋଇ କହିଲା, ସବୁ ପ୍ରଶଂସାର ଅଧିକାରୀ କବିରାଜ ଜୟଦେବ । ମୁଁ କେବଳ ନିମିତ୍ତ ମାତ୍ର । ତାଙ୍କ ବିହୁନରେ ମୋର କୌଣସି ଅସ୍ତିତ୍ୱ ନାହିଁ । ମୂଳ ବସ୍ତୁ ନଥିଲେ ଛାୟା ବା ଆସିବ କୁଆଡୁ ?

ମହାରାଣୀ କହିଲେ ଏ କିପରି କଥା କହୁଛ ପଦ୍ମା? ଜୟଦେବଙ୍କ ବିହୁନରେ ତୁମର ଯଦି ଅସ୍ତିତ୍ୱ ନାହିଁ ତେବେ ଏହି ଟିକକ ପୂର୍ବରୁ ଜୟଦେବ ଚାଲିଯିବା ମୁଁ ସମ୍ବାଦ ପାଇଛି । ମହାରାଜଙ୍କ ରାଜ ସଭାରେ ସେ ବସିଥିଲେ । ହଠାତ୍ ମୁଣ୍ଡ ତାଙ୍କର ବୁଲାଇଗଲା । ସେ ତଳେ ଚିତ୍ ହୋଇ ପଡ଼ିଗଲେ । ହଁ ହଁ କହୁ କହୁ ସବୁ ଶେଷ ହୋଇଗଲା । ରାଜ ବୈଦ୍ୟ ନାଡ଼ି ଦେଖି କହିଲେ ସେ ଚାଲି ଯାଇଛନ୍ତି । କିନ୍ତୁ ତୁମେ ତ ଅଛ । ତୁମ ଅସ୍ତିତ୍ୱ ରହିଛି ।

ଏଁ – ସେ ଚାଲିଯାଇଛନ୍ତି ? ପଦ୍ମାକୁ ସଙ୍ଗରେ ନ ନେଇ ସେ ଚାଲିଗଲେ ? 'ଟିକିଏ ରୁହ ସ୍ୱାମୀ' କହି ପଦ୍ମା କଅଁଳି ହୋଇ ପଡ଼ିଲେ ସେହିଠାରେ । ତା'ପରେ ଥରି ଉଠିଲା ସମସ୍ତ ଦେହ । ପରେ ପରେ ଧୀରେ ଧୀରେ ପାଦଆଡୁ ନିସ୍ତେଜ ହୋଇ ଆସିଲା । ମୁହୂର୍ତ୍ତକ ମଧ୍ୟରେ ସାରା ଦେହଟି ତାଙ୍କର ସ୍ଥିର ହୋଇଗଲା ।

ରାଜ ସଭାରେ ବୈଦ୍ୟରାଜ ଥାଇପାରନ୍ତି ଭାବି ଜରୁରୀ ଡାକରା ଦିଆଗଲା ରାଜ ବୈଦ୍ୟଙ୍କୁ । ମହାରାଣୀ ନିଜ ହାତରେ ନିର୍ମଳ ପାଣି ଦେଲେ ପଦ୍ମାଙ୍କ ମୁଖରେ । ନାଁ – ଭିତରେ ସମସ୍ତ ଶେଷ ହୋଇଯାଇଛି । ବାହାରୁ ଯାହା ଦେଲେ ବି ସେ ଭିତରକୁ ଯିବ ନାହିଁ । ସ୍ପନ୍ଦନ ନାହିଁ ସାରା ଦେହରେ – ବନ୍ଦ ହୋଇଯାଇଛି ମଧ୍ୟ ନିଶ୍ୱାସ ପ୍ରଶ୍ୱାସ । କିନ୍ତୁ ଦେହରୁ ଉଷ୍ମତା ଉଭେଇ ଯାଇନାହିଁ । ସତେ ଯେପରି ପ୍ରାଣ ବିହୁନେ ପ୍ରଲୋଭନ ରହିଛି ।

ସଖୀମାନେ – ଦାସୀମାନେ – ନିଜେ ମହାରାଣୀ ସ୍ଥିର ହୋଇପଡ଼ିଥିବା ପଦ୍ମାଙ୍କ ଦେହକୁ ଆଉଁସିବାକୁ ଲାଗିଲେ । କେହି

ସେହି କାନକୁ ଫୁଙ୍କିବାକୁ ଲାଗିଲେ । ମହାରାଣୀ ବାରମ୍ବାର ଡାକି ଉଠିଲେ ପଦ୍ମା ଦେବୀ – ପଦ୍ମା !

କିଛି ଉତ୍ତର ନାହିଁ । ଡାକଗୁଡ଼ିକ ସେହି ଭିତରେ ଧ୍ୱନିତ ପ୍ରତିଧ୍ୱନିତ ହୋଇ ଶୂନ୍ୟକୁ ବାହାରି ଚାଲି ଯାଉଥାଏ । ବୋଧେ ସେ ଚେଷ୍ଟା କରୁଥାଏ, ଘଟରୁ ବାହାରି ଯାଇଥିବା ସେହି ପରମ ଆତ୍ମାର କର୍ଣ୍ଣ କୁହରରେ ପ୍ରବେଶ କରିବାକୁ । କିନ୍ତୁ ସବୁ ନିଷ୍ଫଳ । ଯେତେ ଯେପରି ଏ ପୁରର ଡାକ ସେ ପୁରକୁ ଶୁଭୁ ନାହିଁ ।

କାନ୍ଦି ଉଠିଲେ ମହାରାଣୀ । ଏ ମୁଁ କ'ଣ କଲି । ଜାଣି ଶୁଣି ଗୋଟିଏ ନିଷ୍ପାପ ନାରୀର କାଳ ହୋଇଗଲି । ହେ ସତୀ ନାରୀ ପଦ୍ମା ! ମୁଁ ଅପରାଧ କରିଛି – ଦୟାକରି ନିଜ ଦେହକୁ ଫେରିଆସ । ହେ ମହାପ୍ରଭୁ ଜଗନ୍ନାଥ ! ତୁମେ ମୋତେ କ୍ଷମା ଦିଅ – ମୋତେ ରକ୍ଷା କର । ନଜାଣିବା ପଣରେ ମୁଁ ଗୋଟାଏ ବିରାଟ ଅପରାଧ କରି ଦେଇଛି । ଏଥିରୁ ତୁମ ଛଡ଼ା ଆଉ କେହି ଉଦ୍ଧାର କରିପାରିବ ନାହିଁ ।

ଜରୁରି ଡାକରା ପାଇ ରାଜବୈଦ୍ୟ ରାଣୀ ହଂସପୁରରେ ପ୍ରବେଶ କଲେ । ତାଙ୍କୁ ପାଛୋଟି ନେବାକୁ ଛିଡ଼ା ହୋଇଥିଲେ ଦାସୀ । ସଙ୍ଗେ ସଙ୍ଗେ ଉଚ୍ଚ ସ୍ୱରରେ ନାରୀ କଣ୍ଠରୁ ବିଜ୍ଞାପିତ ହେଲା ରାଜବୈଦ୍ୟଙ୍କ ଆଗମନ ବାର୍ତ୍ତା । ଶୁଣୁ ଶୁଣୁ ଅନ୍ତଃପୁରବାସିନୀ ମୁହଁରେ ଓଢ଼ଣା ଦେଇ ଅପସରି ଗଲେ । ରାଜବୈଦ୍ୟ ଆଗେଇ ଚାଲିଲେ ଆଗକୁ ।

ପଦ୍ମାର ଦେହଟି ପଡ଼ିଥାଏ ନିଥର ହୋଇ ଚଟାଣ ଉପରେ । ରାଜବୈଦ୍ୟଙ୍କୁ ପାଛୋଟି ନେଇ ପରିଚାରିକା ସେହିଠାରେ ପହଞ୍ଚାଇ ଦେଲେ । ପଦ୍ମାଙ୍କୁ ଦେଖୁ ଦେଖୁ ରାଜବୈଦ୍ୟ ନଇଁପଡ଼ି ତାଙ୍କ ହାତଟିକୁ ଟେକି ନେଇ ନାଡ଼ୀ ଦେଖୁଥିଲେ । ହଁ–ନାଡ଼ୀ ସ୍ପନ୍ଦନହୀନ କେତେବେଳୁ ସବୁ ସରି ଯାଇଛି । ନିର୍ବାପ ପ୍ରଦୀପରେ ଧୂମ ତ ନାହିଁ – କେବଳ ଉଷ୍ମତା ଯାହା ଟିକିଏ ଅଛି ।

ସଙ୍ଗେ ସଙ୍ଗେ ମହାରାଜ ଜୟଦେବଙ୍କୁ ସାଙ୍ଗରେ ନେଇ ପ୍ରବେଶ କଲେ ଅନ୍ତଃପୁରରେ । ବ୍ୟସ୍ତ ହୋଇପଡ଼ିଲେ ଜୟଦେବ ପଦ୍ମାଙ୍କ ନିଥର ଦେହକୁ ଦେଖି । ସେ ବଡ଼ ପାଟିରେ ଡାକି ଉଠିଲେ ପଦ୍ମା, ପଦ୍ମା – ଦେଖ, ମୁଁ ଆସିଛି । ମୁଁ ତୁମ ସ୍ୱାମୀ ଜୟଦେବ । ଆଖି ଖୋଲ – କୁହ ତୁମର କ'ଣ ହୋଇଛି ?

କିଛି ଉତ୍ତର ନାହିଁ – ପଦ୍ମାଙ୍କ ଦେହ ଯେଉଁଭଳି ଚଟାଣ ଉପରେ ପଡ଼ିଥିଲା ଠିକ୍ ସେହିଭଳି ପଡ଼ିଥାଏ । କିନ୍ତୁ ଜୟଦେବ ପଦ୍ମାଙ୍କ ଦେହରେ ଯେପରି ମୃତ୍ୟୁର ସଙ୍କେତ ପାଇଲେ ନାହିଁ । ତେଣୁ ସେ ବାରମ୍ବାର ଡାକି ଉଠୁଥାନ୍ତି ପଦ୍ମା, ପଦ୍ମା ବୋଲି ।

ଆଜ ନବରର ଜଗନ୍ନାଥଙ୍କ ମନ୍ଦିରର ଦ୍ୱାର ଖୋଲା । ସିଂହାସନ ଉପରେ ବସିଥାନ୍ତି ଶ୍ରୀଜଗନ୍ନାଥ–ବଳଭଦ୍ର–ସୁଭଦ୍ରା–ସୁଦର୍ଶନ । ଜଗନ୍ନାଥଙ୍କୁ ଦେଖୁ ଦେଖୁ ଜୟଦେବଙ୍କ ଆଖିରେ ଲୁହ ଭରିଗଲା । ସେ ହାତ ଦୁଇଟିକୁ ଯୋଡ଼ି କହିଲେ, ମହାପ୍ରଭୁ ! ଏ ଦୃଶ୍ୟ କ'ଣ ଆପଣଙ୍କୁ ଭଲ ଲାଗୁଛି ? ପଦ୍ମାଙ୍କୁ ଆପଣ ଯଦି ଚିରଦିନ ପାଇଁ ନେଇଯାନ୍ତି ତେବେ ସୁଲଳିତ କଣ୍ଠରେ ଗୀତଗୋବିନ୍ଦ ବୋଲିବ କିଏ ? ନାଚିବ କିଏ ??

ହଟିଆ ଠାକୁର ସେ । ସବୁ ଶୁଣି କିଛି ଶୁଣୁ ନଥାନ୍ତି । କେବଳ ତାଙ୍କ ବଙ୍କିମ ଅଧରରୁ ହସ ଝରି ପଡୁଥାଏ କେଉଁ କେଉଁ ହୋଇ ।

ପଦ୍ମାଙ୍କର ମୃତ୍ୟୁ କିପରି ହେଲା ଜାଣିବାକୁ ମହାରାଜ ମହାରାଣୀଙ୍କୁ ଡାକିନେଲେ । ମହାରାଣୀ କହିଲେ, ପଦ୍ମା କୁହନ୍ତି ସ୍ୱାମୀ ମରିଗଲା ପରେ ତା' ଚିତାରେ ପ୍ରାଣ ବିସର୍ଜନ କରିବା ନୃଶଂସ କାର୍ଯ୍ୟ । ସ୍ୱାମୀ ମରିଯିବା ସମ୍ବାଦ ପାଇ ଯଦି ସ୍ତ୍ରୀର ମୃତ୍ୟୁ ନହୁଏ ତେବେ ଚିତାରେ ଗୋଟାଏ ନାରୀକୁ ଜୀବନ୍ତ ଦଗ୍ଧ କରିବା ଅମାନୁଷିକତା । ତା'ଠାରୁ ବରଂ ଭଲ ନାରୀକୁ ବଞ୍ଚିବାକୁ ଦେବା । ସେ ବଞ୍ଚିରହି ସାରା ଜୀବନ ସ୍ୱାମୀକୁ ଝୁରି ଝୁରି ମରିବା ସହସ୍ର ଗୁଣେ ଉଚିତ । ମୁଁ ତାଙ୍କୁ କହିଲି ଏହା କ'ଣ ସମ୍ଭବ ସ୍ୱାମୀର ମୃତ୍ୟୁ ଖବର ପାଇଲା ମାତ୍ରେ ସ୍ତ୍ରୀ ଆପେ ଆପେ ମରିଯିବ ? ସେଥିପାଇଁ ମୁଁ ତାଙ୍କୁ ମିଛରେ କହିଲି "ମୁଁ ଏଇମାତ୍ର ସମ୍ବାଦ ପାଇଲି ଜୟଦେବ ଚାଲିଗଲେ" । ତା'ପରେ "ଟିକିଏ ରୁହ ସ୍ୱାମୀ" କହି ସେ ତଳେ ପଡ଼ିଗଲେ । ସଙ୍ଗେ ସଙ୍ଗେ ତାଙ୍କର ଚେତା ପାଇଁ ସମସ୍ତେ ଲାଗି ପଡ଼ିଲୁ ।

ମହାରାଜ କହିଲେ – ଓଃ ତାହାହେଲେ ତୁମେ ହେଉଛ ପଦ୍ମାବତୀଙ୍କ ମୃତ୍ୟୁର କାରଣ । ମୁଁ ଦେଶର ରାଜା । ମୋର ଇଷ୍ଟ ମହାପ୍ରଭୁ ଜଗନ୍ନାଥ । ତାଙ୍କର ଜଣେ ଭକ୍ତକୁ ମିଛ କଥା କହି ମାରିଦେବା ତୁମର ଗୁରୁତର ଅପରାଧ ରାଣୀ ! ସେଥିପାଇଁ ତୁମକୁ ରାଜଦଣ୍ଡ ଭୋଗ କରିବାକୁ ହେବ । ମୁଁ ମୋର ପତ୍ନୀ ବୋଲି କେବେ ଏ ଅପରାଧର କ୍ଷମା ଦେଇ ପାରିବି ନାହିଁ ।

ଜୟଦେବ ମହାରାଜଙ୍କ କଥା ଶୁଣିବାକୁ ପାଇଲେ । ପ୍ରକୃତ କ'ଣ ହୋଇଛି ତାହା ମଧ୍ୟ ସେ ମନଯୋଗ ଦେଇ ଶୁଣିଲେ । ସମସ୍ତ ଶୁଣି ସେ କହିଲେ, ମହାରାଜ, ଏହା ରାଣୀଙ୍କର ମୋଟେ ଦୋଷ ନୁହେଁ । କୌତୁକରେ କେତେ କ'ଣ କୁହାଯାଏ । ତେଣୁ ମହାରାଣୀଙ୍କ ଉପରେ ଆପଣ ବିରକ୍ତ ହେବାର କିଛି ନାହିଁ ।

ତୁମେ ଜଣେ ମହତ୍ ଲୋକ କବିରାଜ ଜୟଦେବ । ସେଥିପାଇଁ ତୁମେ ଏହିଭଳି କହୁଛ । ମୁଁ କାହାରି କିଛି କଥା ଶୁଣିବି ନାହିଁ । ଯାହାପାଇଁ ଜଣେ ନିରପରାଧିନୀର ମୃତ୍ୟୁ ହୋଇଛି ତାଙ୍କୁ ପ୍ରାଣଦଣ୍ଡ ଦେବାର କଥା । ମାତ୍ର ସେ ଜଣେ ନାରୀ ହୋଇଥିବାରୁ ତାଙ୍କୁ ପ୍ରାଣଦଣ୍ଡ ନଦେଇ ମୋ ରାଜ୍ୟରୁ ନିର୍ବାସିତା କରୁଛି । ରାଣୀ ଏହି ମୁହୂର୍ତ୍ତରେ ଏ ରାଜ୍ୟ ଛାଡ଼ି ଚାଲିଯାନ୍ତୁ ।

ରାଣୀ ସଙ୍ଗେ ସଙ୍ଗେ ପ୍ରସ୍ତୁତ ହେଲେ ମହାରାଜଙ୍କ ଆଦେଶ ପାଳନ କରିବାକୁ । ରାଣୀହଂସପୁରରେ ଆହୁରି ଅଧିକ ବିଷାଦର ଛାୟା ଖେଳିଗଲା । ସଖୀ, ଦାସୀମାନଙ୍କ ଆଖିରେ ଅଶ୍ରୁ ଭରିଗଲା । କାଳେ ରାଜା ଅଧିକ ବିରକ୍ତ ହେବେ ସେଥିପାଇଁ ନିରବରେ ସେମାନେ ଆଖି ପୋଛିବାକୁ ଲାଗିଲେ ।

ଜୟଦେବ ହାତଯୋଡ଼ି କହିଲେ, ମହାରାଜ ! ଏହିଭଳି ପରିସ୍ଥିତିରେ ଆପଣ ଅଧିକ ବିଷାଦଗ୍ରସ୍ତ କାହିଁକି କରନ୍ତୁ ନାହିଁ । ମୋ ପଦ୍ମା ମରିନାହିଁ, ସେ ଜୀବିତା । ଆପଣ ଅଧୈର୍ଯ୍ୟ ନହୋଇ ଟିକିଏ ଅପେକ୍ଷା କରନ୍ତୁ । ସମସ୍ତେ ଏକ ମନରେ ଧ୍ୟାନ କରନ୍ତୁ ମହାପ୍ରଭୁଙ୍କୁ । ମୁଁ ବୋଲୁଛି ତାଙ୍କ ଭଜନ । ମୋର ବିଶ୍ୱାସ ଭଜନ ବୋଲା ସରିବା ମାତ୍ରେ ନିଦରୁ ଉଠିଲା ପରି ମୋ ପତ୍ନୀ ପଦ୍ମା ଉଠି ପଡ଼ିବ ।

ବିସ୍ମିତ ହେଲେ ମହାରାଜ ଓ ଅନ୍ୟମାନେ । ସେମାନେ ଭାବିଲେ ପଥିହରା ହୋଇ ଜୟଦେବ ପାଗଳ ହୋଇଗଲେଣି । ତା' ନହେଲେ, ସେ ଏଭଳି କି ଭଜନ ବୋଲିବେ ଯେ ମଲା ମଣିଷ ବଞ୍ଚି ଉଠିବ ? ତାହା ହେଲେ ତ ମହାପ୍ରଭୁଙ୍କ ଭଜନ ବୋଲି ସମସ୍ତେ ମଲା ମଣିଷକୁ ବଞ୍ଚାଇ ଦେଇପାରିବେ ?

ସତ ହେଉ ବା ମିଛ ହେଉ ସମସ୍ତେ ନୀରବ ହୋଇଗଲେ । ହାତ ଯୋଡ଼ି ମଧ୍ୟ ବସିଗଲେ ପ୍ରତ୍ୟେକ । ତା'ପରେ ଜୟଦେବ ବୋଲିଲେ, ତାଙ୍କରି ରଚିତ ଗୀତଗୋବିନ୍ଦର ସେହି ଦଶମ ସର୍ଗ । ଯେଉଁ ସର୍ଗର ସପ୍ତମ ଶ୍ଳୋକକୁ ଜୟଦେବଙ୍କ ରୂପରେ ନିଜେ ମହାପ୍ରଭୁ ଆସି ରଚନା କରିଦେଇ ଯାଇଥିଲେ ।

ପ୍ରିୟେ ଚାରୁଶୀଳେ, ମୁଞ୍ଚ ମୟି ମାନମନିଦାନମ୍ — ହେ ପ୍ରିୟେ ଚାରୁଶୀଳେ ! ସ୍ୱଭାବରେ ତୁମେ ସୁନ୍ଦର — ତା'ର ଉପମା ଦେବାକୁ କିଛି ନାହିଁ । ତୁମେ ଏବେ ମୋ ପାଇଁ ଅକାରଣେ ଅଦୋଷେ ମାନ କରିଛ କାହିଁକି ? ଏ ମାନ ଛାଡ଼ ସଖୀ ।

ସୁନ୍ଦର କଣ୍ଠରେ ଜୟଦେବ ବୋଲୁଥାନ୍ତି ମହାପ୍ରଭୁଙ୍କର ଅତି ପ୍ରିୟ ସେହି ଗୀତଗୋବିନ୍ଦ ଶ୍ଳୋକ ପରେ ଶ୍ଳୋକ ବୋଲି ବୋଲି ଆସି ପହଞ୍ଚିଲେ ମହାପ୍ରଭୁଙ୍କର ସ୍ୱଲେଖା ଲିଖିତ ସେହି 'ସ୍ମରଗରଳଖଣ୍ଡନଂ ମମ ଶିରସି ମଣ୍ଡନଂ ଦେହି ପଦ ପଲ୍ଲବ ମୁଦାରମ୍' ପାଖରେ ।

ହେ ପ୍ରିୟେ ! ତୁମ ପଦ ପଲ୍ଲବ ହେଉଛି ମୋ ଦେହି । ହେ ରାଧେ ! ତୁମର ସେ ପଦ ମୋତେ ଅଳତା ଲଗାଇବାକୁ ବଢ଼ାଇ ଦିଅ । ତୁମର ସେହି ପାଦ ହେଉଛି ସ୍ମର ବା କନ୍ଦର୍ପ — କାମ ତାହାର ଗରଳ — ସେହି ଗରଳକୁ ଖଣ୍ଡନ କରିବ । ସେହି ପାଦର ଶିର ଯେଉଁ ଅଙ୍ଗୁଳିଗୁଡ଼ିକ — ଯହିଁରେ ମଣିମୟ ମୁଦ୍ରିକା ଓ ନୂପୁରାଦି ମଣ୍ଡିତ; ସେହି ପାଦ ପଲ୍ଲବ ଆଣି ମୋ ଶିରରେ ରଖ । ମୋ ହୃଦୟରେ କଦନ ଭୟଙ୍କର ଦାରୁଣ ମଦନାଗ୍ନି ଜଳୁଛି । ସେ ଅଗ୍ନି କାମ ଦେବତାଙ୍କ ସନ୍ତାପ ହରଣ କରନ୍ତୁ ଇତ୍ୟାଦି ।

ନିଥର ହୋଇ ପଡ଼ିଥିବା ପଦ୍ମାଙ୍କ ଦେହରେ ସାମାନ୍ୟ କମ୍ପନ ଦେଖାଦେଲା । ମହାରାଜ ବଡ଼ ପାଟିରେ କହି ଉଠିଲେ ଜଗନ୍ନାଥଙ୍କର ଜୟ ହେଉ । ସଙ୍ଗେ ସଙ୍ଗେ ମହାରାଣୀ, ଦାସ ସଖୀ ଆଦିଙ୍କ କଣ୍ଠରୁ ନିର୍ଗତ ହେଲା ଜଗନ୍ନାଥଙ୍କର ଜୟ ହେଉ ।

ମହାରାଣୀ ଲୋତକ ଭରା କଣ୍ଠରେ କହିଲେ ହେ ମହାପ୍ରଭୁ ଜଗନ୍ନାଥ ଦୁଷ୍ଟ ବିନାଶ ଓ ସନ୍ଥ ପାଳନ ପାଇଁ ତୁମେ ଦଶାବତାର ରୂପ ଧାରଣ କରିଥିଲ । ତୁମେ କୃଷ୍ଣାବତାରରେ ଯେଉଁ ଲୀଳା କରିଥିଲ ତାହାର ବର୍ଣ୍ଣନା ମଣିଷ କରିପାରିବ ନାହିଁ । ତଥାପି ଜୟଦେବ ଗୀତଗୋବିନ୍ଦରେ ଯାହା ଗାଇଛନ୍ତି ପଦ୍ମା ନୃତ୍ୟ ଦ୍ୱାରା ତାହା ତୁମ ଆଗରେ ବାଢ଼ୁଥିଲେ । ତାଙ୍କୁ ତୁମେ ଫେରାଇ ନଦେଲେ ସେ ସେବା କିଏ କରିବ ? ମହାପ୍ରଭୁ ସମସ୍ତ ଦୋଷ ମୋର । ସେଥିପାଇଁ ଯାହା ଦଣ୍ଡ ଦେବାର କଥା ତାହା ମୋତେ ମିଳୁ । ପଦ୍ମା ନିଦରୁ ଉଠିଲା ଭଳି ଉଠି ବସନ୍ତୁ ।

ତାଙ୍କ ପାଟିରୁ କଥା ସରୁ ନସରୁଣୁ ପଦ୍ମାଙ୍କ ଛାତି, ସେତ ଘନ ଘନ କମ୍ପିବାକୁ ଲାଗିଲା । ତା'ପରେ ମୁଦି ହୋଇଥିବା ତାଙ୍କ ଆଖି ଖୋଲିଗଲା । ଜୟଦେବ କହିଲେ, ଉଠ ପଦ୍ମା — ମହାପ୍ରଭୁ ଜଗନ୍ନାଥଙ୍କୁ ପ୍ରଣାମ କର ।

ଅଳସ ଭାଙ୍ଗି ଉଠି ବସିଲେ ପଦ୍ମା । ତା'ପରେ ମହାରାଜଙ୍କ ରାଜ ନବରର କଳିଙ୍ଗ ଦେଶ, ଜାତିର ଦେବତା ଶ୍ରୀଜଗନ୍ନାଥଙ୍କ ଆଗରେ ସାଷ୍ଟାଙ୍ଗ ପ୍ରଣିପାତ କଲେ । ପ୍ରଣାମ କଲେ ରାଜା, ରାଣୀ, ଜୟଦେବ ଏବଂ ଅନ୍ୟମାନେ ।

ସେତେବେଳେ ଶ୍ରୀଜଗନ୍ନାଥଙ୍କ ମୁହଁରୁ ହସ ଝରିପଡୁଥିଲା । ସତେ ଯେପରି ସେ କହୁଥିଲେ ମୋ ଲୀଳା ଦେବତାମାନଙ୍କ ଅଗୋଚର; ତୁମେ କ'ଣ ବୁଝିବ ?

---

*ଘର ନଂ ୬୨, ଟାଇପ୍–୪,*
*ଡେଲ୍ଟା କଲୋନୀ, ଭୁବନେଶ୍ୱର–୧୨ ।*



ଭୁବନେଶ୍ୱର ସଚିବାଳୟଠାରେ ଅନୁଷ୍ଠିତ ହରିଜନ କଲ୍ୟାଣ ଉପଦେଷ୍ଟା ବୋର୍ଡ ବୈଠକରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଉଦ୍‌ବୋଧନ ଦେଉଛନ୍ତି । ମନ୍ତ୍ରୀ ଶ୍ରୀ ଛୋଟରାୟ ମାଝୀ ଓ ଶ୍ରୀ ଘାସିରାମ ମାଝୀ ବୈଠକରେ ଯୋଗଦାନ କରିଛନ୍ତି । (୨୪/୪/୧୯୯୨) ।

# ଓଡ଼ିଆ ଲୋକଗୀତରେ ଶ୍ରୀଜଗନ୍ନାଥ ଓ ରଥଯାତ୍ରା



ଶ୍ରୀ ଜାନକୀ ବଲ୍ଲଭ ମହାନ୍ତି (ଭରଦ୍ୱାଜ)

ଓଡ଼ିଶାର ଜନସାଧାରଣଙ୍କ ମଧ୍ୟରେ ବହୁ ଦେବ ଦେବୀଙ୍କର ପୂଜା ଉପାସନା ପ୍ରଚଳିତ ଥିଲେ ହେଁ ଶ୍ରୀଜଗନ୍ନାଥ ହିଁ ଏ ଭୂମିରେ ସର୍ବାଧିକ ମାନ୍ୟତାପ୍ରାପ୍ତ ଓ ଉପାସିତ ଦେବତା। ସ୍ମରଣାତୀତ କାଳରୁ ଏ ରାଜ୍ୟର ପୁରପଲ୍ଲୀ ସର୍ବତ୍ର ତାଙ୍କର ଉପାସନା ପ୍ରଚଳିତ ହୋଇ ଆସୁଅଛି। କେଉଁଠି ସେ ପତିତପାବନ ବିଗ୍ରହ ରୂପରେ ଅଥବା କେଉଁଠି ବଳଭଦ୍ର, ସୁଭଦ୍ରାଙ୍କ ସହ ତ୍ରିମୂର୍ତ୍ତି ରୂପରେ ପୂଜିତ ହୋଇଥାନ୍ତି। ଆଦିବାସୀ ଉପାସନାର ପରିଧି ମଧ୍ୟରୁ କିପରି ସେ ଆର୍ଯ୍ୟାନ୍ୱିତ ହୋଇଛନ୍ତି ତାହାର ଇତିହାସ ତମସାଚ୍ଛନ୍ନ। ଅନୁମିତ ହୁଏ, ଏକକ ବିଗ୍ରହ ରୂପରେ ହିଁ ସେ ସର୍ବାଦୌ ପୂଜିତ ହେଉଥିଲେ। ପରବର୍ତ୍ତୀ କାଳରେ ସମ୍ମିଳିତ ଭାବେ ବଳଭଦ୍ର, ସୁଭଦ୍ରା ଓ ସୁଦର୍ଶନଙ୍କ ସହ ଚତୁର୍ଦ୍ଧା ମୂର୍ତ୍ତି ରୂପେ ତାହାଙ୍କ ପୂଜା ସମ୍ପ୍ରସାରିତ ହୋଇଅଛି। ପୁରୀ ଶ୍ରୀମନ୍ଦିରରେ ମଧ୍ୟ ସର୍ବାଦୌ ତାଙ୍କର ଏକକ ବିଗ୍ରହ ସ୍ଥାପିତ ହୋଇଥିବା ଅନୁମେୟ। ସେଥିପାଇଁ ପୁରୀର ଶ୍ରୀମନ୍ଦିର ଲୋକ ମୁଖରେ ଜଗନ୍ନାଥଙ୍କ ମନ୍ଦିର ଭାବରେ ଓ ତାହାଙ୍କ ଅଧିଷ୍ଠାନ କ୍ଷେତ୍ର ଜଗନ୍ନାଥ ଧାମ ବା ପୁରୁଷୋତ୍ତମ ପୁରୀ ନାମରେ ହିଁ ଚିହ୍ନିତ ତଥା କଥିତ ହୋଇ ଆସୁଅଛି। ଏହି କ୍ଷେତ୍ର ଓ କ୍ଷେତ୍ରାଧିପତିଙ୍କ ପ୍ରଭାବ ଜନ ଜୀବନରେ ଅପ୍ରମେୟ। ଶ୍ରୀଜଗନ୍ନାଥ ଓ ତାହାଙ୍କ ସର୍ବଶ୍ରେଷ୍ଠ ଉତ୍ସବ ରଥଯାତ୍ରା ଓଡ଼ିଶାର ଜନ ଜୀବନକୁ କିପରି ବିପୁଳ ପରିମାଣରେ ପ୍ରଭାବିତ କରିଛି ତାହା ଓଡ଼ିଆ ଲୋକ ଗୀତରୁ ବେଶ୍ ଜାଣିହୁଏ। ଏଠାରେ ସେ ସମ୍ପର୍କରେ କେତେକ ସୂଚନା ସହୃଦୟଙ୍କ ଦେବା ଲାଗି ପ୍ରୟାସ କରାଯାଇଅଛି।

ଲୋକ ବିଶ୍ୱାସରେ ଶ୍ରୀଜଗନ୍ନାଥ ହେଉଛନ୍ତି ଆଦିପୁରୁଷ, ପୂର୍ଣ୍ଣବ୍ରହ୍ମ। ରାମ ଓ କୃଷ୍ଣ ହେଉଛନ୍ତି ତାଙ୍କର ଅଂଶାବତାର। ଏହି ଧାରଣା ଲୋକ ମାନସରେ ବଦ୍ଧମୂଳ। ଏକ କୃଷକ ଗୀତିକାରେ ତାହା ଏହିପରି ଅଭିବ୍ୟକ୍ତି ଲାଭ କରିଛି :—

'ଜୟ ଜୟ ଜଗନ୍ନାଥ ଜଗତ କରତା  
କଂସକୁ ମାରିଣ ରଖିଲ ପିତାମାତା।  
ରକ୍ଷି ନପାରିଲ ନିଜ ଭାରିଜା  
ରାବଣ ନେଲା ସୀତା ହେ।'

ଲୋକ କବି ଅତ୍ୟନ୍ତ ସହଜ ଭାବରେ ଏହି ଜଗନ୍ନାଥଙ୍କ ଅପୂର୍ବ ରୂପକୁ ଚୂଳ (ଶିଖା)ରୁ ଚରଣ ପର୍ଯ୍ୟନ୍ତ ବର୍ଣ୍ଣନା କରି ତାହାଙ୍କ ବନ୍ଦନା କରିଛନ୍ତି :—

'ପ୍ରଭୁ କିସ ବାହୁନିବି ଚୂଳକୁ  
ଚୂଳ ସୁନ୍ଦର ଦିଶଇ ଦୂରକୁ।  
ପ୍ରଭୁ କିସ ବାହୁନିବି ଆଖିକି  
ଆଖି ଦେଖିଲେ ପାତକ ଥାଏ କି ?

× × × ×

ପ୍ରଭୁ କିସ ବାହୁନିବି ଅଣ୍ଟାକୁ  
ଅଣ୍ଟା ସୁନ୍ଦର କମର ପଟାକୁ।  
ପ୍ରଭୁ କିସ ବାହୁନିବି ଚରଣ  
ତିନିପୁର ଲୋକଯାକ କାରଣ।'

ଶ୍ରୀଜଗନ୍ନାଥଙ୍କ ବିଗ୍ରହ ମହାଲିମ୍ବ ବା ଚନ୍ଦନ କାଠରେ ନିର୍ମାଣ କରାଯାଇ ରତ୍ନ ସିଂହାସନ ଉପରେ ଚକା ବଇଠି ଉପରେ ସ୍ଥାପନ କରାଯାଇଥାଏ। ବାଙ୍କି ମୁହାଣରୁ ଆନୀତ ଏହି କାଷ୍ଠରେ ଶ୍ରୀବିଗ୍ରହ ନିର୍ମିତ ହୋଇଥିବା ବିଷୟ କିମ୍ବଦନ୍ତୀ ରୂପେ ଏ ଦେଶରେ ଚଳିଆସୁଅଛି। ଲୋକ ଗୀତରେ ତାହା ଏହିପରି ଅଭିବ୍ୟକ୍ତ :—

'ଚନ୍ଦନ ମହାମେରୁରେ ବଢ଼ାଇ କରେ କାମ  
ରତ୍ନ ସିଂହାସନ ପରେ ଚକାରେ ବଇଠି  
ବିଚିତ୍ର ଢାଳି କାମରେ।  
ଏ....ହାଣିଲି ମହାଲିମ୍ବ ଭସାଇ ଦେଲି ଜଳେ  
ସେ ଯାଇ ଲାଗିଲା ବାଙ୍କି ମୁହାଣରେ  
ଦେବତା ବୋଲି ପୂଜା ଯେ ପାଇଲା  
ବଡ଼ ଦେଉଳରେ ହୋ।  
ଚନ୍ଦନ ତିନି ଦାରୁ ଅଚଳ ମହାମେରୁ  
ଟାଣି ନପାରିଲେ କଳା ଯେ ପିଠିଆ  
ବାଙ୍କିର ମୁହାଣରୁ ହୋ।

ଇନ୍ଦ୍ରଦ୍ୟୁମ୍ନ ରାଜା ଗଡ଼ରୁ ବାହାର
ଶିରେ ଘେନିଛନ୍ତି ପାଟ ଯେ ମୁରୁଜା
ବାଙ୍କି ଯେ ମୁହାଣର ।
ବାଙ୍କି ଯେ ମୁହାଣରେ ଲଗାଇଲେ ମାଥ
ଜଗତ କରତା ତୋ ପୟରେ ପୂଜିବି
ଜଗନ୍ନାଥ ରେ' ।

ଲୋକ ଗୀତମାନଙ୍କରେ ରଥଯାତ୍ରାର ବହୁଳ ଉଲ୍ଲେଖ ମଧ୍ୟ ଦେଖିବାକୁ ମିଳେ । ଆଷାଢ଼ ମାସରେ ଏହି ଯାତ୍ରା ଅନୁଷ୍ଠିତ ହେବା ପୂର୍ବରୁ ସ୍ନାନ ଯାତ୍ରାରୁ ହିଁ ତାହାର ସୂତ୍ରପାତ ହୋଇଥାଏ । ସ୍ନାନ ଯାତ୍ରା ପରେ ବିଗ୍ରହ ତ୍ରୟ ପନ୍ଦର ଦିନ ପୀଡ଼ିତ ହୋଇ ଅଣସର ଗୃହରେ ଅବସ୍ଥାନ କରନ୍ତି । କୃଷକ ଗୀତିକାରେ ତାହା ଏହିପରି ବର୍ଣ୍ଣିତ :—

ଏ....ଜଗନ୍ନାଥ ପ୍ରଭୁଙ୍କ ସ୍ନାନ ମଣ୍ଡପରେ
ଲକ୍ଷେ ଯୋଡ଼ା ପାଣି ଯେ ନିଗୁଡ଼ନ୍ତି ଶିରେ
ମଥା ଗୁରୁ ହେଲା ତ ହୋଇଲା ମହାଜର
ଭଉଣୀ ସଙ୍ଗେ ଭାଇ ମୋ ପଶିଲେ ଅଣସର ହୋ' ।

ଅକ୍ଷୟ ତୃତୀୟାଠାରୁ ତିନିଗୋଟି ରଥର ନିର୍ମାଣ କାର୍ଯ୍ୟ ଆରମ୍ଭ ହୋଇଥାଏ । ତାହା ଶେଷ ହେଲା ପରେ ରଥ ତିନିଗୋଟିକୁ ସୁନ୍ଦର ଭାବେ ମଣ୍ଡିତ କରାଯାଏ । ଏଇ ତିନି ରଥରେ ଠାକୁରଙ୍କୁ ବସାଇ ଗୁଣ୍ଡିଚା ଘରକୁ ନିଆଯାଇଥାଏ । ପହଣ୍ଡି ପରେ ଶ୍ରୀଜଗନ୍ନାଥ ପ୍ରଭୁଙ୍କୁ ରଥରେ ଉପବେଶନ କରାଇବା ସମୟରେ ଜନସାଧାରଣଙ୍କ ମଧ୍ୟରେ ଖେଳିଯାଏ ଅପୂର୍ବ ଉଲ୍ଲାସ । ହରିବୋଲ, ହୁଳହୁଳି ଧ୍ୱନିରେ କମ୍ପି ଉଠେ ଚତୁର୍ଦ୍ଦିଗ । ଏହା ପ୍ରକାଶ ପାଇଛି ଏକ ଦୋଳି ଗୀତରେ :—

'ଆଷାଢ଼ ମାସରେ ଅଷାଢ଼ିଆ କୋଳି
ରଥେ ବିଜେ କଲେ, କଳି ବାମନ
ମଞ୍ଚରେ ହୁଳହୁଳି' ।

କୃଷକ ଗୀତିକାରେ ମଧ୍ୟ ସଂକ୍ଷେପରେ ଏହା ଏହିପରି ବର୍ଣ୍ଣିତ ହୋଇଛି :—

'ଏ....ଆଷାଢ଼ ମାସରେ ସଖୀ ମେଘ ଘଡ଼ଘଡ଼ି
ବାହାରିଲେ ପ୍ରଭୁ ଯେ ନନ୍ଦିଘୋଷ ଚଢ଼ି
ନନ୍ଦିଘୋଷ ରଥେ ଯେ ନନ୍ଦେଇ ନନ୍ଦନ
ତାଳଧ୍ୱଜ ରଥେ ବିଜେ ଭାଇତ ବଳରାମ
ଦେବୀ ରଥେ ଚଢ଼ିଣ ସୁଭଦ୍ରା.....ଗୁଣ୍ଡିଚା
ଗମନ ହୋ' ।
ଆଷାଢ଼ ମାସରେ ନିଳମ ନଈ ନଈ
ନନ୍ଦିଘୋଷ ରଥେ ପାଟମଣ୍ଡଣି.....ଦିଶଇ ନୀଳମଣି ।
× × × ×
ତା' ଗୁଲି ନବଘନଙ୍କୁ ତ ଗୁଣ୍ଡିଚା ଘର କୋଣେ
ଷୋଳ ଚକ ଗଡ଼ି ଦେଉଛି କାଳିଆ ପଦ ଘାତେ ।
× × × ×
ପଞ୍ଚଶ ବ୍ରାହ୍ମଣ ଯେ ଭୋଗ ବାଢ଼ିବାକୁ
ପହଣ୍ଡିକେ ପାଟ ମୁରୁଜା କାଳିଆ ବସିବାକୁ' ।

ଦୋଳି ଗୀତରେ ମଧ୍ୟ ଏହାର ଉଲ୍ଲେଖ ଏହିପରି :—

'ମେଘ କଲା ଘଡ଼ଘଡ଼ି
ଜଗନ୍ନାଥେ ଗଲେ ଗୁଣ୍ଡିଚାବାଡ଼ି
ଷୋଳ ଚକ ଗଲା ଗଡ଼ି' ।

ଶ୍ରୀଜଗନ୍ନାଥଙ୍କ ରଥ ଜନମାନସକୁ କୌତୁହଳାକ୍ରାନ୍ତ କରିଥିବାରୁ କେଉଁ ଅଜ୍ଞାତ ଲୋକ କବି ଏହାକୁ ନେଇ ଏହିପରି ଏକ ଢଗ ଢମାଳି ବା ପ୍ରହେଳିକା ରଚନା କରିଅଛନ୍ତି ।

'ସୁନ୍ଦର ଗଠନ ତାର କୁଣ୍ଡଳ ଚରଣ
ଯଶୋଦା ଦେବକୀ ନୁହେଁ ଗର୍ଭେ ନାରାୟଣ ।
ଦେଖିବାକୁ ଯାନ୍ତି ତାକୁ ପରମ ଆଦରେ
କିସ ତାର ନାମ ଦିଅ ଉତ୍ତର ସତ୍ୱରେ ।'

ଅତୀତରେ ବଡ଼ଶଙ୍ଖଠାରେ ଏକ ନଦୀର ଧାରା ସମୁଦ୍ର ଅଭିମୁଖେ ପ୍ରବାହିତ ହେଉଥିଲା । ଏଣୁ ରଥ ତ୍ରୟ ସେଠାରେ ପହଞ୍ଚିବା ପରେ ତ୍ରିମୂର୍ତ୍ତିଙ୍କୁ ଗୁପରେ ବସାଇ ନଦୀର ଅପର ପାର୍ଶ୍ୱକୁ ନିଆଯାଉଥିଲା । ସେଠାରୁ ଅନ୍ୟ ତିନିଗୋଟି ରଥରେ ସେମାନଙ୍କୁ ବସାଇ ଗୁଣ୍ଡିଚା ମନ୍ଦିରକୁ ଲୋକେ ନେଉଥିଲେ । ପ୍ରତିକୂଳ ପରିସ୍ଥିତିରେ ବଡ଼ଦାଣ୍ଡରେ ତ୍ରିମୂର୍ତ୍ତି ରଥ ଉପରେ ରହିବାକୁ ବାଧ୍ୟ ହେଉଥିଲେ । ବିଦ୍ୟୁତ୍ ଆଲୋକ ବିହୀନ ଯୁଗରେ ମଶାଲ ପ୍ରଜ୍ଜ୍ୱଳନ ହିଁ ଥିଲା ଏକମାତ୍ର ସମ୍ବଳ । ଏହି ସମୟରେ ରଥର ବର୍ଣ୍ଣନା ଲୋକ ଗୀତରୁ ଏହିପରି ମିଳିଥାଏ:—

'ଆରେ ....ବେଳଇ ବୁଡ଼ିଲା ଅନ୍ଧାର ହୁଇଘଡ଼ି
ମାଣିକର ବତି ଜଳଇ ଧାଡ଼ି ଧାଡ଼ି
ବଡ଼ଦାଣ୍ଡେ ଜଗାରେ କଳିଆ
ରହିଲେ ତମ୍ବୁ ଟାଣି ।'

ଓଡ଼ିଶାର ସାମାଜିକ ଜୀବନରେ ଏହି ଯାତ୍ରାର ଗୁରୁତ୍ୱ ସ୍ୱଳ୍ପ ନୁହେଁ । ଏହି ଅବକାଶରେ ପ୍ରିୟ ବ୍ୟକ୍ତିଙ୍କ ସହ ମିଳିତ ହେବାର ସୁଯୋଗ ମିଳିଥାଏ । ଏଣୁ ଏହି ଯାତ୍ରା ଦେଖିବାକୁ ଆଗ୍ରହ ଏକ ଦୋଳି ଗୀତରେ ଏହିପରି ପ୍ରକାଶିତ :—

'ଦୀପ ଗୋଟି ମୁହିଁ ଜାଳି ରଖିଲି
ରଖିଲି ପିତଳ ରୁଖା
ପୁରୀ ଯାତରାକୁ ସତେ କି ଯିବି
ପୁଣି ସାଙ୍ଗ ହେବ ଦେଖା ।'

ଶ୍ରୀକ୍ଷେତ୍ରର ଭୂମି ଶ୍ରୀଜଗନ୍ନାଥଙ୍କ ଅଧିଷ୍ଠାନ କ୍ଷେତ୍ର ହୋଇଥିବା ଯୋଗୁଁ ଜନସାଧାରଣଙ୍କ ପକ୍ଷେ ଏକାନ୍ତ ପ୍ରିୟ ଓ ପବିତ୍ର । ଯାନ ବାହାନରେ ବସି ଦେବ ଦର୍ଶନକୁ ଗଲେ ପୁଣ୍ୟ ଲାଭ ହୁଏ ନାହିଁ । ପଦ ଯାତ୍ରାରେ ହିଁ ଏଠାକୁ ଯିବା ଶ୍ରେୟ । ଆଜି ବଡ଼ଶଙ୍ଖଠାରେ ଉକ୍ତଟଣ ନଈ ନାହିଁ, ନାହିଁ ବାଲୁକାର ସମ୍ଭାର । ମାତ୍ର ଅତୀତରେ ଭକ୍ତମାନେ ସେଇ ପବିତ୍ର ଶରଧାବାଲିରେ ଗୁଳିବାକୁ ଥିଲେ ଅଭିଳାଷୀ । ଏକ ଦୋଳି ଗୀତରୁ ମିଳେ ଏହାର ସଙ୍କେତ :—

'ପାଦ ଯେ ବୋଲଇରେ ମନ ସହସ୍ର ବଚନ
ମହାପ୍ରଭୁଙ୍କ ଶରଧା ବାଲିରେ ଗୁଳି ଯିବାକୁ ମନ ।'

ଓଡ଼ିଶା ମୋଗଲ ଶାସନାଧୀନ ଥିବା ସମୟରେ ଏଇ ସୁପ୍ରସିଦ୍ଧ ଯାତ୍ରା କେତେବେଳେ ପାଇଁ ବନ୍ଦ ହୋଇଯାଇଥିଲା । ଏକ କୃଷକ ଗୀତରୁ ଏହାର ସୂଚନା ମିଳିଥାଏ :—

'ଓଡ଼ିଶାର ଜଗନ୍ନାଥ ଓଡ଼ିଶାରୁ ଗଲେ
ବଡ଼ଦାଣ୍ଡ ମାଡ଼ି ଯେ ମୋଗଲ ରହିଲେ ।
ଓଡ଼ିଶାର ଭିତରେ ଯେ ମୁଗୁନି ପଥର
ନେଇ କଷୁଡ଼ିଲେ ଗୋ କମଳା, ବିମଳା ଉପର ହୋ ।'

ଅତୀତରେ ବଡ଼ଦାଣ୍ଡ ଆଜିକାଲିକା ଭଳି ସୌଧ ମଣ୍ଡିତ ନଥିଲା । ଏହାର ଦୁଇ ପାର୍ଶ୍ୱରେ ଥିଲା ବନ, ଉପବନ ଓ ସ୍ଥାନେ ସ୍ଥାନେ କିଆର ବାଡ଼ । ଦୋଳି ଗୀତରୁ ଏହାର ସୂଚନା ମିଳିଥାଏ :—

'ରଥ ମାଡ଼ିଗଲା କିଆକୁ
ଜଗନ୍ନାଥଙ୍କର ଖଣ୍ଡିଆ ହାତ
ଏହା ମୁଁ କହିବି କାହାକୁ ?'

ଗୁଣ୍ଡିଚା ଘରେ ନଅଦିନ ରହିବା ପରେ ସେଠାରୁ ବିଗ୍ରହଙ୍କୁ ରଥରେ ବସାଇ ଶ୍ରୀମନ୍ଦିରକୁ ପ୍ରତ୍ୟାବର୍ତ୍ତନ କରାଯାଏ । ଏହାର ବର୍ଣ୍ଣନା ଲୋକ ଗୀତରୁ ଏହିପରି ମିଳିଥାଏ :—

(୧) ତାଳେ ତାଳେ ଗଲା ହନୁ
ତାଳ ଭଙ୍ଗୀ ଗୀତ ନଗଲା ମନୁ
ବାହୁଡ଼ା ଯାତରା ଦିନୁ ।'

(୨) ଦେଖ ଝୁରୁ ଝୁରୁ ଲାଗିଲା ଅନ୍ଧାରି
ମାଣିକର ବତି ଜଳଇ ଧାଡ଼ି ଧାଡ଼ି
ବଡ଼ଦାଣ୍ଡେ ଘଣ୍ଟ, ମାଦଳ......ବାହୁଡ଼ା ବିଜେ ହରି ।
ବାହୁଡ଼ା ବିଜେ ହରି ଦେଇଗଲେ ଦୁଃଖ
ଅନାଈ ହେଲେ ଗୋପ ତରୁଣୀ....ନଗ୍ରହି ଶ୍ରୀମୁଖ ।'

ବହୁ ଜନପ୍ରିୟ ଏହି ରଥଯାତ୍ରାକୁ ବିଭିନ୍ନ ଦୃଷ୍ଟାନ୍ତ ଓ ଉପମା ରୂପେ ମଧ୍ୟ ଲୋକ ଗୀତରେ ବ୍ୟବହାର କରାଯାଇ ଅଛି । ଅଜଣା ସ୍ଥାନକୁ ଯାତ୍ରା ଓ ଅଜ୍ଞାତ ବ୍ୟକ୍ତି ସହ ବିବାହ ବନ୍ଧନକୁ ଯମ ଦଉଡ଼ି ସହ ତୁଳନା କରି ଝିଅଟି କାନ୍ଦିକରି କହିଛି :—

'ରଥରେ ଲାଗିଲା ରଥ ଦଉଡ଼ି
ମୋଠାରେ ଲାଗିଲା ଯମ ଦଉଡ଼ି ହେ ବାପା
ରଥ ଦଉଡ଼ି ତ ବାହୁଡ଼ା ଯାଏ
ଯମ ଦଉଡ଼ି ତ ମରିବା ଯାଏ ହେ ବାପା ।'

ପୂର୍ବେ ଜନସାଧାରଣଙ୍କ ମଧ୍ୟରୁ କେହି ଦେହର ବିଭିନ୍ନ ଅଙ୍ଗପ୍ରତ୍ୟଙ୍ଗରେ ଚିତା କୁଟାଉଥିଲେ । କେହି କେହି ଦେହରେ କୁଟାଉଥିଲେ ଜଗନ୍ନାଥଙ୍କର ପ୍ରତିକୃତି । ଚିତା କୁଟା ଗୀତରେ ତାହାର ଉଲ୍ଲେଖ ଏହିପରି :—

'ବଡ଼ ଦେଉଳ ଠାକୁର
ଲେଖିବି ତୋର ବାହୁର
ମଥାପରେ ତାରା ଚନ୍ଦ୍ରମା ଖଞ୍ଜିବି
ହସ୍ତରେ ନବଗୁଞ୍ଜର ଗୋ ।'

ଏହିପରି ଭାବେ ଲୋକ ଗୀତମାନଙ୍କରୁ ରଥଯାତ୍ରାର ମୋଟାମୋଟି ବିବରଣୀ ମିଳିଥାଏ । ଓଡ଼ିଶାର ଜନଜୀବନକୁ ଏହି ଯାତ୍ରା କିପରି ବିପୁଳ ପରିମାଣରେ ପ୍ରଭାବିତ କରିଥିଲା ତାହା ଏଥିରୁ ସହଜରେ ଅନୁମେୟ । ନିଁ ଦିଆ, କାନ୍ଦଣା, ଦୋଳି ଗୀତ, କୃଷକ ଗୀତ, ଚିତାକୁଟା ଗୀତ, ସ୍ତୁତି ଗୀତ ପ୍ରଭୃତି ଓଡ଼ିଆ ଲୋକ ଗୀତର ବିଭିନ୍ନ ବିଭାବ ଏହିପରି ଶ୍ରୀଜଗନ୍ନାଥ ଓ ତାହାଙ୍କ ରଥଯାତ୍ରାର ବର୍ଣ୍ଣନାରେ ସୁସମୃଦ୍ଧ ।

---

*'ଗନ୍ଧିକା'*
*ଜୟଦେବ ନଗର, ଭୁବନେଶ୍ୱର-୨ ।*



ଭୁବନେଶ୍ୱରଠାରେ କୃଷି ମନ୍ତ୍ରୀ ଶ୍ରୀ ଜଗନ୍ନାଥ ମଲ୍ଲିକ 'କଳିଙ୍ଗ ମେଲ୍'ର ୫ମ ବାର୍ଷିକୀ ଓ ଜାତୀୟ ସଂହତି ଉପରେ ଏକ ଆଲୋଚନା ଚକ୍ର ଉଦ୍‌ଘାଟନ କରୁଛନ୍ତି । (୧୬/୫/୧୯୯୨) ।



# ସର୍ବଧର୍ମ ସମନ୍ୱୟ

ତପସ୍ୱିନୀ କର

ଆଦିମ ମଣିଷ ଲଙ୍ଗଳା ହୋଇ ଯେତେବେଳେ ବଣ, ଜଙ୍ଗଲରେ ବୁଲୁଥିଲା, ନିଆଁର ବ୍ୟବହାର ଜାଣି ନଥିଲା ସେତେବେଳେ ତା'ର ଧର୍ମ, ସମାଜ, ଜାତି କିଛି ନଥିଲା । କାଳକ୍ରମେ ସେ ଦେଖିଲା ପ୍ରକୃତିରେ ବିଭିନ୍ନ ପରିବର୍ତ୍ତନମାନ ଘଟୁଛି । ବର୍ଷା, ବିଜୁଳି, ଘଡ଼ଘଡ଼ି ପ୍ରତିଟି ଜିନିଷ ତା ପାଇଁ ଆଶ୍ଚର୍ଯ୍ୟର ବିଷୟବସ୍ତୁ ହୋଇ ଦେଖାଦେଲା । ପ୍ରକୃତିକୁ ସେ କରାୟତ୍ତ କରି ପାରିଲା ନାହିଁ, ତେଣୁ ପ୍ରକୃତି ବିଶେଷ ଶକ୍ତିମାନ ବୋଲି ସେ ମନେ ମନେ ବିଶ୍ୱାସ କଲା । ବିଚିତ୍ର ସଂସାର ଦେଖି ଦିନେ ହୁଏତ ସେ ଚିନ୍ତାକଲା କୌଣସି ଅଦୃଶ୍ୟ ଓ ସର୍ବଶକ୍ତିମାନ ଶକ୍ତି ଦ୍ୱାରା ଏସବୁ କାର୍ଯ୍ୟ ସଂଘଟିତ ହେଉଛି । ଅଲୌକିକ ଶକ୍ତିର କ୍ଷମତା ଓ ଦକ୍ଷତା ସମ୍ପର୍କରେ ବିଶ୍ୱାସ କରି ନିଜ ଚେତନା ଦ୍ୱାରା ବିଭିନ୍ନ ଜ୍ଞାନ ଓ ଯୁକ୍ତି ଦ୍ୱାରା ସ୍ପଷ୍ଟ କଳ୍ପନାକୁ ବିଶ୍ୱାସ ଯୋଗ୍ୟ କରାଇ ଯେଉଁ ରୂପ ଦେଲା ସେହି ରୂପରୁ ସୃଷ୍ଟି ହେଲା ଧର୍ମଧାରା ।

'ଧର୍ମଧାରା' ନଦୀର ଧାରା ପରି ଦୁର୍ଗମ ପଥ ଅତିକ୍ରମ କରି ଚଳଚଞ୍ଚଳ ହୋଇ ବହିଆସୁଛି ପୁରାଣ ଯୁଗରୁ । ସେହି ଧାରାରେ ବହୁ ଉପନଦୀର ଧାରା ମିଶି 'ଧର୍ମଧାରା'ର ସ୍ରୋତକୁ ଆହୁରି ବେଗଗାମୀ କରିଛି । କିନ୍ତୁ ସେହି ଉପଧାରା ମାନଙ୍କର ଲକ୍ଷ୍ୟ ହୋଇଛି ମହାସ୍ରୋତରେ ନିଜକୁ ହଜାଇ ଆନନ୍ଦ ପାଇବା । ସେହି ମହାସ୍ରୋତ ହେଉଛି 'ଜଗନ୍ନାଥ ଧର୍ମ' । ଯାହାକି ଆଜି ଉତ୍କଳ ପ୍ରଦେଶ ଭିତରେ ସୀମାବଦ୍ଧ ହୋଇ ରହିନାହିଁ । ଜଗନ୍ନାଥ ଧର୍ମ ଆଜି ବିଶ୍ୱର କୋଣେ ଅନୁକୋଣେ ବିଶ୍ୱଧର୍ମ ଭାବରେ ଖ୍ୟାତ । ଯେଉଁ ପାଶ୍ଚାତ୍ୟ ଲୋକମାନେ ଓଡ଼ିଶା ତଥା ଭାରତକୁ ମଧ୍ୟ ହେୟ ଜ୍ଞାନ କରୁଥିଲେ କଳା ଲୋକ କହି ଘୃଣା କରୁଥିଲେ ସେମାନେ ଆଜି ପାଗଳ ପରି ବଡ଼ ଦାଣ୍ଡରେ ନାଚି ନାଚି ନିଜର ଛିତିକୁ ନିଜେ ଭୁଲିଯାଉଛନ୍ତି । ସେମାନଙ୍କ ମତରେ "Jagannath is the Living God" । ସତରେ ଜଗନ୍ନାଥ ହେଉଛନ୍ତି ଜୀବନ୍ତ ଠାକୁର । ସାଧାରଣ ମଣିଷ ପରି ଜଳଖିଆ ଖାଇବେ, ମଧ୍ୟାହ୍ନ ଭୋଜନ ଓ ରାତ୍ରୀ ଭୋଜନ କରିବେ, ଶୟନ କରିବେ ତାଙ୍କୁ ମଧ୍ୟ ଗରମ ହେବ ସେଥି ପାଇଁ ଚନ୍ଦନ ଲାଗି ହେବ, ଜର ମଧ୍ୟ ହେବ ଏବଂ ସବୁଠାରୁ ବେଶୀ ଆଶ୍ଚର୍ଯ୍ୟ ଲାଗେ ସାଧାରଣ ମଣିଷ ପରି ପାନ ଖାଇବେ ।

ଏ ବିଶ୍ୱରେ ବହୁ ଧର୍ମର ଆବିର୍ଭାବ ଓ ବିଲୟ ଘଟିଛି । ଶୈବ, ଶାକ୍ତ, ବୌଦ୍ଧ, ଜୈନ, ବୈଷ୍ଣବ ସବୁ ଧର୍ମର ସମନ୍ୱୟ ହୋଇଛି ଓଡ଼ିଶାରେ ଶ୍ରୀଜଗନ୍ନାଥ କ୍ଷେତ୍ରରେ ଏବଂ ସର୍ବୋପରି ଶ୍ରୀଜଗନ୍ନାଥଙ୍କ ସତ୍ତାରେ । ସବୁ ଧର୍ମର ମୌଳିକ ତତ୍ତ୍ୱର ସମ୍ମିଶ୍ରଣ ହେଉଛି ଜଗନ୍ନାଥ ଧର୍ମ । ବୌଦ୍ଧ ତନ୍ତ୍ର ଗ୍ରନ୍ଥ 'ଜ୍ଞାନସିଦ୍ଧି'ରେ ଶ୍ରୀଜଗନ୍ନାଥଙ୍କୁ ଜୀନ ବୋଲି କୁହାଯାଇଛି, ଯଥା:—

"ପ୍ରଣିପତ୍ୟ ଜଗନ୍ନାଥଂ ସର୍ବଜୀନ ବରାର୍ଚ୍ଚିତମ୍
ସର୍ବବୁଦ୍ଧମୟଂ ସିଦ୍ଧି ବ୍ୟାପିନଂ ଗଗନୋପମମ୍ ।
ଅତଏବ ଜଗନ୍ନାଥା ବାଲାନାଂ ପ୍ରତିବୋଧନେ
ନିର୍ବାଣଂ ଦର୍ଶୟନ ତ୍ୱେବ ରୂପସ୍ୟ ନିତ୍ୟ ଦର୍ଶୀ କାଃ ।"

ଶ୍ରୀ ଜୟଦେବଙ୍କ "ଗୀତ ଗୋବିନ୍ଦ" ଓ ଅନ୍ୟାନ୍ୟ ବହୁ ଗ୍ରନ୍ଥରେ ବୁଦ୍ଧଙ୍କୁ ବିଷ୍ଣୁଙ୍କର ନବମ ଅବତାର ବୋଲି କୁହାଯାଇଛି । ବୈଷ୍ଣବ ଧର୍ମରେ ଶ୍ରୀଜଗନ୍ନାଥଙ୍କୁ "ନିରାକାର ବିଷ୍ଣୁ" ବୋଲି କୁହାଯାଇଛି । ଏହା ବୌଦ୍ଧ ଧର୍ମର ଶୂନ୍ୟବାଦକୁ ଇଙ୍ଗିତ କରିଥାଏ । "ଶିଶୁବେଦ"ରୁ ଶ୍ରୀଜଗନ୍ନାଥ ଓ ବୌଦ୍ଧ ଧର୍ମର ସମ୍ପର୍କ ସମ୍ପର୍କରେ ବହୁ ସୂଚନା ମିଳିଥାଏ । ଯଥା:—

"ଅହିଂସା ପରମ ଧର୍ମ ବୈରବଧ ବିବର୍ଜିତ
ନୀଳାଚଳ ନିବାସାୟ ବୌଦ୍ଧରୂପୀ ନମୋନମଃ
ନମସ୍ତେ ବୌଦ୍ଧ ଦେବାୟ ଅନନ୍ତଂ ଶିରୋଭୂଷଣମ୍ ..
ଯୋଗମାୟା ସୁଭଦ୍ରା ମଧ୍ୟେ ଶ୍ରୀ ବିଜୟେ............

ଓଡ଼ିଶାର ସୁପ୍ରସିଦ୍ଧ କବି ଜୟଦେବ "ଗୀତ ଗୋବିନ୍ଦ" ରଚନା କରିଥିଲେ । ଶ୍ରୀଜୟଦେବଙ୍କ ଗୀତ ଗୋବିନ୍ଦର "ଜୟ ଜଗଦୀଶ ହରେ" ଉକ୍ତିଟି ଶ୍ରୀଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ରଚିତ । ବୈଷ୍ଣବ ଧର୍ମ ଓ ଦର୍ଶନ ଜଗନ୍ନାଥ ଓ ରାଧା, କୃଷ୍ଣଙ୍କୁ ନେଇ ରଚିତ ଦୀନକୃଷ୍ଣ ଓ ଅଭିମନ୍ୟୁ ସାମନ୍ତସିଂହାର ·ମଧ୍ୟ ରାଧାକୃଷ୍ଣଙ୍କ ବନ୍ଦନା ଗାଇ

...ବନ୍ଦନା କରିଛନ୍ତି । ଜଗନ୍ନାଥଙ୍କୁ ନୀଳାଚଳର ... ବୋଲି ପ୍ରତିପାଦିତ କରିଛନ୍ତି । ଆଦି ଶଙ୍କରାଚାର୍ଯ୍ୟଙ୍କଠାରୁ ...ଙ୍କ ପର୍ଯ୍ୟନ୍ତ ଏବଂ ଦ୍ୱୈତ, ଅଦ୍ୱୈତ ଧର୍ମର ସମନ୍ୱୟ ଘଟିଛି ... ମହାନ ପୀଠରେ । ଶ୍ରୀଜଗନ୍ନାଥ ଧର୍ମ ଓ ଇସଲାମ ଧର୍ମ ...ରେ ସମନ୍ୱୟ ସୃଷ୍ଟି କରାଯାଇପାରିଛି । ଯଥା:—

...ପୀର ସାହେବର ମହିମା ବର୍ଣ୍ଣନ
...ର ପିଆର ଶୁଣ ସର୍ବଜନ ।
xxx xxx xxx
...ନାଥ ରୂପେ ଆମି ଓଡ଼ିଶାତେ ଆର
...ନ୍ଦୁ ମୁସଲମାନ ସର୍ବ କରି ଏକାକାର
xxx xxx xxx
...ସ୍ଥୂଳ ରୂପୀ ହୟା ସତ୍ୟ ନାରାୟନ
...ଥାତେ ଦାରୁବ୍ରହ୍ମ ରୂପେତ ଭାସେନ ।

ସେହି ସର୍ବଶକ୍ତିମାନ ଶକ୍ତି ପାଖରେ ସମସ୍ତେ ସମାନ । ...ସୀଆ ବାଉରୀ ହୋଇପାରେ ବା ସାଲ ବେଗ ଯବନ ହୋଇପାରେ କିନ୍ତୁ ସେମାନେ ହେଉଛନ୍ତି ଅଦ୍ୱିତୀୟ ଭକ୍ତ ।

"ଶୈବମାନଙ୍କ ମତରେ ଶ୍ରୀଜଗନ୍ନାଥ ଭୈରବ, ଶାକ୍ତମାନଙ୍କ ମତରେ ପୁରୁଷୋତ୍ତମ ଭୈରବ ଏବଂ ଦେବୀ ହେଉଛି ବିମଳା, ...ଣ ବିଦ୍ୱାନଙ୍କ ନିକଟରେ ସେ ହେଉଛନ୍ତି ଓଁ କାର ତନୁଧାରୀ ପ୍ରଣବ, ବୈଷ୍ଣବଙ୍କ ଦୃଷ୍ଟିରେ ସେ ଶ୍ରୀକୃଷ୍ଣ, ବୌଦ୍ଧମାନଙ୍କ ମତରେ ସେ ନବମାବତାର ଆଦି ବୁଦ୍ଧ, ଜୈନମାନଙ୍କ ମତରେ ସେ ମହାତୀର୍ଥଙ୍କର ସିଦ୍ଧାନ୍ତ ମୂର୍ତ୍ତି ।"

ଶ୍ରୀଜଗନ୍ନାଥ ଓଡ଼ିଶାର ନୁହଁନ୍ତି ସେ ବିଶ୍ୱ ଦେବତା ଯାହାଙ୍କଠାରୁ ସବୁ ଧର୍ମର ସୃଷ୍ଟି ଓ ସବୁ ଧର୍ମ ମିଶି ଯାଇ ହୋଇଥାଏ ଏକାକାର ଧର୍ମ । ଏହି ଧର୍ମର ସାର୍ବଜନୀନତା, ମହନୀୟତା ଓ ଉଦାରତା ରହିଛି ଯୁଗେ ଯୁଗେ– ଏହି ଧର୍ମ ଅନୁସରଣରେ ହିଁ ମାନବ ଜୀବନରେ ଆସିବ ପୂର୍ଣ୍ଣତା । ଏହି ଧର୍ମ ପ୍ରତିଷ୍ଠା କରିବ ବିଶ୍ୱରେ ଶାନ୍ତି । ଏହି ଧର୍ମ ସତ୍ୟ ଓ ଶାନ୍ତିର ପଥ ଦେଖାଇବ ।

ଶ୍ରୀଜଗନ୍ନାଥ ଧର୍ମ ହେଉଛି ବିଶ୍ୱର ଶ୍ରେଷ୍ଠ ଧର୍ମ ଯାହାକି ମାନବ ଧର୍ମ ବା ବିଶ୍ୱଧର୍ମ ଭାବରେ ଆଖ୍ୟାତ । ଗୀତା, ବାଇବେଲ, କୋରାନ୍, ବୌଦ୍ଧ, ଜୈନ ଓ ଶିଖ ଧର୍ମଗ୍ରନ୍ଥ ଓ ଅନ୍ୟାନ୍ୟ ବହୁ ଧର୍ମଗ୍ରନ୍ଥର ଆଦର୍ଶ ଓ ନୀତି ଏକ ସବୁଥିରେ ମାନବିକତା ଉଚ୍ଚସ୍ଥାନ ପାଇଛି । ଏହି ମାନବିକତାର ଧର୍ମ ହେଉଛି ସନାତନ ଧର୍ମ । ଏହି ସନାତନ ଧର୍ମ ମାନବ ସୃଷ୍ଟିର ଆରମ୍ଭରୁ ସମଗ୍ର ପୃଥିବୀର ମାନବ ସମାଜକୁ ନିୟନ୍ତ୍ରିତ କରୁଛି । ଏହି ସନାତନ ଧର୍ମର ଦେବତା ହେଉଛନ୍ତି ଶ୍ରୀଜଗନ୍ନାଥ ।

ପ୍ରତ୍ୟେକ ଧର୍ମରେ ଠିକ୍, ଭୁଲ୍ ବିଚାର କରାଯାଇ ଯେଉଁଟି ବରଣୀୟ ବା ଗ୍ରହଣୀୟ ସେଇଟିକୁ ନିଆଯାଇଥାଏ । ବୈଦିକ ଧର୍ମ ସତ୍କର୍ମ ଉପରେ ଗୁରୁତ୍ୱ ଦିଆଗଲା ବେଳେ, ଜୈନ ଧର୍ମରେ ସଂଯମ ଆଚରଣ ଓ ଅହିଂସା ଉପରେ ପ୍ରାଧାନ୍ୟ ଦିଆଯାଇଥାଏ । ସବୁ ଧର୍ମର ମୂଳକଥା ହେଉଛି ଜଗତକୁ କିପରି ଉଦ୍ଧାର କରାଯାଇପାରିବ । ସନ୍ଥକବି ଭୀମ ଭୋଇଙ୍କ ଭାଷାରେ ।

"ମୋ ଜୀବନ ପଛେ ନର୍କେ ପଡ଼ିଥାଉ ଜଗତ ଉଦ୍ଧାର ହେଉ" । ଆମର ଗଭୀର ବିଶ୍ୱାସ ଏ ଧ୍ୱଂସ ମୁଖୀ ବିଶ୍ୱକୁ ଏ ମାନବ ସମାଜକୁ କେବଳ ଭଗବାନଙ୍କର ଅଲୌକିକ ଶକ୍ତି ହିଁ ରକ୍ଷା କରିପାରିବ । ମାନବ ସମାଜ ଯେତେବେଳେ ଘୋର ସଙ୍କଟର ସମ୍ମୁଖୀନ ହୁଏ, ଯେତେବେଳେ ସତ୍ ପରିବର୍ତ୍ତେ ଚାଲେ ଅସତ୍ୟର ରାଜୁତି, ଅହିଂସାର ପରିବର୍ତ୍ତେ ହିଂସା ହୋଇଯାଏ ମାନବର ଶ୍ରେଷ୍ଠ ପ୍ରବୃତ୍ତି—ଯେତେବେଳେ ମଣିଷ ସମାଜ ନିକଟରେ ବିଶ୍ୱନିୟନ୍ତା ଭଗବାନଙ୍କର ସ୍ଥିତି ହୋଇଯାଏ ଗୌଣ, ବିଶ୍ୱର କର୍ତ୍ତାଙ୍କୁ ମନରୁ ସେ ଭୁଲିଯାଏ, ଅନ୍ୟାୟକୁ ପ୍ରଶ୍ରୟ ଦେଇ ନିଜର ମନ୍ଦ ଉଦ୍ଦେଶ୍ୟକୁ ଚରିତାର୍ଥ କରିବା ପାଇଁ ଅହରହ ଧାଇଁଚାଲେ । ଏହି ସମୟରେ ଭଗବାନଙ୍କର ଆର୍ବିଭାବ ଘଟେ ଓ ଧର୍ମ ସଂସ୍ଥାପନ ହୁଏ । ଏଥି ପାଇଁ ଆମର ଶ୍ରେଷ୍ଠ ଧର୍ମ ଗ୍ରନ୍ଥ ଶ୍ରୀମଦ୍ ଭାଗବତରେ କୁହାଯାଇଛି—

"ଯଦାଯଦାହିଁ ଧର୍ମସ୍ୟ ଗ୍ଲାନିର୍ଭବତି ଭାରତ ।
ଅଭ୍ୟୁତଥାନ ମଧର୍ମସ୍ୟ ତଦାତ୍ମାନାଂ ସୃଜାମ୍ୟହମ୍
ପରିତ୍ରାଣାୟ ସାଧୁନାଂ ବିନାଶାୟ ଚ ଦୁଷ୍କୃତାମ୍
ଧର୍ମସଂସ୍ଥାପନାର୍ଥାୟ ସମ୍ଭବାମି ଯୁଗେ ଯୁଗେ ।"

(ଯେତେବେଳେ ଧର୍ମରେ ଗ୍ଲାନି ଆସେ ଓ ଅଧର୍ମ ବଢ଼ିବଢ଼ି ଚାଲେ ସେତେବେଳେ ମୁଁ ଆବିର୍ଭୂତ ହୁଏ । ସାଧୁମାନଙ୍କର ରକ୍ଷା, ଦୁଷ୍ଟମାନଙ୍କର ବିନାଶ ଓ ଧର୍ମ ସ୍ଥାପନ ନିମିତ୍ତ ମୁଁ ଯୁଗେ ଯୁଗେ ପୃଥିବୀକୁ ଆସିଥାଏ) ।

ଗୀତା ଆମକୁ ଏହି ଶିକ୍ଷା ଦେଇଥାଏ ଯେ ଧର୍ମ ହେଉଛି ମାନବ ସମାଜର ରକ୍ଷାକବଚ, ଯାହା ମନୁଷ୍ୟକୁ ଦୁର୍ଗତିରୁ ରକ୍ଷାକରେ ।

ମୁସଲମାନ ଆକ୍ରମଣରେ ଶ୍ରୀଜଗନ୍ନାଥ ମନ୍ଦିର ବହୁ ସମୟରେ କ୍ଷତିଗ୍ରସ୍ତ ହୋଇଛି । ଶ୍ରୀମୂର୍ତ୍ତିଙ୍କୁ ଯବନମାନେ ନେଇ ଯାଇଛନ୍ତି । ତାଙ୍କୁ ବହୁ ଅତ୍ୟାଚାର ଅବମାନନା, ପୋଡ଼ାଜଳା ମଧ କରିଛନ୍ତି । ବିଭିନ୍ନ ସମୟରେ ଶ୍ରୀମନ୍ଦିରକୁ ଧୂଳି ସ୍ତୁପରେ ପରିଣତ କରିବା ପାଇଁ ହୀନ ଉଦ୍ୟମମାନ କରାଯାଇଛି । ଏହି କାରଣ ଯୋଗୁଁ ବୋଧହୁଏ ହିନ୍ଦୁମାନଙ୍କ ବ୍ୟତୀତ ଭାରତ ଓ ପୃଥିବୀର ଅନ୍ୟ ସବୁ ଜାତିର ଲୋକଙ୍କୁ ମନ୍ଦିର ଭିତରେ ପ୍ରବେଶକୁ ବାରଣ କରାଯାଇଛି । କିନ୍ତୁ ଜଗନ୍ନାଥ କେବଳ ହିନ୍ଦୁ ଦେବତା ଭାବରେ ସୀମାବଦ୍ଧ ନୁହଁନ୍ତି । ସେ ହେଉଛନ୍ତି ବିଶ୍ୱର ମହାନ୍ ଦେବତା । ଜଗତର ନାଥ ଜଗନ୍ନାଥ । ସେଥିପାଇଁ ହିନ୍ଦୁ ଧର୍ମର ବହୁ ରକ୍ଷଣଶୀଳ ଆଚାର, ବିଚାର ଦୁର୍ଭେଦ୍ୟ ଦୁର୍ଗକୁ ଭାଙ୍ଗି ସେ ନିଜେ ଚାଲି ଆସନ୍ତି ତାଙ୍କର ଭକ୍ତମାନଙ୍କର ସୁଖ, ଦୁଃଖରେ ଭାଗି ହେବା ପାଇଁ । ସେଥିପାଇଁ ହୋଇଥାଏ ରଥଯାତ୍ରାର ଆୟୋଜନ । ଆମ୍ଭେମାନେ ଜଗନ୍ନାଥଙ୍କ ଧର୍ମକୁ ଯଦି ବିଶ୍ୱଧର୍ମ ବୋଲି ଆଖ୍ୟାୟିତ କରୁଛୁ, ତେବେ ସେହି ବିଶ୍ୱର ଠାକୁର ଦିନେ ନା ଦିନେ ଶ୍ରୀମନ୍ଦିର ଦ୍ୱାର ପୃଥିବୀର ପ୍ରତ୍ୟେକ ଜନଗଣଙ୍କ ପାଇଁ ଉନ୍ମୁକ୍ତ କରିବେ । "ସର୍ବଧର୍ମ ସମନ୍ୱୟ" ଘଟିଛି ନୀଳାଚଳ ଧାମରେ ଓ ତାହା ଆହୁରି ଦିଗନ୍ତ ପ୍ରସାରୀ ହୋଇଉଠିବ ।

---

*କ୍ୱାଟର ଏ, ଟାଇପ୍–୮,*
*ୟୁନିଟ୍–୬, ଭୁବନେଶ୍ୱର ।*



ରାଧାନାଥ ମିଶ୍ର

କେଉଁ କାରଣରୁ ପ୍ରଭୁ
ବସିଛ ମଉନେ ।
ସବୁ ଦେଖୁ ଅଛ ବସି
ରତ୍ନ ସିଂହାସନେ ।୧।

ପାଦ ନାହିଁ ମନ କିନ୍ତୁ
ନୁଏଁ ବୁଲିବାରେ ।
ଦେଖୁ ତୁମେ ବୁଲି ଯାଅ
ରଥର ଉପରେ ।୨।

ଅନ୍ତରର କଥାଜାଣ
ତୁମେ ହେ ଠାକୁର ।
ମାଗିବାକୁ ଡାକିବାରୁ
ହେଲକି ପଥର ।୩।

କଳିଯୁଗେ ଯେଣୁ ତୁମେ
ହାତରଖି ନାହଁ ।
ଦେବାକୁ କି ଆଉତୁମେ
ଭଲ ପାଉ ନାହଁ ।୪।

ଧନଜନ କିଛି ମୁହିଁ
ମାଗୁନି ତୁମକୁ
ନିଜର କରିଛି ଦେଖୁ
ଶରଧା ବାଲିକୁ ।୫।

ଜଗତ ଜନର ନାଥ
ତୁମେ ଜଗନ୍ନାଥ ।
ମୋ ପାଇଁ କାହିଁକି ପ୍ରଭୁ
ହୋଇଲ ଅନାଥ ।୬।

ନିଜ କଥା ନିଜେ ଭାବ
ଆନ ପାଇଁ ନୁହଁ ।
ଜଗତ ଜନର ନାଥ
କିମ୍ପା ତେବେ କୁହ ।୭।

ଯେତେ ବଡ଼ ସବୁ ଚିଜ
ପାଖରେ ରଖୁଛ ।
ବଡ଼ଦିଅଁ ବୋଲି ତୁମେ
ନାମ କମାଇଛ ।୮।

ବଡ଼ ଦିଅଁ ବଡ଼ ଦାଣ୍ଡ
ବଡ଼ ସେ ମନ୍ଦିର ।
ବଡ଼ ନେତ ବଡ଼ ଯାତ
ବଡ଼ ସେ ଠାକୁର ।୯।

ବଡ଼ ଭୋଗ ଖାଉଥାଅ
ବଡ଼ ଆନନ୍ଦରେ ।
ବଡ଼ ଭାଇ ପାଖେ ରହି
ଅଛ ନିଶ୍ଚିନ୍ତରେ ।୧୦।

ବଡ଼ କପଟିଆ ତୁମେ
କିଏ ହେବ ସରି ।
ବଡ଼ ଭକ୍ତ ନମ୍ରୁଟିଲେ
କର ନାହିଁ ପାରି ।୧୧।

ବଡ଼ ବଡ଼ ଆଖି କରି
ଚରାଟି ଗୁଡ଼ିଛ ।
ଦୀନ, ଦୁଃଖୀ ଦରିଦ୍ରଙ୍କୁ
ଦେଖି ନ ପାରୁଛ ।୧୨।

ବଡ଼ ବଡ଼ ହାତ ତୁମେ
ଲମ୍ବାଇ ଦେଇଛ ।
ବଡ଼ ବଡ଼ ପାଟିରେତ
ସବୁ ଖାଉ ଅଛ ।୧୩।

ବଡ଼ ଭକ୍ତ ମହାରାଜା
ନିତି ସେବୁଛନ୍ତି ।
ବଡ଼ ବଡ଼ ବଡ଼ ପଣ୍ଡା
ନିତି ପୂଜୁଛନ୍ତି ।୧୪।

ତୁମେ ସବୁ ବଡ଼ ବଡ଼
ଚିନ୍ତା ଯେ କରୁଛ ।
ସାନ ସାନ କଥାକୁ ଯେ
ଜମା ନଶୁଣୁଛ ।୧୫।

ବଡ଼ ସ୍ନେହ କର ପୁଣି
ବଡ଼ ଭକ୍ତ ଦେଖି ।
ତୁମ ବଡ଼ କଥା କିବା
ପାରିବି ମୁଁ ଲେଖି ।୧୬।

ଡମ୍ବରି ପରଶେ ପ୍ରଭୁ
ସାନ ହୁଏ ବଡ଼ ।
ପାଷାଣ ପାଏ ଜୀବନ
ହେଲେ ବି ସେ ଜଡ଼ ।୧୭।

ବଡ଼ ଦୁଃଖୀ ରାଧାନାଥ
ଏଭବ ସଂସାରେ ।
ପାରି କରିଦିଅ ପ୍ରଭୁ
ଭବ ପାରାବାରେ ।୧୮।

ଯେତେ କ୍ଷୁଦ୍ର ହେଲେ ତବ ପାଶେ ଗଲେ
ହୋଇଯାଏ ସିଏ ବଡ଼ ।
ପଥର ଦେହରେ ଜୀବନ ଲଭଇ
ହୋଇଲେ ବି ସିଏ ଜଡ଼ ।୧୯।

ବଡ଼ ଦୁଃଖୀ ରାଧାନାଥ
କରୁଛି ଜଣାଣ ।
ଦୀନ ଦୁଃଖୀର ଅଞ୍ଜଳି
ବଡ଼ପଣେ ଘେନ ।୨୦।

---

*ରଚନା–ରାଧାନାଥ ମିଶ୍ର, ଶିକ୍ଷକ,*
*ସାହାଦ୍ୟୋଗୁଣ୍ଡ (ଚିଲ୍ଲା), ରାଷ୍ଟ୍ରଭାଷା ଶଢ଼, ହିନ୍ଦୀ ଟ୍ରେଣ୍ଡ,*
*ଥମଲାପଡ଼ା, ଢେଙ୍କାନାଳ ।*




*ଢେଙ୍କାନାଳ ସୂଚନା କେନ୍ଦ୍ରଠାରେ ଆୟୋଜିତ ଉତ୍କଳ ପ୍ରସଙ୍ଗ ପାଠକ ସମାବେଶରେ ମୁଖ୍ୟ ସମ୍ପାଦକ ଶ୍ରୀ ସତୀଶ ପାଣ୍ଡଙ୍କ ଉଦ୍‌ବୋଧନ (୯/୫/୧୯୯୭) ।*




କାଳିଆ ଠାକୁର ହେ, ଏଇ ନିବେଦନ ମୋର
ପତିତ ପାବନ ପତିତ ଜନର ମନବାଞ୍ଛା ପୂର୍ଣ୍ଣକର ।

ସିଂହାସନ ପରେ ବସିଥିବ ତୁମେ ଚଉଦ ବ୍ରହ୍ମାଣ୍ଡ ନାଥ
ତୁମରି ଆଗରେ ଦୀନହୀନ ମୁହିଁ ଯୋଡ଼ିଥିବି ବେନି ହାତ ।

ତୁମେ ହସୁଥିବ ନନ୍ଦିଘୋଷ ରଥେ ମୁହିଁ ଯୋଡ଼ିଥିବି କର
ଚକା ନୟନକୁ ଅନାଇ ନୟନୁ ବହୁଥିବ ଲୁହ ଝର ।

ଉପରେ ବରଷା ତଳେ ଜଳଧାରା କାଦୁଅରେ ଗୋଡ଼ ପୋତି
ତୁମ ନାମ ସ୍ମରି ସବୁ ଭୁଲିଯିବି ଏତିକି ମୋର ମିନତି ।

ତୁମେ ଖାଇପିଇ ମନ ମଉଜରେ ଭାଇ ଭଉଣୀଙ୍କ ସାଥେ
ବୁଲି ବାହାରିଛ ବ୍ରହ୍ମାଣ୍ଡ ନାଥ ହେ ବରଷକେ ଥରେ ରଥେ ।

ଅଳି କରିବିନି କଳି କରିବିନି କରିବିନି ନିନ୍ଦା ତୋର
ଜଗତ ନାଥ ହେ ଜଗତ–ଜନର ପାପ ତାପ ଦୂର କର ।

ବାରିପଦା ।





# ବୈଷ୍ଣବ ଧର୍ମ ଓ ଶ୍ରୀଜଗନ୍ନାଥ



ଶ୍ରୀ ଚିତ୍ତରଞ୍ଜନ ଦାଶ

ବୈଷ୍ଣବ ଧର୍ମ ଭାରତ ବର୍ଷର ଏକ ପ୍ରାଚୀନତମ ଗଣଧର୍ମ । ବୈଷ୍ଣବର ଅର୍ଥ ହେଉଛି ବିଷ୍ଣୁ ଉପାସକ ବା ବିଷ୍ଣୁ ଭକ୍ତ । ଏଠାରେ ବିଷ୍ଣୁ ସର୍ବବ୍ୟାପକ ଅର୍ଥରେ ଗୃହୀତ । "ବିଷ୍ଣୁ" ଅର୍ଥ ବ୍ୟାପ୍ତି । ତେଣୁ ଯେ ସର୍ବତ୍ର ପରିବ୍ୟାପ୍ତ ସେ ହେଉଛନ୍ତି "ବିଷ୍ଣୁ" । "ବିଷ୍ଣୁ" ପୁରାଣରେ ବିଷ୍ ଶବ୍ଦଟି ପ୍ରବେଶ ଅର୍ଥରେ ସଙ୍କେତିତ ହେତୁ "ବିଷ୍ଣୁ" ଶବ୍ଦର ଅନ୍ୟ ଅର୍ଥ ହେଉଛି, ଯେ ସର୍ବତ୍ର ପ୍ରବେଶ କରନ୍ତି । ଋକ୍ ବେଦରେ ଆକାଶ, ପୃଥିବୀ ଓ ସମସ୍ତ ଲୋକଙ୍କୁ ବିଷ୍ଣୁ ଧାରଣ କରିଥିବା କୁହାଯାଇଛି । ପୁନଶ୍ଚ ତାଙ୍କୁ ପ୍ରଭୁ ଓ ମାନବ ଜଗତର କଲ୍ୟାଣ କର୍ତ୍ତା ରୂପେ ବର୍ଣ୍ଣନା କରାଯାଇଛି । ଏହା ଛଡ଼ା ବିଷ୍ଣୁ ବିକ୍ରମର ସହିତ ତିନି ପାଦ ନିକ୍ଷେପ କରି ବିଶ୍ୱ ପ୍ରଦକ୍ଷିଣ କରୁଥିବାରୁ ତାଙ୍କୁ ତ୍ରିବିକ୍ରମ ମଧ୍ୟ କୁହାଯାଇଛି । କେବଳ ଏତିକି ନୁହେଁ, ହିନ୍ଦୁ ଭକ୍ତି ସମ୍ପ୍ରଦାୟର ଆଦି ସ୍ରୋତ ଭାବରେ ବିବେଚିତ ଋକ୍ ବେଦରେ ଇନ୍ଦ୍ର, ବରୁଣ, ସୂର୍ଯ୍ୟ, ବିଷ୍ଣୁଙ୍କ ସହିତ ଏକ ଓ ଅଭିନ୍ନ । ଋକ୍ ବେଦ ପରି ଯଜୁଃ, ସାମ ଓ ଅଥର୍ବ ବେଦମାନଙ୍କରେ ମଧ୍ୟ ବିଷ୍ଣୁଙ୍କ ମହିମା ଅନେକ ସ୍ଥଳରେ ଉଦ୍‌ଘୋଷିତ ହୋଇଅଛି । ଗବେଷକମାନଙ୍କ ମତରେ ଋକ୍ ବେଦରେ ୧୦୫ ଥର, ଯଜୁଃ ବେଦରେ ୫୯ ଥର, ସାମ ବେଦରେ ୨୬ ଥର ଓ ଅଥର୍ବ ବେଦରେ ୬୬ ଥର ବିଷ୍ଣୁଙ୍କର ନାମୋଲ୍ଲେଖ ରହିଛି । ସୁତରାଂ ବିଷ୍ଣୁ ଉପାସନାକୁ କେନ୍ଦ୍ରକରି ଗଢ଼ି ଉଠିଥିବା ଧର୍ମ ହିଁ ବୈଷ୍ଣବ ଧର୍ମ । ବୈଷ୍ଣବ ଧର୍ମ ମୁଖ୍ୟତଃ ବିଷ୍ଣୁ ମୂଳକ ଉପାସନା । ବିଷ୍ଣୁ ଉପାସନା ଓ ଏହାର ଇତିହାସ ବହୁ ପ୍ରାଚୀନ । ଯାହାକି ପ୍ରାଚୀନ ବୈଦିକ ସମାଜରେ ପ୍ରଚଳିତ ଥିଲା । ଭାରତ ବର୍ଷରେ ଏହାର ଉତ୍ପତ୍ତି ବହୁ ପ୍ରାଚୀନ କାଳରୁ ହୋଇଛି ।

ପ୍ରକୃତିର ରୁଦ୍ର ରୂପ ଅବଲୋକନରେ ଧର୍ମର ଆଦି ସ୍ଫୁରଣ ଘଟିଥିଲା । ସରଳ ମାନବ ମନୋରମ ପ୍ରକୃତିର ଲୀଳା ଦର୍ଶନ କରି ମହାଶକ୍ତିର ସନ୍ଧାନ ପାଇଥିଲା ଓ ଧ୍ୱଂସ ହାତରୁ ରକ୍ଷାକରିବା ନିମନ୍ତେ ମାୟାରୂପିଣୀ ପ୍ରକୃତିର ଉପାସନା କରିଥିଲା । ଏହିପରି ପ୍ରକୃତି ଓ ମନୀଷର ଭେଦ ଦର୍ଶନ ଉପରୁ ଜନ୍ମ ନେଇଥିଲା ଉପାସନା ଧର୍ମ ।

ବୈଦିକ ଯୁଗର ପ୍ରଥମାର୍ଦ୍ଧରେ ଉପାସନା ଧର୍ମ ପ୍ରାର୍ଥନା ମାଧ୍ୟମରେ ଦେବଦେବୀ ଉପାସନା ଓ ଯଜ୍ଞ ଦ୍ୱାରା ଦେବତାମାନଙ୍କର ତୁଷ୍ଟି ବିଧାନ ଓ ଇପ୍‌ସିତ ଫଳଲାଭ ଉପରେ ପ୍ରାଧାନ୍ୟ ଦିଆଯାଇଥିଲା । ବୈଦିକ ଯୁଗର ପରବର୍ତ୍ତୀ ଯୁଗରେ ଅର୍ଥାତ୍ ସଂହିତା, ବ୍ରାହ୍ମଣ, ଉପନିଷଦାଦି ଯୁଗରେ ମଧ୍ୟ ବିଷ୍ଣୁ ଉପାସନାର ପ୍ରଚଳନ ଥିବାର ଜଣାଯାଏ । ଉପନିଷଦମାନେ ବେଦର ଶେଷ ପର୍ଯ୍ୟାୟ ହେଲେ ମଧ୍ୟ ଏଠାରେ ବିଷ୍ଣୁ ଉପାସନାର ସ୍ପଷ୍ଟ ପ୍ରତିଫଳନ ଦେଖାଯାଏ । ମହାନାରାୟଣ ଉପନିଷଦରେ 'ତନ୍ନୋ ବିଷ୍ଣୁ ପ୍ରଚୋଦୟାତ୍' କୈବଲ୍ୟ ଉପନିଷଦରେ 'ସ' ଏବଂ ବିଷ୍ଣୁ ସ ପ୍ରାଣଃ, କଠୋପନିଷଦରେ 'ତଦ୍ ବିଷ୍ଣୋ ପରମପଦଂ ସଦା ପଶ୍ୟନ୍ତି ସୂରୟଃ' ପ୍ରଭୃତି ଶ୍ଳୋକାବଳୀ ବିଷ୍ଣୋପାସନାର ଏକ ସ୍ପଷ୍ଟ ଦିଗ ଉନ୍ମୋଚିତ କରେ ।

ମହାଭାରତ ପ୍ରଭୃତି ଇତିହାସ ପୁରାଣ ଯୁଗରେ ମଧ୍ୟ ଶ୍ରେଷ୍ଠତ୍ୱ ଅକ୍ଷୁର୍ଣ୍ଣ ରହିଛି । ବିଷ୍ଣୁ ପୁରାଣାନୁସାରେ ସେହି ବିଷ୍ଣୁ ଯେ ସର୍ବଭୂତରେ ଅନୁପ୍ରବିଷ୍ଟ ଏବଂ ସର୍ବଭୂତ୍ ଯାହାଙ୍କଠାରେ ଅନୁପ୍ରବିଷ୍ଟ । ଏହାକୁ କେନ୍ଦ୍ର କରି ବୈଦିକ, ତାନ୍ତ୍ରିକ, ବୌଦ୍ଧ, ବୈଷ୍ଣବାଦି ମତବାଦମାନ ଓଡ଼ିଶାରେ ରାଜ ପୃଷ୍ଠପୋଷକତା ଓ ସାମାଜିକ ସମର୍ଥନ ଲାଭ କରି ପ୍ରସାରିତ ହୋଇଛି ।

ଓଡ଼ିଶାରେ ବୈଷ୍ଣବ ଧର୍ମ ଖୁବ୍ ପ୍ରାଚୀନ ଓ ଏହାର ଏକ ସୁଦୀର୍ଘ ଓ ବଳିଷ୍ଠ ପରମ୍ପରା ରହିଛି । ପଞ୍ଚମ, ଷଷ୍ଠ ଶତାବ୍ଦୀରେ କଳିଙ୍ଗ ସାମ୍ରାଜ୍ୟ ଶାସନ କରୁଥିବା ମାଠର ଓ ପୂର୍ବୀ ଗଙ୍ଗବଂଶର ରାଜାମାନେ ବୈଷ୍ଣବ ଥିବାର ଜଣାଯାଏ । ମାଠର ବଂଶର ରାଜାମାନେ ବୈଷ୍ଣବ ଧର୍ମ ଗ୍ରହଣ କରି ଏହାକୁ ରାଜ ଧର୍ମରେ ପରିଣତ କରିଥିଲେ ଓ ରାଜା ପ୍ରଭଞ୍ଜନ ବର୍ମା ସପ୍ତୋଦଶ ଶତାବ୍ଦୀରେ ଶୈବ କ୍ଷେତ୍ର ଭୁବନେଶ୍ୱରରେ ଅନନ୍ତ ବାସୁଦେବ ମନ୍ଦିର ନିର୍ମାଣ କରିଥିଲେ । ବୈଷ୍ଣବ ଧର୍ମ ମାଠର ବଂଶୀୟ ଶାସକମାନଙ୍କ ପୃଷ୍ଠପୋଷକତାରେ ଉନ୍ନତିର ଚରମ ସୀମାରେ ପହଞ୍ଚିବା ପରେ ପୂର୍ବୀ ଗଙ୍ଗବଂଶର ରାଜାମାନେ ପରବର୍ତ୍ତୀ କାଳରେ ବୈଷ୍ଣବ ଧର୍ମମତ ଗ୍ରହଣ କରିଥିଲେ । ଏହାଛଡ଼ା

ଏକାଦଶ ଶତାବ୍ଦୀ ବେଳକୁ ଭକ୍ତକବି ଜୟଦେବ "ଗୀତ ଗୋବିନ୍ଦ" କାବ୍ୟ ରଚନା କରି ଓଡ଼ିଶାରେ ବୈଷ୍ଣବ ଧର୍ମ ପ୍ରଚାର ଓ ପ୍ରସାରରେ ସାହାଯ୍ୟ କଲେ । ତାଙ୍କ ପରେ ବଲ୍ଲଭାଚାର୍ଯ୍ୟ, ମାଧ୍ୱାଚାର୍ଯ୍ୟ, ନିମ୍ବାର୍କ, ରାମାନୁଜ ପ୍ରମୁଖ ଉତ୍କଳ ଆସି ବୈଷ୍ଣବ ଧର୍ମ ପ୍ରଚାର କରିଥିଲେ । ଏହିପରି ଭାବରେ ଓଡ଼ିଶାରେ ବୈଷ୍ଣବ ଧର୍ମଧାରା ଷୋଡ଼ଶ ଶତାବ୍ଦୀ ପର୍ଯ୍ୟନ୍ତ ପ୍ରବାହିତ ହୋଇ ଆସିଥିଲା ।

ମାତ୍ର ଷୋଡ଼ଶ ଶତାବ୍ଦୀର ପ୍ରଥମ ଭାଗ ଅର୍ଥାତ୍ ୧୫୧୦ ମସିହା ଚୈତ୍ରମାସ ଦ୍ୱାଦଶୀ ଗୁରୁବାର ଦିନ ଶ୍ରୀକ୍ଷେତ୍ରରେ ପ୍ରବେଶ କଲେ ଶ୍ରୀ ଚୈତନ୍ୟ । ଏହାର ବହୁ ପୂର୍ବରୁ ପଞ୍ଚସଖାମାନେ ଜ୍ଞାନ ମିଶ୍ର, ଭକ୍ତିର ପ୍ରଚାର ଆରମ୍ଭ କରିଦେଇଥିଲେ । ମାତ୍ର ଚୈତନ୍ୟଙ୍କ ଆଗମନ ପରେ ପ୍ରେମଭକ୍ତି ମାର୍ଗର ପ୍ରଚଳନ ଆରମ୍ଭ ହୋଇ ଯାଇଥିଲା । ଫଳରେ ବୈଷ୍ଣବ ଧର୍ମରେ ଦୁଇଟି ସମାଧାନ ମାର୍ଗର ଅଭ୍ୟୁଦୟ ଘଟିଥିଲା । ଗୋଟିଏ ଓଡ଼ଶୀ ବୈଷ୍ଣବ ଧାରା ଓ ଅନ୍ୟଟି ଗୌଡ଼ୀୟ ବୈଷ୍ଣବ ଧାରା ଚୈତନ୍ୟ ସମସାମୟିକ ପଞ୍ଚସଖା (ବଳରାମ, ଜଗନ୍ନାଥ, ଅଚ୍ୟୁତାନନ୍ଦ, ଅନନ୍ତ, ଯଶୋବନ୍ତ) ଓ ସେମାନଙ୍କ ଅନୁଗାମୀ ବୈଷ୍ଣବମାନେ ଓଡ଼ଶୀ ବୈଷ୍ଣବ ଓ ଚୈତନ୍ୟଙ୍କ ଅନୁଗାମୀ ବୈଷ୍ଣବମାନେ ଗୌଡ଼ୀୟ ବୈଷ୍ଣବ ଭାବେ ଅଭିହିତ ହେଲେ ।

ଏହି ଦୁଇଧାରାରୁ ଗୌଡ଼ୀୟ ବୈଷ୍ଣବମାନେ କୃଷ୍ଣଙ୍କୁ ଓ ଓଡ଼ଶୀ ବୈଷ୍ଣବମାନେ ଜଗନ୍ନାଥଙ୍କୁ ନିଜର ଇଷ୍ଟ ଦେବତା ରୂପେ ଜ୍ଞାନ କରି ସେମାନଙ୍କ ସାହିତ୍ୟରେ ଜଗନ୍ନାଥଙ୍କର ଜୟଗାନ କରିଥାନ୍ତି । ସେମାନଙ୍କର ଅନେକ ରଚନା ଜଗନ୍ନାଥଙ୍କ ବନ୍ଦନାରୁ ଆରମ୍ଭ ହୋଇଥାଏ । ବଳରାମ ଦାସଙ୍କ "ଦାଣ୍ଡି ରାମାୟଣ"ର ମଙ୍ଗଳାଚରଣ ଏହାର ଏକ ନିଦର୍ଶନ । ବଳରାମଙ୍କ ଭାଷାରେ–

ବନ୍ଦଇ ଜଗନ୍ନାଥ କମଳା ବିଳାସ
ଶ୍ରୀ ନୀଳଗିରିବର ଶିଖରେ ଯା' ବାସ
ସୁନ୍ଦର ଶ୍ରୀମୁଖ ଚାରୁ ନୀଳବର୍ଣ୍ଣ ଶୋଭା
କି ଜାଣି ପଟାନ୍ତର ନୀଳବର୍ଣ୍ଣ ପ୍ରଭା

(ଆଦ୍ୟକାଣ୍ଡ, ପ୍ରଥମ ଅଧ୍ୟାୟ)

ଓଡ଼ଶୀ ବୈଷ୍ଣବମାନଙ୍କ ମତରେ ସେମାନଙ୍କ ଇଷ୍ଟଦେବ ଶ୍ରୀଜଗନ୍ନାଥ ହେଉଛନ୍ତି ଅବତାରୀ । ଏହାଙ୍କଠାରୁ ଅନ୍ୟ ସମସ୍ତ ଅବତାର ଜାତ, ସଂସାରକୁ ଧ୍ୱଂସମୁଖରୁ ରକ୍ଷାକରିବା ପାଇଁ ଜଗତର ନାଥ ଜଗନ୍ନାଥ ହିଁ ବିଭିନ୍ନ ସମୟରେ ଅବତାର ଗ୍ରହଣ କରିଥାଆନ୍ତି । ବଳରାମ ଦାସଙ୍କ ମତରେ ଏହି ନୀଳାଦ୍ରିବିହାରୀଙ୍କଠାରୁ ସମସ୍ତ ଅବତାର ଜାତ ହୋଇ ପୁଣି ଏହାଙ୍କଠାରେ ଲୀନ ହୋଇଥାନ୍ତି, ତାଙ୍କ ଭାଷାରେ–

"ସର୍ବଦା ନୀଳାଦ୍ରିରେ ସ୍ଥିତ
ଏଥୁଁ ସକଳ ହୋନ୍ତି ଜାତ ।
ସମସ୍ତ ଅବତାରମାନ
ଜାତ ହୋଇଣ ପଶେ ପୁଣ ।
ବେଦାନ୍ତ ସାର ବ୍ରହ୍ମ ଏହି
ବେଦ ହିଁ ବର୍ଣ୍ଣି ନ ପାରଇ ।"

(ବେଦାନ୍ତ ସାର ଗୁପ୍ତଗୀତା ୨୧ ଅଧ୍ୟାୟ)

ଓଡ଼ଶୀ ବୈଷ୍ଣବ ଧର୍ମର ସ୍ୱରୂପ ପଞ୍ଚସଖାଙ୍କ ପୂର୍ବରୁ ଅସ୍ପଷ୍ଟ ଥିଲା କିନ୍ତୁ ପଞ୍ଚସଖାଙ୍କ ଆର୍ବିଭାବରେ ଓଡ଼ଶୀ ବୈଷ୍ଣବ ଧର୍ମର ପ୍ର... ପ୍ରତିଷ୍ଠା ସମ୍ଭବପର ହୋଇଥିଲା । ଏହି ପଞ୍ଚସଖା ଜଗନ୍ନାଥ... ଧର୍ମାଦର୍ଶ ଦ୍ୱାରା ବିଶେଷ ଭାବରେ ପ୍ରଭାବିତ ହୋଇ ବୈଷ୍ଣବ ଧ... ଦର୍ଶନକୁ ଓଡ଼ିଶାରେ ଏକ ସ୍ୱତନ୍ତ୍ର ରୂପ ପ୍ରଦାନ କରିଥି... ପଞ୍ଚସଖାଙ୍କ ରଚନାରେ ଜଗନ୍ନାଥ ଧର୍ମର ସ୍ୱୀକୃତ ଓ କୃଷ୍ଣ... ଅବତାରୀ ରୂପେ ଗ୍ରହଣ ନକରି ଜଗନ୍ନାଥଙ୍କୁ ଅବତାରୀ ରୂପେ ଗ୍ରହଣ କରିବାର ପରିକଳ୍ପିତ ପ୍ରକଟିତ । ଅଚ୍ୟୁତାନ... 'ଶୂନ୍ୟସଂହିତା'ରେ କହିଛନ୍ତି–

"ଅବତାର ଦଶ ... ଏହି ଦାରୁ ...
ଏହି ଦାରୁରେ ସେ ଲୀନ
ଈଶ୍ୱର ସାକ୍ଷାତେ ... ଲୀଳାର ନିମନ୍ତେ
ବିଜେ ରତ୍ନ ସିଂହାସନ

(ଶୂନ୍ୟ ସଂହିତା ପୃ–୦...

ଆଲୋଚକ ଭକ୍ତକବି ଦିବାକର ଦାସ ସ୍ୱୀୟ ଜଗନ୍ନାଥ ଚରିତାମୃତରେ ଲେଖିଛନ୍ତି :–

ଯେହ୍ନେ ଗୋଲୋକେ ନିତ୍ୟ ସ୍ଥଳ
ସେହିଠି ଗିରି ନୀଳାଚଳ ।
କୋଟିଏ ଯୁଗ ଯେବେ ଯାଇ
ଏଥିରେ ଲୀଳା ନ ସରଇ ।

(ଜ:ଚ: ପୃ–୯ ଅଧ୍ୟାୟ)

ତାଙ୍କ ମତରେ ଶ୍ରୀକୃଷ୍ଣ ମହାବିଷ୍ଣୁ ଶ୍ରୀଜଗନ୍ନାଥଙ୍କର ଷୋଳକଳା ମଧ୍ୟରୁ ମାତ୍ର ଏକ କଳା ଧରି ଅବତାର ଗ୍ରହଣ କରିଛନ୍ତି ।

ଜଗନ୍ନାଥ ଯେ ଷୋଳ କଳା
ତହିଁ କଳାଏ ନନ୍ଦବାଳା ।
କଳାକେ ଷୋଳ କଳା କରି
ଗୋପେ ବିହରେ ନରହରି ।

(ଜଗନ୍ନାଥ ଚରିତାମୃତ, ୯ ଅଧ୍ୟାୟ)

ପଞ୍ଚସଖାଗଣ ସେମାନଙ୍କ ବୀଜ ମନ୍ତ୍ରରେ ଶ୍ରୀଜଗନ୍ନାଥଙ୍କ ଚତୁର୍ଦ୍ଧାମୂର୍ତ୍ତିର ସମ୍ପର୍କ ସ୍ଥାପନ କରିଥିବାର ଜଣାଯାଏ । ସେମାନଙ୍କ ଦୃଷ୍ଟିରେ ଚତୁର୍ବିଧ ମୂର୍ତ୍ତି ଏକ ବା ମୂର୍ତ୍ତି ଚତୁଷ୍ଟ ... ଅଚ୍ୟୁତାନନ୍ଦଙ୍କ ଭାଷାରେ–

"ହ୍ଲୀଂ କୁ ବଳଭଦ୍ର କହି
ଶ୍ରୀ ଯେ ସୁଭଦ୍ରା ଅଟଇ
କ୍ଲୀଂ ଅଟଇ ଜଗନ୍ନାଥ
ଦାମ ସୁଦର୍ଶନ ସଂଯୁତ ।"

ଅନନ୍ତ ଦାସ ପୁଣି 'ଜଗନ୍ନାଥ' ଏହି ଚାରି ଅକ୍ଷରରେ ବୀଜମନ୍ତ୍ର ସମ୍ବନ୍ଧ ସ୍ଥାପନ କରିବାକୁ ଭୁଲି ନାହାନ୍ତି, ତାଙ୍କ ମତରେ–

'ଜ' କାମ ବୀଜ ଅକ୍ଷର
ଗ' କାର ଲକ୍ଷ୍ମୀ ବୀଜ ସାର
ନ' ଅକ୍ଷର ପରା ବୀଜ
ଥ' କାର ଦଶାକ୍ଷର ହେଜ
(ଜଗନ୍ନାଥ ଚରିତାମୃତ, ୧୭ ଅଧ୍ୟାୟ)

ପୁନଶ୍ଚ–

ଜ' ଅକ୍ଷର ଜଗନ୍ନାଥ
ଗ' ବଳଦେବ ସମ୍ଭୂତ ।
ନ' ଟି ସୁଭଦ୍ରା ମୂରତି
ଥ' ସୁଦର୍ଶନ ଅଟନ୍ତି
(ଜ: ଚରିତାମୃତ, ପୃ–୧୬୧)

ଭାରତୀୟ ଧର୍ମ ପରମ୍ପରାରେ ସାଧାରଣତଃ ତିନି ପ୍ରକାର ସାଧନ ମାର୍ଗ ଦେଖାଯାଇଥାଏ । ସେଗୁଡ଼ିକ ହେଉଛି କର୍ମ, ଜ୍ଞାନ, ଭକ୍ତି ମାର୍ଗ । ଯଜ୍ଞାନୁଷ୍ଠାନ ବିଭିନ୍ନ ବିଧିବିଧାନ ଓ ବୈଦିକ କର୍ମକାଣ୍ଡର ପୂଜା ପଦ୍ଧତି ଆଧ୍ୟାତ୍ମିକ ଉନ୍ମେଷର ପ୍ରକୃଷ୍ଟ ପନ୍ଥାରୂପେ ବିବେଚିତ ହୋଇ ନଥିବାରୁ ଜ୍ଞାନ, ମାର୍ଗର ଉଦ୍ଭବ ହୋଇଥିଲା । ଉପନିଷଦମାନଙ୍କରେ ଏହାର ବିସ୍ତୃତ ଆଲୋଚନା କରାଯାଇଛି । ଓଡ଼ିଶୀ ବୈଷ୍ଣବଙ୍କ ମତରେ ଜ୍ଞାନମାର୍ଗ ଦ୍ୱାରା କେବଳ ପରମ ପୁରୁଷଙ୍କ କରୁଣା ଲାଭ କରାଯାଇପାରେ । ତେଣୁ ସେମାନେ ଯୋଗସାଧନାକୁ ପରମ ପୁରୁଷଙ୍କ ସାନିଧ୍ୟ ଲାଭ କରିବା ପାଇଁ ଗୁରୁତ୍ୱ ଦେଇଥାନ୍ତି । ସେମାନଙ୍କ ମତରେ ଯୋଗ ସାଧନାରୁ ମିଳିଥିବା ଜ୍ଞାନ ବଳରେ ମୁକ୍ତି ମାର୍ଗରେ ପହଞ୍ଚି ହେବ । ତେଣୁ ଜ୍ଞାନ ମିଶ୍ର । ଭକ୍ତିର ଲକ୍ଷଣ ଜାଣିଥିବା ଗୁରୁଙ୍କ ପାଦ ପଦ୍ମରେ ସେବା କରିବାକୁ ଅଚ୍ୟୁତାନନ୍ଦ ଦାସ ଉପଦେଶ ଦେଇଛନ୍ତି:–

ଗୁରୁ ସେବାରେ ଜ୍ଞାନ ପାଇ,
ଅନ୍ଧ କୂପରୁ ଉଦ୍ଧରାଇ ।
ଗୁରୁ ନ ସେବିଲେ ଅର୍ଜୁନ,
କାହୁଁ ପାଇବ ସଦଜ୍ଞାନ ।
ଗୁରୁଟି ବ୍ରହ୍ମା ହରିହର,
ଗୁରୁଟି ସ୍ୱୟଂ ନିରାକାର ।
ଏ ଯେଣି ଗୁରୁ ଭଗବାନ,
ସେ ନୁହେଁ ମନୁଷ୍ୟ ସମାନ ।
ଏମନ୍ତ ଗୁରୁଙ୍କର ସେବା,
ଯେ ପ୍ରାଣୀ କରେ ସେ ଦୁର୍ଲଭା ।
(ଗୁପ୍ତ ଗୀତା, ୩ୟ ଅଧ୍ୟାୟ)

ସେହିପରି ଜଗନ୍ନାଥ ଦାସ 'ଭାଗବତ'ରେ କୁହନ୍ତି–

'ଗୁରୁଟି ପରମ ଈଶ୍ୱର,
ଗୁରୁଙ୍କୁ ନ ମଣିବ ନର" ।

ଯଶୋବନ୍ତ କୁହନ୍ତି–

ଗୁରୁରେ ଶରଣ ଯାଇ ବ୍ରହ୍ମ ନିରୂପଣ
ଯେ ଜାଣଇ ଜ୍ଞାନ ମିଶ୍ରା ଭକତି ଲକ୍ଷଣ ।
(ଶିବ ସ୍ୱରୋଦୟ ୩୯ ପୃଷ୍ଠା)

ତେଣୁ ପଞ୍ଚସଖାଙ୍କ ଦୃଷ୍ଟିରେ ଭଗବାନଙ୍କୁ ପାଇବାକୁ ହେଲେ ଗୁରୁଙ୍କ ଆଶିର୍ବାଦ ଆବଶ୍ୟକ । ସେମାନେ ଏହାକୁ ମଧ୍ୟ ସାଧନା ପଥର ଶ୍ରେଷ୍ଠ ମାଧ୍ୟମ ରୂପେ ସ୍ୱୀକାର କରିଛନ୍ତି । ତେଣୁ ଉତ୍କଳୀୟ ବୈଷ୍ଣବମାନେ ପୁରୁଷୋତ୍ତମ କ୍ଷେତ୍ର ଏପରିକି ସେଠାକାର ବାଲିମୟ ଠାକୁ ଶରଧା ବାଲି ବୋଲି ମନେ କରି ସେମାନଙ୍କ ରଚନାର ଛନ୍ଦେ ଛନ୍ଦେ ଜଗନ୍ନାଥଙ୍କୁ ଭକ୍ତି ଅର୍ଘ୍ୟ ବୋଲି ଅର୍ପଣ କରିଛନ୍ତି । ଯଶୋବନ୍ତ ଦାସ ଏହାର ଶ୍ରେଷ୍ଠତ୍ୱ ପ୍ରତିପାଦନ କରି କହିଛନ୍ତି ।

'ଦେଖିଲେ ନିତ୍ୟ ନୀଳାଚଳ,
ସକଳ ତୀର୍ଥଙ୍କର ଆଳ ।
ଗୋପେ ମଥୁରା ବୃନ୍ଦାବନ,
ଦ୍ୱାରକା ଆଦି ଯେତେ ସ୍ଥାନ ।
ସକଳ ଏହି ସ୍ଥାନେ ପାଇ,
ଆରବ କାଶୀ ମଧ୍ୟେ ହୋଇ ।
କୋଟିଯେ ତୀର୍ଥ ଏ କ୍ଷେତ୍ରରେ,
ମହିମା କହିଲେ ନ ସରେ ।
(ପ୍ରେମ ଭକ୍ତି ବ୍ରହ୍ମଗୀତା ୫ମ ଅଧ୍ୟାୟ)

ସେହିପରି ଅନ୍ୟ ଜଣେ ବୈଷ୍ଣବ କବି ଦିବାକର ଦାସଙ୍କ ରଚନାରେ ଶ୍ରୀପୁରୁଷୋତ୍ତମ କ୍ଷେତ୍ର ହେଉଛି ମର୍ତ୍ତ୍ୟର ବୈକୁଣ୍ଠ । ଏହିପରି ବିବିଧ ଭାବରେ ଓଡ଼ିଶୀ ବୈଷ୍ଣବମାନେ ସାରାବିଶ୍ୱକୁ ଜଗନ୍ନାଥଙ୍କର ଧାମ ବା ଜଗନ୍ନାଥଙ୍କର ଦେଶ ବୋଲି କହିଛନ୍ତି ।

ପ୍ରତ୍ୟେକ ଧର୍ମର ଚରମ ଲକ୍ଷ୍ୟ ମୁକ୍ତି ବା ନିର୍ବାଣ ହୋଇଥିବା ଭଳି ଓଡ଼ିଶୀ ବୈଷ୍ଣବ ଧର୍ମର ଲକ୍ଷ୍ୟସ୍ଥଳ ମଧ୍ୟ ଏହାରି ଉପରେ ପର୍ଯ୍ୟବସିତ । ବୈଷ୍ଣବ ଧର୍ମ ତତ୍ତ୍ୱରେ ମୁକ୍ତି ୪ ପ୍ରକାର–ସାରୂପ୍ୟ, ସାର ଷ୍ଟି, ସାଲୋକ୍ୟ, ସାଯୁଜ୍ୟ । ପଞ୍ଚସଖା ଥିଲେ ସାଯୁଜ୍ୟ ମୁକ୍ତିର ଉପାସକ ଓ ଶୂନ୍ୟକୁ ସେମାନେ ସାଯୁଜ୍ୟ ମୁକ୍ତି ଭାବରେ ଗ୍ରହଣ କରନ୍ତି । ତେଣୁ ପଞ୍ଚସଖାମାନେ ଜଗନ୍ନାଥଙ୍କୁ ମଧ୍ୟ ଶୂନ୍ୟ ରୂପରେ ସେମାନଙ୍କ ଗ୍ରନ୍ଥର ବିଭିନ୍ନ ସ୍ଥଳରେ ବର୍ଣ୍ଣନା କରିବାର ଦେଖାଯାଏ । ଯଶୋବନ୍ତ ଦାସ ପ୍ରେମ ଭକ୍ତି ବ୍ରହ୍ମଗୀତାରେ ଲେଖିଛନ୍ତି–

"ପାରୁଷେ ସୁଦର୍ଶନ ଯତି,
ସେ ମହାଶୂନ୍ୟ ବ୍ରହ୍ମ ଜ୍ୟୋତି ।
ନାହିଁ ତାହାର ପାଦ ପାଣି,
ଶିର ନାସିକା ବର୍ଣ୍ଣ ପୁଣି ।
ଅମନ ମନ ଭିନ୍ନ ନାହିଁ,
ସେ ସଦାନନ୍ଦ ରୂପ ଦେହି" ।

ମୋଟ ଉପରେ ଶୂନ୍ୟବାଦ ପଞ୍ଚସଖା ଧର୍ମ ଦର୍ଶନକୁ ସବୁ ଦିଗରୁ ଆଛନ୍ନ କରିଥିଲା ।

ବୈଷ୍ଣବଗଣ ସୃଷ୍ଟି, ସ୍ଥିତି ଓ ପ୍ରଳୟକୁ ଭଗବାନଙ୍କ ଲୀଳା ବୋଲି ବର୍ଣ୍ଣନା କରି, ଶରୀର ମଧ୍ୟସ୍ଥ ପିଣ୍ଡକୁ ସାଧନାର କେନ୍ଦ୍ରବିନ୍ଦୁ ଭାବେ ଗ୍ରହଣ କରିଛନ୍ତି । ଏହି ପିଣ୍ଡ କିପରି ବ୍ରହ୍ମାଣ୍ଡ ତାହା ବୁଝାଇବାକୁ ଯାଇ ଅଚ୍ୟୁତାନନ୍ଦ "ଛୟାଳିଶ ପଟଳ"ରେ ଲେଖିଛନ୍ତି–

ଏବେ ତୁ ଶୁଣ ଦେଇ ମନ,
ତୋ ଦେହେ ବ୍ରହ୍ମାଣ୍ଡର ସ୍ଥାନ ।
ପୁରି ରହିଛି ତୋର ପିଣ୍ଡେ,
ଯାହା ତୁ ଦେଖୁଛୁ ବ୍ରହ୍ମାଣ୍ଡେ ।
ଏ ଦେହ ମଧ୍ୟେ ଅଛି ସବୁ,
ମିଛେଟୁ ଏଣୁ ତେଣୁ ଭାବୁ ।

ତେଣୁ ବୈଷ୍ଣବମାନେ ଯୋଗ ବା ସାଧନା ଦ୍ୱାରା, ଜଗନ୍ନାଥଙ୍କୁ ପ୍ରାପ୍ତ ହେବାର ମାର୍ଗ ଦେଖାଇଥାନ୍ତି ।

ସୁତରାଂ ଶ୍ରୀଜଗନ୍ନାଥ ହିଁ ଓଡ଼ିଶାର ଧର୍ମ ସଂସ୍କୃତି ତଥା ଇତିହାସର ପ୍ରାଣ କେନ୍ଦ୍ର । ତେଣୁ ଶ୍ରୀଜଗନ୍ନାଥ ଏକ ପକ୍ଷରେ ବହୁ ତତ୍ତ୍ୱ ଓ ଉପଲବ୍ଧିର ଏକ ସମଷ୍ଟି ହେଲେ ମଧ୍ୟ ଅନ୍ୟ ପକ୍ଷରେ ସେ ଜଣେ ମାନବ ରୂପୀ ଭଗବାନ । ଯୁଗେ ଯୁଗେ ଉତ୍କଳୀୟମାନେ ତାଙ୍କ ଉପରେ ମାନବତ୍ୱ ଆରୋପ କରି ତାଙ୍କୁ ବନ୍ଧୁ ଓ ସଖା ଭାବରେ ନିକଟ କରି ନେଇଛନ୍ତି । ବାସ୍ତବରେ ଶ୍ରୀଜଗନ୍ନାଥ କୌଣସି ନିର୍ଦ୍ଦିଷ୍ଟ ଗୋଷ୍ଠୀ, ସମ୍ପ୍ରଦାୟ ଅଥବା ଧର୍ମମତର ଦେବତା ନୁହଁନ୍ତି । ସେ ହେଉଛନ୍ତି ମାନବ ସଂସ୍କୃତିର ଏକ ଅଙ୍ଗ । ଫଳରେ ଜଗନ୍ନାଥ ଧର୍ମ ସର୍ବଧର୍ମର ସମନ୍ୱୟରେ ଗଢ଼ି ଉଠିଥିବା ସାର୍ବଜନୀନତା । ଜଗନ୍ନାଥଙ୍କ ଯୋଗୁ ହିଁ ଏ ଦେଶର ନଦୀ–ମହାନଦୀ, ସାଗର–ମହୋଦଧି, ପର୍ବତ–ମହେନ୍ଦ୍ର କ୍ଷେତ୍ର–ଶ୍ରୀକ୍ଷେତ୍ର, ଶ୍ମଶାନ–ସ୍ୱର୍ଗଦ୍ୱାର । ପ୍ରସାଦ–ମହାପ୍ରସାଦ ଶ୍ରୀକ୍ଷେତ୍ର ବାଲିଗୁରଣ, ଗଉଧାବାଲି ତାର ପତାକା ପତିତପାବନ ବାନା । ତେଣୁ ଜଗନ୍ନାଥ ସଂସ୍କୃତିରେ ସର୍ବଧର୍ମ ସମନ୍ୱୟର ସାମ୍ୟ–ମୈତ୍ରୀ ଓ ପ୍ରୀତି ସନାତନ ଧର୍ମ ଓ ନୀତି ପ୍ରତି ମାନବୀୟ ମୂଲ୍ୟବୋଧ ପରିଲକ୍ଷିତ ହୁଏ । ପରିଶେଷରେ ଏ... ମାୟାଧର ମାନସିଂହଙ୍କ ଭାଷାରେ ଓଡ଼ିଆର ପ୍ରଭୁ ଜଗନ୍ନାଥ ପ୍ରକୃତରେ ବିଶ୍ୱର ପ୍ରଭୁ କେବଳ ଏହି ରୂପେ ସେ ସହସ୍ର ମାନବିକ ଗୁଣରେ ଅଳଙ୍କୃତ । ଆଉ ପୁରୀସ୍ଥିତ ଓଡ଼ିଆର ପ୍ରଭୁ ଜଗନ୍ନାଥ ହଜାର ମାନବିକ ମୂଲ୍ୟ ବୋଧର ଯେ ଏକ ନିଦର୍ଶନ, ତାହା ସମଗ୍ର ପୃଥିବୀ ଦେଖୁଥାଏ ।

(ଜଗନ୍ନାଥ ଏକ ଅପୂର୍ବ ସମନ୍ୱୟ,
ଧାମ ଜଗନ୍ନାଥ ଧାମ ସଂସ୍କୃତି ୧୯୮୧ ପୃ–୪୯)

---

ୟୁନିଟ୍–୯,
ଭୁବନେଶ୍ୱର ।




ଭୁବନେଶ୍ୱର ବିନ୍ଦୁସାଗର ନିକଟରେ ଚିନ୍ତା ଓ ଚେତନା ଦ୍ୱାରା ଆୟୋଜିତ ୧୦୦ ଦିନ ବ୍ୟାପୀ ଏକ କ୍ୟାମ୍ପର ଉଦ୍‌ଯାପନୀ ଉତ୍ସବରେ ସୂଚନା ଓ ଲୋକ ସମ୍ପର୍କ ମନ୍ତ୍ରୀ ଶ୍ରୀ ଶରତ କୁମାର କରଙ୍କ ଅଭିଭାଷଣ (୨୫/୫/୧୯୯୭) ।



ସୌଭାଗ୍ୟବନ୍ତ ମହାରଣା

ସବୁଠି ସର୍ଜନା ଭିତରେ
ଈଶ୍ୱରୀୟ ଐଶ୍ୱର୍ଯ୍ୟ ଖୋଜିବାକୁ
ଗହନ ମନରେ ଗୋପନ କୋଠରୀରେ
ଅନ୍ଧାର ଥାଏ ବୋଲି ମୁଁ ଜାଣି ନଥିଲି ।
ଅନ୍ଧାରର ରଙ୍ଗ କଳା ଥାଏ
ଜୀବନ ଓ ମୃତ୍ୟୁର  ସନ୍ଧିକ୍ଷଣରେ
କାଳିଆର ଛିଟିକୁ ପୁଚେଇ ଦେବାକୁ
ଆଲୁଅର ମୋହମାୟା ଭେଦି ।

ସବୁ ସୃଜନାୟନର ସଚିତ୍ର ପିଞ୍ଜରେ
ରଙ୍ଗର ଉତ୍ସବ ଓ
ବର୍ଣ୍ଣର ଅଜସ୍ର ବିଭବ
ମତେ ହିଁ ଗ୍ରାସିଛି ରୋମ ରୋମ ଭେଦି ।
କେଜାଣି କବିତାକୁ କୋଳେଇ ନେବାବେଳେ
କଳା ଠାକୁରଙ୍କ ରଙ୍ଗ ଭିତରେ
ହଜିଯାଏ ମୋ ଅନ୍ତରଙ୍ଗ କାବ୍ୟ ପୁରୁଷର ଛାଇ ।

ପ୍ରତିଟି ବିଶାୟନରେ
ରେଖା ବିନ୍ଦୁର ରହସ୍ୟ ଭେଦିବାକୁ
ରଙ୍ଗର ମହୋତ୍ସବରେ ଖେଳୁଥାଏ
ଚକା ଆଖିର ଚିନ୍ମୟ ଅନ୍ଧାର ।
ମୁଁ ସତେ କିଏ ଏ ବିବାଦୀୟ ବେଳାରେ
ଈଶ୍ୱରଙ୍କ ପାଖାପାଖି ଲୋକଟେ ସାଜିବାକୁ
ଅନ୍ଧାରରେ ନିଜ ଛାଇ ଖୋଜିବାକୁ ଜିଦ୍ ଧରିଛି ?

ହେ କଳା ଠାକୁର ! ତୁମ 'କଳା'କୁ ଚିହ୍ନିବ କିଏ ?
ବିଶ୍ୱସ୍ତ ଅନ୍ଧାରର ଆସା ଭିତରେ
ତୁମକୁ ଖୋଜିବା ସହଜ. ସ୍ମୃତିମୟ
ତୁମେ ଯେଣୁ ସଂପ୍ରୀତିର  ଅତୁଳା ବନ୍ଧନ ।
ଶତାବ୍ଦୀର ଏ ଅହଙ୍କାରୀ ହିଂସ୍ର ଆଲୁଅକୁ
ଜମା ଲୋଡ଼ା ନାହିଁ ପ୍ରଭୁ
ତୁମ ଚକାଆଖିର ଅନ୍ଧାର ଭିତରେ
ମିଶୁ ମୋ ହୃଦୟର ନିବିଡ଼ ସ୍ପନ୍ଦନ ।

ଜୀବନବୀମା କାର୍ଯ୍ୟାଳୟ, ବଲାଙ୍ଗିର-୭୬୭୦୦୧ ।





ଶ୍ରୀ ନୀଳଗିରି ରବି ସାହୁ


ଶ ଗଯ୍‌ଯୋଗ ନିଦ୍ରାଭିଭୂତାମ୍ବୁମଧ୍ୟେ,
ଭୁଜଙ୍ଗୀଶ୍ବରାଙ୍କେ ଶୟିତ୍ୱା ପ୍ରଶାନ୍ତେ ।
ଦଧାତୀତି ବିଶ୍ୱଂ ତ୍ୱମେବାସି ମୂଳମ୍,
ଜଗନ୍ନାଥ ଯାମି ତ୍ୱଦୀୟଂ ଶରଣ୍ୟମ୍ ॥୧॥

ସ୍ୱନାଭେର୍ଯସରୋଜାଜ୍ଜନ୍ ବେଧସଂ ଯୋ,
ଗଣେ କୈଟଭଂ ମଧ୍ୱରିଂ ଶ୍ୟମଲାଙ୍ଗଃ ।
ସମୁତ୍ପାଦ୍ୟ ମେଦୈଃ ସସର୍ଜ ପ୍ରପଞ୍ଚମ୍,
ଜଗନ୍ନାଥ ଯାମି ତ୍ୱଦୀୟଂ ଶରଣ୍ୟମ୍ ॥୨॥

ନିଗୂଢାର୍ଥତତ୍ତ୍ୱାଂଶ୍ଚ ବେଦସ୍ୟ ବକ୍ତୁମ୍,
ଦଦୌ ବେଦମାତୁ ପ୍ରଭାଂ ଯଜ୍ଞପାର୍ଶ୍ୱେ ।
ପ୍ରସନାସ୍ତି ଭାଷୈବ ସା ଶାରଦାଽସ୍ୟମ୍,
ଜଗନ୍ନାଥ ଯାମି ତ୍ୱଦୀୟଂ ଶରଣ୍ୟମ୍ ॥୩॥

ଜଗତ୍ପାଲନେ ଦେବତାଧିଷ୍ଠିତା ସ୍ୱୟଃ ,
ଯଥା ଯୋଗ୍ୟମାଗମ୍ୟ ସୋ ମେନ୍ଦ୍ରସୂର୍ଯ୍ୟାଃ ।
ପ୍ରଣଂସନ୍ତି ଗୀତ୍ୱା ସ୍ତୁତୀୟସ୍ୟ ନିତ୍ୟମ୍,
ଜଗନ୍ନାଥ ଯାମି ତ୍ୱଦୀୟଂ ଶରଣ୍ୟମ୍ ॥୪॥

ସ୍ୱଶକ୍ତିଂ ଦଧତ୍ୱାମଭାଗାଙ୍ଗ ବକ୍ଷ୍ୟାମ୍,
ସଦା କ୍ଷୀରସିନ୍ଧୌ ସଲକ୍ଷ୍ମୀଂ ବିଭାସି ।
ସ୍ମିତାସ୍ୟାରବିନ୍ଦାଞ୍ଚତାକ୍ଷଣାଂ ବିଳାସେ,
ଜଗନ୍ନାଥ ଯାମି ତ୍ୱଦୀୟଂ ଶରଣ୍ୟମ୍ ॥୫॥

କଳୌ ସାଗରସ୍ତୀରମାସାଦ୍ୟ ମୁକ୍ତେ,
ଗୃହୀତ୍ୱା ସ୍ୱମଧ୍ୟେ ସ୍ୱସାରଂ ସୁଭଦ୍ରାମ୍ ।
ସରାମଂ ବିରାଜସ୍ୱ ନୀଳାଚଳେ ତ୍ୱମ୍,
ଜଗନ୍ନାଥ ଯାମି ତ୍ୱଦୀୟଂ ଶରଣ୍ୟମ୍ ॥୬॥

ସୁରମ୍ୟଃ ରଥାରୂଢ଼ ଭକ୍ତାର୍ତ୍ତି ଲୋକାନ୍,
ଦୟାବ୍ଧୋ, ବୃହନ୍ନେବ ସନ୍ଦର୍ଶନେନ ।
ଉପାକର୍ଷ୍ୟ ବର୍ତ୍ତସ୍ୱ ମର୍ତ୍ତଂ ସୁସାକ୍ଷୀମ୍,
ଜଗନ୍ନାଥ ଯାମି ତ୍ୱଦୀୟଂ ଶରଣ୍ୟମ୍ ॥୭॥

ମନୁଷ୍ୟସ୍ୟ ବାତି ପ୍ରଳୟେ କଟାକ୍ଷେ,
ସମସ୍ତସ୍ୟ ପୁଣ୍ୟଂ ବିଶତ୍ୟଧ୍ୱରାଣାମ୍ ।
ତ୍ୱମେବାର୍ତ୍ତ ବନ୍ଧୁସ୍ତିତାପାଛିରୀଡ୍ୟଃ ,
ଜଗନ୍ନାଥ ଯାମି ତ୍ୱଦୀୟଂ ଶରଣ୍ୟମ୍ ॥୮॥


ଅଧ୍ୟାପକ, ସଂସ୍କୃତ ବିଭାଗ,
ମାଣିକେଶ୍ୱରୀ ମହାବିଦ୍ୟାଳୟ, ଥୁଆମୁଲ, ରାମପୁର ।




ଶ୍ରୀ ଗୌରାଙ୍ଗ ଚରଣ କର

ଦେବଭୂମି, ପୁଣ୍ୟଭୂମି ଉତ୍କଳର ଶଙ୍ଖ, ଚକ୍ର, ଗଦା, ପଦ୍ମ କ୍ଷେତ୍ର ସହ କେନ୍ଦ୍ରାପଡ଼ାର ତୁଳସୀ କ୍ଷେତ୍ର ବର୍ଣ୍ଣନା ବ୍ୟାସଦେବ କୃତ ବ୍ରହ୍ମତନ୍ତ୍ରାଦି ପୁରାଣ ଓ ପଦ୍ମ ପୁରାଣରେ ଦେଖିବାକୁ ମିଳେ । ପୁରୀ ଶଙ୍ଖ କ୍ଷେତ୍ର ବା ଶ୍ରୀକ୍ଷେତ୍ରରେ ଭଗବାନ ଶ୍ରୀକୃଷ୍ଣଙ୍କର ଦେହାବଶେଷ ଦାରୁବ୍ରହ୍ମ ବା ଦାରୁବିଗ୍ରହ ରୂପେ ପୂଜା ପାଉଥିବା ବେଳେ, ତୁଳସୀ କ୍ଷେତ୍ରରେ ଶ୍ରୀକୃଷ୍ଣାଗ୍ରଜ ବଳରାମଙ୍କର ମଣି ବିଗ୍ରହ ପୂଜା ହେଉଅଛନ୍ତି । ଶ୍ରୀମନ୍ଦିର ଅନୁକରଣରେ ଏଠାରେ ଶ୍ରୀବଳରାମଙ୍କ ସହ ଶ୍ରୀଜଗନ୍ନାଥ ଓ ଶ୍ରୀସୁଭଦ୍ରା ଦେବୀଙ୍କର ସମସ୍ତ ନୀତି ପାଳିତ ହୋଇଥାଏ । ରଥଯାତ୍ରା, ଚନ୍ଦନ, ଝୁଲଣ ପ୍ରଭୃତି ସମସ୍ତ ପର୍ବପର୍ବାଣୀ ଯଥାରୀତି ଅନୁଷ୍ଠିତ ହୋଇଥାଏ । ଶ୍ରୀମଦ୍ ଭାଗବତ (୧-୨-୧୧) ଅନୁସାରେ ପରମେଶ୍ୱରଙ୍କର ତ୍ରିରୂପ–ବ୍ରହ୍ମ, ପରମାତ୍ମା ଓ ଭଗବାନ ଅର୍ଥାନ୍ତରେ ବଳରାମ, ସୁଭଦ୍ରା ଓ ଜଗନ୍ନାଥ ଏହି ତ୍ରିମୂର୍ତ୍ତିର ପରିପ୍ରକାଶ । ତେଣୁ କ୍ଷେତ୍ରାଧିପତି ବଳରାମଙ୍କର ଏହି ତୁଳସୀ କ୍ଷେତ୍ର ବ୍ରହ୍ମକ୍ଷେତ୍ର ନାମରେ ମଧ୍ୟ ବିଦିତ ।

ଦ୍ୱାପର ଯୁଗର ବଳରାମ କଳି ଯୁଗରେ ମଣି ବିଗ୍ରହ ରୂପେ କିପରି 'ଶ୍ରୀସିଦ୍ଧ ବଳଦେବ' ନାମରେ ନାମିତ ହେଲେ 'ଶ୍ରୀସିଦ୍ଧଦାସ' ଉପାଖ୍ୟାନରୁ ପରିସ୍ଫୁଟ ହୁଏ, ଯାହାକି ଅଧିକାଂଶ ଜନସାଧାରଣଙ୍କ ନିକଟରେ ମଧ୍ୟ ଅଜ୍ଞାତ ହୋଇ ରହିଅଛି ।

ମହାଭାରତ ଯୁଦ୍ଧ ସମୟରେ ଶ୍ରୀବଳରାମ କୌଣସି ପକ୍ଷଭୁକ୍ତ ନହୋଇ ତୀର୍ଥ ପର୍ଯ୍ୟଟନରେ ଆସି ଯାଜପୁରଠାରେ ପହଞ୍ଚିଥିଲେ । ସେଠାରେ ଯାଜ୍ଞିକ ବ୍ରାହ୍ମଣମାନଙ୍କଠାରୁ ନିକଟବର୍ତ୍ତୀ ଲଳିତଗିରିରେ ବାସ କରୁଥିବା ଅତ୍ୟାଚାରୀ କନ୍ଦର ଦାନବର ଅତ୍ୟାଚାର କଥା ଶୁଣି, ସେମାନଙ୍କ ଅନୁରୋଧରେ କନ୍ଦରାକୁ ଯୁଦ୍ଧରେ ନିଧନ କରିଥିଲେ । କନ୍ଦରାର ନିଧନରେ ତା'ର ଏକମାତ୍ର କନ୍ୟା ତୁଳସୀ ଅତ୍ୟନ୍ତ ଶୋକାଭିଭୂତ ହୋଇ ମୂର୍ଚ୍ଛିତ ହୋଇ ଯାଇଥିଲେ । ବଳରାମ ତାଙ୍କୁ ଆଶ୍ୱାସନା ଦେଇ କନ୍ଦରାର ପୂର୍ବ ଜନ୍ମ ବୃତ୍ତାନ୍ତ କହିଥିଲେ । ପୂର୍ବ ଜନ୍ମରେ କନ୍ଦରା ତୁଳସୀର ଭୃତ୍ୟ ଥିଲା ଏବଂ ପର ଜନ୍ମରେ ତୁମ୍ଭେ ଅଭିଶାପ ଗ୍ରସ୍ତ ହୋଇ ତାହାକୁ ପିତା ରୂପେ ଲାଭ କରିଅଛ । ତତ୍‌ପରେ ପରମ ସୌନ୍ଦର୍ଯ୍ୟମୟୀ ରୂପବତୀ ତୁଳସୀ ନିଜର ସେବା ଅର୍ଚ୍ଚନାରେ ବଳରାମଙ୍କୁ ସନ୍ତୁଷ୍ଟ କରି ପତି ରୂପେ ପାଇବାକୁ ଆକୁଳ ନିବେଦନ କରିଥିଲେ । ବଳରାମ ତୁଳସୀର ନିବେଦନ ରକ୍ଷା କରି ପ୍ରତିଶ୍ରୁତି ଦେଇଥିଲେ କି, କଳିଯୁଗରେ ତୁମ୍ଭେ ବୃକ୍ଷତ୍ୱ (ତୁଳସୀ ବୃକ୍ଷ) ପ୍ରାପ୍ତ ହେବ ଓ ମୁଁ ମଣି ବିଗ୍ରହ ରୂପେ ତୁମ୍ଭଙ୍କୁ ଗ୍ରହଣ କରିବି । ତତ୍‌ପରେ ବଳରାମ କନ୍ଦରାର ମୁକ୍ତି ନିମିତ୍ତ ତା' ଶରୀରର ବିଭିନ୍ନ ଅଙ୍ଗ ପ୍ରତ୍ୟଙ୍ଗକୁ ଭିନ୍ନ ଭିନ୍ନ ଦିଗକୁ କ୍ଷେପଣ କରି ତଦନୁସାରେ ସେ ସବୁ ସ୍ଥାନର ନାମକରଣ କରି ସେଠାରେ ଦେବାଳୟମାନ ପ୍ରତିଷ୍ଠା କରାଇଥିଲେ । ଶିର ପଡ଼ିଥିବା ସ୍ଥାନକୁ ଅସୁରେଶ୍ୱର, ଗଣ୍ଠି ପଡ଼ିଥିବା ସ୍ଥାନର ନାମ ବଳଗଣ୍ଡି, ନାଭି–ଲାଭିଖଣ୍ଡ ଓ କନ୍ଦର ପଡ଼ିଥିବା ସ୍ଥାନ କେନ୍ଦ୍ରାପଡ଼ା ନାମରେ ବିଦିତ ବୋଲି ଐତିହାସିକ ତଥା ପୌରାଣିକ ଆଖ୍ୟାୟିକାରୁ ଜଣାପଡ଼େ । ଦ୍ୱାପର ଯୁଗର ଅବସାନ କାଳରେ ଶ୍ରୀକୃଷ୍ଣ ଶିଆଳୀ ଲଟା ବଣରେ ଦେହ ରଖିବା ଓ ଶ୍ରୀବଳରାମ ପାତାଳଗାମୀ ହେବା ମହାଭାରତ ଓ ଶ୍ରୀମଦ୍ ଭାଗବତ ଗ୍ରନ୍ଥରେ ବର୍ଣ୍ଣିତ ।

କଳିଯୁଗରେ ତୁଳସୀ, ବୃକ୍ଷତ୍ୱ ପ୍ରାପ୍ତ ହୋଇଥିଲେ ଏବଂ ତୁଳସୀ ବଣରେ ପରିପୂର୍ଣ୍ଣ ଏକ ବିସ୍ତୀର୍ଣ୍ଣ ଭୂଭାଗ 'ତୁଳସୀପୁର ଦଣ୍ଡା' ନାମରେ ଅଦ୍ୟାପି ଖ୍ୟାତ । ଏହି ତୁଳସୀ ବଣ ସନ୍ନିକଟ 'ମାଧବପୁର' ବର୍ତ୍ତମାନର ମାଧପୁର ଗ୍ରାମର ସ୍ୱପ୍ନେଶ୍ୱର ମହାପାତ୍ରଙ୍କର ଗୋ–ରକ୍ଷକ 'ସିଦ୍ଧଦାସ' ଏକଦା ଲକ୍ଷ୍ୟ କଲାକି ରୋହିଣୀ ନାମ୍ନୀ ଗାଈଠାରୁ ପ୍ରତିଦିନ ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ସ୍ୱତଃ କ୍ଷୀର ସ୍ରାବ ହେଉଅଛି । ତେଣୁ ସେ ଉକ୍ତ ସ୍ଥାନକୁ ଖନନ କରିବାରୁ ଗୋଟିଏ ଦିବ୍ୟ ମଣି ବିଗ୍ରହ ଆବିର୍ଭାବ ହୋଇଥିଲେ । ସିଦ୍ଧ ଦାସ ଏହି ଚିନ୍ମୟ ବିଗ୍ରହ ସ୍ୱପ୍ନେଶ୍ୱର ମହାପାତ୍ରଙ୍କୁ ପ୍ରଦାନ କରିଥିଲେ । ଶ୍ରୀ ମହାପାତ୍ର ସ୍ୱପ୍ନରେ ଏହା 'ବଳଦେବ' ଜାଣିପାରି ସେବା ପୂଜାର ବିହିତ ବ୍ୟବସ୍ଥା କରିଥିଲେ । ଅଦ୍ୟାବଧି ଶ୍ରୀଜୀଉଙ୍କର 'ମହାପାତ୍ର' ସେବକ ମଧ୍ୟ ଅଛନ୍ତି । ଶ୍ରୀବଳରାମଙ୍କର ପୂର୍ବ ପ୍ରତିଶ୍ରୁତି ଏହି ଅଲୌକିକ ଘଟଣାକୁ ଚିର ଉଦ୍‌ଜୀବିତ ରଖିବାକୁ ଏ ଯାବତ୍ ପ୍ରତି ବର୍ଷ କାର୍ତ୍ତିକ ଶୁକ୍ଳ ଦ୍ୱାଦଶୀରେ ତୁଳସୀ ବିବାହ ଓ କାର୍ତ୍ତିକ

ପୂର୍ଣ୍ଣିମା ଦିନ କ୍ଷେତ୍ର ପ୍ରତିଷ୍ଠା ଦିବସ ପାଳିତ ହୋଇ ଆସୁଅଛି ।

ଭକ୍ତ ଭଗବାନଙ୍କୁ ଚିହ୍ନାଏ । ଭକ୍ତ ଓ ଭଗବାନଙ୍କ ସମ୍ପର୍କ ଅତୀତ ନିବିଡ଼ । ସିଦ୍ଧ ଦାସଙ୍କ ଦ୍ୱାରା ବିଗ୍ରହ ଆବିର୍ଭାବ ହୋଇ ଲୋକଲୋଚନକୁ ଆସିଥିବାରୁ ଶ୍ରୀଜୀଉ ସିଦ୍ଧ ବଳଦେବ ନାମରେ ସେହିଦିନୁ ନାମିତ । ଯଥାର୍ଥରେ ସିଦ୍ଧ ଦାସ 'ଆଦି ଭକ୍ତ', ଯେ କି ସର୍ବ ପ୍ରଥମେ କଳିଯୁଗରେ ଭଗବାନ ବଳରାମଙ୍କୁ ମଣି ବିଗ୍ରହ ରୂପେ ପ୍ରକଟିତ କରାଇ ଆସମାନଙ୍କର ପରମ ଆରାଧ୍ୟ ଦେବତା ରୂପେ ସଂସ୍ଥାପିତ କରି ଯାଇଅଛନ୍ତି । ଯେଉଁ ସ୍ଥାନରୁ ବିଗ୍ରହ ଆବିର୍ଭାବ ହୋଇଥିଲେ ସେହି ଖୋଦିତ ସ୍ଥାନରେ ନିର୍ମିତ ପବିତ୍ର ପୁଷ୍କରୀଣି 'ସିଦ୍ଧ ପୁଷ୍କରୀଣି' ଓ ତତ୍ ସଂଲଗ୍ନ ଭୂମୀ ସିଦ୍ଧ ଦାସ ପୀଠ ନାମରେ ତୀର୍ଥ ସ୍ଥାନ ରୂପେ ପରିଗଣିତ । ଅଶୋକାଷ୍ଟମୀ ଦିନ ବିଭିନ୍ନ ଗ୍ରାମରୁ ବହୁ ସଂଖ୍ୟାରେ ନରନାରୀ ଏଠାରେ ସ୍ନାନ ତର୍ପଣ କରିବା ଏବେ ମଧ୍ୟ ପ୍ରଚଳିତ । ଏଠାରେ ସିଦ୍ଧ ଦାସଙ୍କ ପ୍ରସ୍ତର ବିଗ୍ରହ ଗୋଟିଏ ନାତିଉଚ୍ଚ ମନ୍ଦିରରେ ପୂଜା ପାଉଅଛନ୍ତି । ସନ୍ଥ ଶ୍ରୀ ରାମଦାସ ବାବାଜୀ ମହାରାଜ ନାମକ ଜନୈକ ବଙ୍ଗୀୟ ସାଧୁ ତୀର୍ଥ ପର୍ଯ୍ୟଟନରେ ଆସି ଏହି ତୀର୍ଥ ପରିଦର୍ଶନ କାଳରେ ସେଠାରେ 'ଧୁଠ ପଥର' ହୋଇ ବ୍ୟବହୃତ ହେଉଥିବା ଏକ ପ୍ରସ୍ତର ଉନ୍ମୋଚନ କରି ତହିଁରେ ଶ୍ରୀବଳରାମଙ୍କର ପାଦପଦ୍ମ ଚିହ୍ନ ଆବିଷ୍କାର କରିଥିଲେ ଏବଂ ସଂଲଗ୍ନ ଗୋପ ଗ୍ରାମବାସୀଙ୍କ ଦ୍ୱାରା ଛୋଟ ମନ୍ଦିରଟି ନିର୍ମାଣ କରାଇ ଏହାକୁ ପ୍ରତିଷ୍ଠା କରିଥିଲେ । ସେହି ଦିନଠାରୁ ପ୍ରତିବର୍ଷ ମାଘ କୃଷ୍ଣ ଦ୍ୱାଦଶୀ ଦିନ ପାଦପଦ୍ମ ଉତ୍ସବ ପାଳିତ ହୋଇ ଆସୁଛି ।

## ଅବସ୍ଥିତି :

କେନ୍ଦ୍ରାପଡ଼ା ସହର ଆରମ୍ଭରୁ ୪ କି.ମି. ଦୂର ପୂର୍ବରେ, ଭଗବାନପୁର ଗ୍ରାମର ଦକ୍ଷିଣ-ପଶ୍ଚିମ ସୀମାରେ ମୁଖ୍ୟ ରାସ୍ତାଠାରୁ ପ୍ରାୟ ୨୦୦ ଗଜ ଦୂରରୁ ଏହି 'ସିଦ୍ଧ ଦାସ' ପୀଠ ଦୃଶ୍ୟମାନ । ଏହାର ପଶ୍ଚିମରେ 'ଗୋପ' ଗ୍ରାମ ସଂଲଗ୍ନ । ଉତ୍ତରରେ ମୁଖ୍ୟ ରାସ୍ତାରେ ତୁଳସୀ ରାଣୀ ଦେବୀ ମନ୍ଦିର (ସୋନ ମଙ୍ଗଳା ନାମରେ ପରିଚିତ), ଦକ୍ଷିଣରେ ପ୍ରାଚୀନ ଅମରେଶ୍ୱର ଶିବ ମନ୍ଦିର ପୀଠର ଉତ୍କର୍ଷତା ସାଧନ କରୁଛି ।

## ବର୍ତ୍ତମାନର ସ୍ଥିତି :

ଇଂରେଜ ଶାସନ କାଳରେ ଏହି ପୀଠ ଜମିଦାରଙ୍କ ଅଧୀନ 'ଖାସ' କିସମରେ ଥିଲା । ସ୍ୱାଧୀନତା ପରେ ଜମିଦାରୀ ଉଚ୍ଛେ ହେବାରୁ ଏହା ଓଡ଼ିଶା ସରକାରଙ୍କ ଅଧୀନକୁ ଗଲା । କାଳକ୍ରମେ ମାଛ ଚାଷ ନିମିତ୍ତ ବିଭିନ୍ନ ରାସାୟନିକ ସାର, ଗୋବର, ପଚ୍ଚ ପଦାର୍ଥମାନ ପ୍ରୟୋଗ କରାଯିବା ଦ୍ୱାରା ପୁଷ୍କରୀଣିର ଜଳ ଅ ଜନ ଉପଯୋଗୀ ନହୋଇ, ଦଳପୂର୍ଣ୍ଣ ପୂତି ଗନ୍ଧମୟ ଏ ଅନାମଧେୟ ଜଳାଶୟରେ ପରିଣତ ହେଲା । ଏକ ଲୋକମାନେ ଅନ୍ତରର ଗଭୀର ଶ୍ରଦ୍ଧା ଓ ଭକ୍ତିରେ ପୁଣ୍ୟ ସ୍ନା କରୁଥିବା ପବିତ୍ର ପୁଷ୍କରୀଣିରେ ପରିବର୍ତ୍ତିତ ସ୍ଥିତିରେ ପାଦ ସ୍ପର୍ଶ କରିବାକୁ କୁଣ୍ଠାବୋଧ କଲେ । ସଂସ୍କୃତିର ଅବମୂଲ୍ୟାୟନ ହେତୁ ଜନସମାଜର ଚିନ୍ତା ଓ ଚେତନାରୁ ପୂର୍ବର ସ୍ମୃତି ବିଲୁପ୍ତ ପ୍ରାୟ । ଐତିହାସିକମାନଙ୍କ ଗବେଷଣାର ବିଷୟବସ୍ତୁ ନିମିତ୍ତ 'ଆଦି ଭକ୍ତ 'ସିଦ୍ଧ ଦାସ' ଉପାଖ୍ୟାନ ରହିଗଲା ରହସ୍ୟାବୃତ୍ତ ହୋଇ 'ଶ୍ରୀସିଦ୍ଧ ବଳଦେବ'ଙ୍କ ସହ ।

ଯାହା ହେଉ ନା କାହିଁକି, ବିଳମ୍ବରେ ହେଲେ ବି କିଛି ଲୋକଙ୍କ ଆଖି ଖୋଲିଦେଲା ୩/୪ ବର୍ଷ ପୂର୍ବେ ସ୍ଥାନୀୟ ଉତ୍ସାହୀ ଯୁବକମାନଙ୍କ ଉଦ୍ୟମରେ 'ଶ୍ରୀସିଦ୍ଧ ଦାସ ସ୍ମୃତି ପରିଷଦ' ନାମରେ ଗୋଟିଏ ପଞ୍ଜିକୃତ ସ୍ୱେଚ୍ଛାସେବୀ ଅନୁଷ୍ଠାନ ଗଠନ କରାଯାଇ ଏହି ପୁଣ୍ୟ ପୁଷ୍କରୀଣି ସମେତ ସମଗ୍ର ସିଦ୍ଧ ଦାସ ପୀଠର ଉନ୍ନତି ନିମିତ୍ତ ଏକ ଦୀର୍ଘ ମିଆଦି ଯୋଜନା ପ୍ରସ୍ତୁତ କରାଗଲା । ପ୍ରଥମ ପର୍ଯ୍ୟାୟରେ ପୁଷ୍କରୀଣିଟିକୁ ପରିଷ୍କାର କରାଇ ଜନସାଧାରଣଙ୍କ ବ୍ୟବହାର ଉପଯୋଗୀ କରାଯାଇଅଛି । ଏହାର ପୂର୍ବ ପରିବେଶ ଫେରାଇ ଆଣିବା ନିମିତ୍ତ ଏହି ବର୍ଷା ଋତୁରେ ବ୍ୟାପକ ବୃକ୍ଷ ରୋପଣ କାର୍ଯ୍ୟକ୍ରମ ଅଗ୍ରାଧିକାର ଭିତ୍ତିରେ କରାଯିବାକୁ ସ୍ଥିର ହୋଇଅଛି । ସବୁ ସ୍ତରରୁ ସମସ୍ତଙ୍କର ପୂର୍ଣ୍ଣ ସହଯୋଗ ମିଳିଲେ ଶ୍ରୀସିଦ୍ଧ ଦାସ ସ୍ମୃତି ପରିଷଦର ସ୍ୱପ୍ନ ସାର୍ଥକ ହୋଇ ଆଗାମୀ ଦିନରେ ଏହି ପବିତ୍ର ପୀଠ ସର୍ବାଙ୍ଗ ସୁନ୍ଦର ହେବା ସାଙ୍ଗକୁ ପର୍ଯ୍ୟଟକମାନଙ୍କ ନିମିତ୍ତ ଏହା ଏକ ଉତ୍ତମ ଦର୍ଶନୀୟ ସ୍ଥଳ ହୋଇପାରିବ, ସେଥିରେ ସନ୍ଦେହ ନାହିଁ । ଏଥିପାଇଁ ସମସ୍ତଙ୍କର ନିଷ୍ଠାପର ସହଯୋଗ ଆବଶ୍ୟକ ।

*ଭଗବାନପୁର,*
*କେନ୍ଦ୍ରାପଡ଼ା, କଟକ ।*






ଜୟପୁର ରାଜା ଧାର୍ମିକ ପ୍ରବର
କାଳିଆ ଠାକୁର ଦର୍ଶନ ପାଇଁ,
ସହଧର୍ମିଣୀ ଗହଣେ ଗମିଲେ
ଜଗନ୍ନାଥ ନାମ ମୁଖରେ ଗାଇ ।
'ଜୟଜଗନ୍ନାଥ' ଭଜିର ଭକତ
ପଥ ମୁଖରୀତ ସଭିଙ୍କ ସ୍ୱରେ,
ବିତରି ରାଜା ଅମାପ ସମ୍ପତ୍ତି
ଜଗନ୍ନାଥ ନାମେ ଦୁଃଖୀ ଜନରେ ।
ବିତିଯାଏ ଦିନ ସରିଆସେ ପଥ
ନୀଳାଚଳ ହୁଏ ପାଖରୁ ପାଖ,
ଜଗନ୍ନାଥ ଛବି ନାଚିଉଠେ ନେତ୍ରେ
ରାଜନ ଡାକନ୍ତି ଭକ୍ତିରେ ଡାକ ।
ଠାକୁର ଦର୍ଶନେ ମଣିମା ବ୍ୟାକୁଳ
ମନ ପ୍ରାଣ ତାଙ୍କ କାଳିଆ ପାଶେ,
ସଙ୍ଗ ପରିଜନ ଆନନ୍ଦେ ବିଭୋର
ଆସିବାରୁ ଭୁଲି ସେ ପରବାସେ ।
ଏକି କଥା ହେଲା 'ମହାମାରୀ' ହେଲା
ରାଜା ରହିଗଲେ ଏକାକୀ ହୋଇ,
ଆସିଥିଲେ ଯେତେ ରାଜାଙ୍କର ସାଥେ
ମଶାଣୀରେ ଗଲେ ଅକାଳେ ଶୋଇ ।
ଅନ୍ତରେ ପ୍ରାର୍ଥନା କରିଲେ ରାଜନ
ଏକି କଥା କଲ ଜଗତନାଥ,
ଦରଶନ ତୁମେ ଦେବନିକି ପ୍ରଭୁ
ମନେ ଭାବିଛକି ହେ ଲକ୍ଷ୍ମୀକାନ୍ତ ।

ଆସିଥିଲି ଧାଇଁ ତୁମ ଦେଖା ପାଇଁ
ଛାଡ଼ି ରାଜପୁରୀ ମୋ ପରିବାର,
ଦରଶନ କରି ତୁମ ଶ୍ରୀମୂରତୀ
ହୋଇଥାନ୍ତି ପାପ ପଙ୍କରୁ ପାର ।
ଭକତର ଡାକ ଶୁଣିଲେ ଠାକୁର
ବୃଦ୍ଧ ବ୍ରାହ୍ମଣର ବେଶରେ ଆସି,
ପଞ୍ଚରଙ୍ଗୀ ଯଷ୍ଟି ଅର୍ପିଲେ ରାଜାଙ୍କୁ
କହିଲେ ତୋ ବିଘ୍ନ ଦେବ ଏ ନାଶି ।
ତୋ'ଭକ୍ତିରେ ଭୋଳ କାଳିଆ ସାଆନ୍ତ
ଚାଲ ରାଜା ଚାଲ ଶ୍ରୀନୀଳାଚଳେ,
କରିବୁ ଦର୍ଶନ ପ୍ରଭୁ ଲକ୍ଷ୍ମୀକାନ୍ତ
ତୋ'ର ଭକ୍ତି ଆଉ ନିଷ୍ଠାର ଫଳେ ।
ସାଥେ ଯିଏ ତୋ'ର ଥିଲେରେ ଗୋଡ଼ାଇ
ନଥିଲା ତାଙ୍କର ଠାକୁରେ ମନ,
ସେ ପାଇଁ ଅକାଳେ ମହାମାରୀ ଜାଣ
ଯମପୁର ଗଲେ ସେ ସର୍ବଜନ ।
ବୃଦ୍ଧଙ୍କ ଚରଣେ ପ୍ରଣମିଲେ ରାଜା
ନୀଳାଚଳେ ଗଲେ ସେ ଯଷ୍ଟିକରେ,
ବଡ଼ ଦେଉଳରେ ପରବେଶି ରାଜା
ଗଡ଼ିଗଲେ ଦିଅଁ ଚରଣ ତଳେ ।

(ଉତ୍କଳ ପ୍ରସଙ୍ଗ ରଥଯାତ୍ରା ବିଶେଷାଙ୍କ ୧୯୮୨ରେ ପଣ୍ଡିତ ଶ୍ରୀ ସଦାଶିବ ରଥଶର୍ମାଙ୍କ 'ରାଜାଧିରାଜ ଜଗନ୍ନାଥ' ଶୀର୍ଷକ ପ୍ରକାଶିତ ପ୍ରବନ୍ଧର ଛାୟାରେ ।)

*ଉପଜିଲ୍ଲାପାଳଙ୍କ କାର୍ଯ୍ୟାଳୟ,*
*ଗାଃପୋଃ-ବୌଦ୍ଧ, ଜି-ଫୁଲବାଣୀ ।*

# ଗୀତୋକ୍ତ ପୁରୁଷୋତ୍ତମ ଶ୍ରୀଜଗନ୍ନାଥ ପ୍ରଭୁ: ଏକ ଅଧ୍ୟୟନ



ରାଜକିଶୋର ରାୟ

ଶ୍ରୀକୃଷ୍ଣ ଶ୍ରୀମଦ୍ ଭଗବଦ୍ ଗୀତାରେ କହିଛନ୍ତି–'ମୁଁ ପୁରୁଷୋତ୍ତମ (ମାଂ ବିଦ୍ଧି), ମୁଁ ସର୍ବସକଳର ଉପରେ ଅଧିଷ୍ଠିତ, ତଥାପି ଏହି ସମସ୍ତ ମଧ୍ୟ ଦେଇ ଏବଂ ଏହି ମାନଙ୍କର ପାରସ୍ପରିକ ସମ୍ବନ୍ଧର ସହାୟତାରେ ମତେ ସନ୍ଧାନ କରିବାକୁ ହେବ, ଜାଣିବାକୁ ପଡ଼ିବ, ମଣିଷର ଚେତନା ଯେ ମତେ ଫେରି ପାଇବାର ପଥ ଖୋଜୁଛି, ତାହା ପକ୍ଷରେ ଏହାହିଁ ଏକମାତ୍ର ସାଧନା ।

ଉପନିଷଦ ଏକାଧିକବାର "ତଦ୍ ବ୍ରହ୍ମ" ଏହି ବାକ୍ୟ ବ୍ୟବହାର କରିଛି । ଏଥିରେ ଆତ୍ମାର ଅକ୍ଷର ପ୍ରତିଷ୍ଠାକୁ ବୁଝାଯାଇଛି । ଏଥିପାଇଁ ଭଗବାନଙ୍କର ଶ୍ରେଷ୍ଠ ଆତ୍ମାଭିବ୍ୟକ୍ତି ।

ଜଗତରେ ଜନ୍ମଗ୍ରହଣ କରି ମାନୁଷ ପ୍ରକୃତି କର୍ମର ବିଧାର ଯୋଗୁଁ ଜଗତରୁ ଜଗତାନ୍ତର ଗମନାଗମନ କରେ । ପୂର୍ବଜନ୍ମରେ ଯେ ଯାହା ଥିଲା, କରିଥିଲା, ସେହି ସବୁ ଦ୍ୱାରା ତାହାର ବର୍ତ୍ତମାନ ଜନ୍ମ ନିର୍ଦ୍ଧାରିତ ହୋଇଛି । ପୁଣି ଏହି ଜନ୍ମରେ ମୃତ୍ୟୁକାଳ ପର୍ଯ୍ୟନ୍ତ ଯେ ଯେପରି ଭାବରେ ରହିବେ, ଯିମିତି ଭାବିବେ, ଯେପରି କର୍ମ କରିବେ ସେହି ପ୍ରକାରରେ ନିର୍ଦ୍ଧାରିତ ହେବ ସେ ପରଲୋକରେ କିପରି ରୂପ ଧାରଣ କରିବେ ଏବଂ ପରଜନ୍ମରେ କଅଣ ହେବେ ।

ଜନ୍ମ ଯଦି 'ହୋଇବା', ତାହାହେଲେ ମୃତ୍ୟୁ ବି 'ହୋଇଯିବା', ମୃତ୍ୟୁ ଅପ୍ରତିହନ୍ତ ରହେ । ଶରୀର ପରିତ୍ୟକ୍ତ ହୁଏ କିନ୍ତୁ ଜୀବାତ୍ମା ନିଜ ପଥରେ ଚଳମାନ ଥାଏ । ଅତଏବ୍ ତାହାର ମହାଯାତ୍ରାର ସନ୍ଧିକ୍ଷଣରେ ସେ କିଁରୂପ ରହିଥାଏ, ଏହା ଉପରେ ସବୁ ନିର୍ଭର କରେ । କାରଣ ଯେ ରୂପ ଚେତନାରେ ଧରେ, ତାହାର ଚିତ୍ତ ମୃତ୍ୟୁ କାଳରେ ନିବିଷ୍ଟ ଥାଏ ଏବଂ ମୃତ୍ୟୁର ପୂର୍ବ ମୁହୂର୍ତ୍ତରେ ଯାହା ସେନି ଚିନ୍ତା ପୂର୍ଣ୍ଣ ଥିଲା, ତାହାକୁ ସେହି ରୂପ ପ୍ରାପ୍ତ ହୁଏ । କାରଣ ପ୍ରକୃତି କର୍ମ ଦ୍ୱାରା ଜୀବାତ୍ମାର ଚିନ୍ତା ଓ ବ୍ୟକ୍ତି ସକଳର ବିକାଶ କରେ ।

ଅତଏବ ମାନବାତ୍ମା ଯଦି ପୁରୁଷୋତ୍ତମର ପଦ ଲାଭ କରିପାରେ, ତାହାହେଲେ ତା'କୁ ଦୁଇଟି ସର୍ତ୍ତ ପାଳନ କରିବାକୁ ପଡ଼ିବ । ପାର୍ଥିବ ଜୀବନରେ ତାହାର ସମଗ୍ର ଅନ୍ତର୍ଜୀବନକୁ ଏହି ଆଦର୍ଶରେ ଗଠନ କରିବାକୁ ହେବ ଏବଂ ମୃତ୍ୟୁକାଳରେ ବି ତାହାର ସେହି ଆଦର୍ଶ ଓ ଆକାଂକ୍ଷାକୁ ଧରି ରଖିବାକୁ ହେବ । ଶ୍ରୀକୃଷ୍ଣ କହିଛନ୍ତି : ଯେ କେହି ଅନ୍ତିମକାଳେ ମତେ ଅନୁସରଣ ପୂର୍ବକ ତାହାର ଦେହତ୍ୟାଗ କରେ ସେ ମୋର ଭାବ ଅର୍ଥାତ୍ ପୁରୁଷୋତ୍ତମର ଭାବ ପ୍ରାପ୍ତହୁଏ ।

"ଅନ୍ତକାଳେ ଚ ମାମେବ ସ୍ମରଣମୁକ୍ତ୍ୱା

କଳେବରମ୍

ଯଃ ପ୍ରୟାତି ସ ମଦ୍‌ଭାବଂ ଯାତି ନାସ୍ତ୍ୟତ୍ର

ସଂଶୟଃ"

ଭଗବାନର ମୂଳ ସତ୍ତା ସହିତ ସେ ମିଳିତ ହୁଏ । ଏହାହିଁ ଜୀବାତ୍ମାର ଚରମ ଗତି । ଶ୍ରୀକୃଷ୍ଣ ପୁଣି କହିଲେ, ମତେ ସବୁ ସମୟରେ ସ୍ମରଣ କର, ଅର୍ଜୁନ ଏବଂ ଯୁଦ୍ଧ କର, କାରଣ ଯଦି ତମର ମନ ବୁଦ୍ଧି ସମସ୍ତ ସର୍ବଦା ମୋ ଉପରେ ନିବଦ୍ଧ ରଖି ପାର ଏବଂ ମୋଠାରେ ଅର୍ପଣ କରିପାର, 'ମର୍ଯ୍ୟାର୍ପିତମନୋବୁଦ୍ଧିଃ' ତାହା ହେଲେ ନିଶ୍ଚୟ ତୁମେ ମତେ ପ୍ରାପ୍ତ ହେବ ।

ଏହି ପରମପୁରୁଷ ପରମାତ୍ମାହିଁ ସ୍ରଷ୍ଟା ।

ଆଧ୍ୟାତ୍ମିକ ବିନାଶ ଦ୍ୱାରା ଭକ୍ତି ଜ୍ଞାନର ସହିତ ଏକୀଭୂତ ହୁଏ । ଜୀବ କ୍ରମଶଃ ଏକମାତ୍ର ଭଗବାନ ସ୍ମରଣେ ଆନନ୍ଦ ଲାଭ କରେ ସେ ଜାଣେ ଯେ ଭଗବାନ ହିଁ ସକଳ ସତ୍ତା ଓ ଚେତନା ଓ ଆନନ୍ଦ, ସେ ଭଗବାନ ହିଁ ସକଳ ବସ୍ତୁ । ସକଳ ଜୀବ, ସକଳ ଘଟଣା । ସେ ପ୍ରକୃତିର ମଧ୍ୟରେ ଭଗବାନଙ୍କୁ ଜାଣେ, ଆତ୍ମାରେ ଭଗବାନଙ୍କୁ ଜାଣେ, ପୁଣି ଭଗବାନ ଯେ ଆତ୍ମା ଓ ପ୍ରକୃତିର ଅତୀତ, ତାହାବି ଅବଗତ ହୁଏ । ସେ ସର୍ବଦା ଭଗବାନଙ୍କ ସହିତ ଯୋଗସ୍ଥ ହୁଏ, ନିତ୍ୟଯୁକ୍ତଃ । ଯେ ବିଶ୍ୱାତୀତ ସତ୍ତାର ଉପରେ ଆଉ କିଛି ନାହିଁ, ଯେ ବିଶ୍ୱବ୍ୟାପୀ ସତ୍ତା ଭିନ୍ନ ଆଉ କେହି ନାହିଁ, କିଛି ନାହିଁ, ତାହାରି ଉପରେ ତା'ର ସକଳ ଭକ୍ତି ଏକାନ୍ତ ଭାବେ ନିବଦ୍ଧ ହୁଏ, କୌଣସି

ମତବାଦ ଓ ଅଂଶ ବିଶେଷ ଉପରେ ନୁହେଁ । ସେ ସକଳ ସାମ୍ପ୍ରଦାୟିକ ଧର୍ମମତ ଓ ବିଶ୍ୱାସର ଊର୍ଦ୍ଧ୍ୱରେ ଉପନୀତ ହୁଏ, ସକଳ ନୈତିକ ବିଧି ନିଷେଧ ଉପରେ, ବ୍ୟକ୍ତିଗତ ସମସ୍ତ ବାସନା କାମନା ଉପରକୁ ଉଠିଯାଏ । ଯେତେବେଳେ ତା'ର ସୁଖ ଦୁଃଖ ଅନୁଭବ ରହେନାହିଁ, ତେଣୁ ଉପଶମର ପ୍ରଶ୍ନ ଉଠେ ନାହିଁ, କାରଣ ସେ ସମସ୍ତ ଆନନ୍ଦର ଆଧାରକୁ ଲାଭ କରିଛି । କୌଣସି ବାସନା ତୃପ୍ତି ପାଇଁ ସେ ଲାଳାୟିତ ରହେନାହିଁ, କାରଣ ସେ ଯାହା ଲାଭ କରିଛି, ସେ ସର୍ବୋପରି ଅଧିଷ୍ଠିତ ।ତା'ର କୌଣସି ସଂଶୟ, କୌଣସି ଜ୍ଞାନ ପିପାସା ଅବଶିଷ୍ଟ ରହେନାହିଁ । ସେ ଦିବ୍ୟ ଜ୍ୟୋତି ମଧ୍ୟରେ ବାସକରେ । ଭଗବାନ ହିଁ ତା'ର ପ୍ରିୟ ।

ଏହି ତୁରୀୟ ଅବସ୍ଥା ହିଁ ବ୍ରହ୍ମ ଭାବ । ବେଦାନ୍ତର ପ୍ରଖ୍ୟାତ ଏହି ଅନୁଶାସନ କଳିଯୁଗରେ ଶ୍ରୀଜଗନ୍ନାଥ ବିଗ୍ରହରେ ଭାସ୍ୱନ୍ ।

ଶ୍ରୀଜଗନ୍ନାଥ ଏକ ବିଗ୍ରହ ବା ରୂପ ନୁହଁନ୍ତି । ଏଥିରେ ଅନନ୍ତର ଲୀଳା, ଶ୍ରୀକୃଷ୍ଣ ଶ୍ରୀରାମଚନ୍ଦ୍ର ଏମାନେ ରୂପଧାରୀ, ଏ ରୂପ ସର୍ଜନରେ ବିଶ୍ୱଲୀଳାର ଗୂଢ଼ତୂର୍ଯ୍ୟ ପ୍ରକଟିତ ହୋଇଛି ଦୁଷ୍ଟ ନିବାରଣ ଓ ସଜ୍ଜନ ପାଳନରେ । ମାତ୍ର ଶ୍ରୀଜଗନ୍ନାଥ ଚେତନାରେ ଧର୍ମର କୌଣସି ନିର୍ଦ୍ଦିଷ୍ଟ ମତବାଦ ଓ ସାମ୍ପ୍ରଦାୟିକତାର ସଂକୀର୍ଣ୍ଣଭାବାବେଶ ନାହିଁ । ଏଥିରେ ସର୍ବକାଳ, ସର୍ବ ପରିଧି, ସର୍ବ ଚିନ୍ତନ, ସର୍ବ କ୍ରିୟା, ସର୍ବ ଭିନ୍ନ ଦୃଷ୍ଟି ଏକାସାରେ, ସମନ୍ୱୟରେ, ସାମଗ୍ରିକତାରେ, ବିଶ୍ୱଜନୀନତାରେ ଅବଲୁପ୍ତ ହୋଇଛି । ଅଥଚ୍ ତନ୍ମାଯୀଏରେ ସବୁର ଇଙ୍ଗିତ ପରିସ୍ଫୁଟ ।

ଏ ଭାବକୁ ଉପଲବ୍ଧି କରିବା କଠିନ । କାରଣ ବିରୂପରେ ବିଖଣ୍ଡରେ ରୂପତତ୍ତ୍ୱ ସନ୍ନିତ କରି ଶ୍ରୀଜଗନ୍ନାଥ ଓ ଅନ୍ୟ ଦୁଇ ବିଗ୍ରହକୁ ବ୍ରହ୍ମ ଚେତନାରେ ବିଭୂତି ସମ୍ପନ୍ନ କରି ହୃଦଙ୍ଗମ କରିବା ଭକ୍ତ ପକ୍ଷରେ ଅସମ୍ଭବ ମନେହୁଏ । ଯାହା ଦୃଶ୍ୟ ହୁଏ, ତାହା କେବଳ ଯାନିଯାତ୍ରୀ ଅଟେ । ପରେ ପରିଶୋଭିତ ହୋଇଛି ଯାହାର ଶ୍ରେଷ୍ଠ ନିଦର୍ଶନ ଆଜିର ଶ୍ରୀଗୁଣ୍ଡିଚ୍ଚା ବା ଘୋଷଯାତ୍ରା ।

ତଥାପି ଜ୍ଞାନ ଭକ୍ତ ଯେ ସେ ପୁରୁଷୋତ୍ତମର ଆତ୍ମସତ୍ତା ଓ ଲୀଳାକୁ ଆଶ୍ରୟ କରି ତାହା ସହିତ ସେ ଯୁକ୍ତ । ଜୀବର ବିଶ୍ୱଲୀଳା ସେତିକିବେଳେ ସାର୍ଥକ ହୁଏ । ଯେତେବେଳେ ସେ ନିଜକୁ ଛାଡ଼ି ଉପରକୁ ଉଠେ, ଜୀବନର ପୂର୍ବତମ ଉଚ୍ଚତମ ସତ୍ୟକୁ ଲାଭ କରେ ।

*ବଜ୍ରଗଞ୍ଜ,*
*ଶ୍ରୀକ୍ଷେତ୍ର ।*



ଓଡ଼ିଶା କର୍ମଜୀବୀ ସାମ୍ବାଦିକ ସଙ୍ଘର କର୍ମକର୍ତ୍ତାମାନଙ୍କ ସହିତ ସୂଚନା ଓ ଲୋକ ସମ୍ପର୍କ ମନ୍ତ୍ରୀଙ୍କ ଆଲୋଚନା ।




ସବୁରି ଭିତରେ ଯେ ତୋତେ ଦେଖେ
ଏବଂ ତୋ'ଭିତରେ ସବୁକୁ ଦେଖେ
ସେ ହିଁ କାଳିଆ ତୋ'ସ୍ମୃତିରେ ରହିପାରେ
ତୋ'ପରି ନାଉରିଆ ପାଇ
ନିର୍ବିଘ୍ନରେ ସଂସାରର ମାୟାବୀ ସମୁଦ୍ର ଲଂଘିପାରେ ।

ଏ ପୃଥିବୀ ପରି କୋଟିଏ ପୃଥିବୀ, ସୂର୍ଯ୍ୟ, ଚନ୍ଦ୍ର, ତାରା
ନାଚୁଅଛି ତୋ'ଇଙ୍ଗିତରେ, ନିଜସ୍ୱ ଇଚ୍ଛାରେ
ତୁ କିନ୍ତୁ ନାଚୁଥାଉ, ବାନ୍ଧିହୋଇ ଯାଉ
ଭକ୍ତର ଭକ୍ତ–ରଜ୍ଜୁରେ,
କାଳକାଳ ପାଇଁ ପ୍ରତିଟି ଯୁଗରେ ।

ହୁଏତ ଅଯୁତ ଜନ୍ମର ପୁଣ୍ୟ ଦରକାର ମୋର
ଦାସିଆ ହୋଇ ତୋ'ହୃଦୟରେ ଛବି ହେବା ପାଇଁ,
ମୁଁ ତ ତୋତେ ଭୁଲି, ଜୀବନ ପଥରେ ଧାଇଁ
ପାଇଛି ଯା' ଯନ୍ତ୍ରଣାର ନୀଳ ବିଷ ଓ ତିକ୍ତତା
ମୁଁ କେମିତି ଜାଣିବି କହ
ତୋ' ପଦ୍ମ ପାଦର ଦିବ୍ୟ ଶୀତଳତା
ତୋ' ଚକାଆଖିରୁ ଝରୁଥିବା
କରୁଣାର ବର୍ଷାର ସାନ୍ଦ୍ରତା ?

ଲଗାମଛଡ଼ା ଏ ଅଣ୍ଡାରୀ ମନମୋର
ଝୁରିଝୁରି କେଉଁଆଡ଼େ ଦୌଡ଼ିଯାଏ ଜାଣିହୁଏ ନାହିଁ,
କ୍ଳାନ୍ତ, ଅଶାନ୍ତ ପଥିକ ମୁଁ, ମାଗେ ଆଜି ତୋତେ ଗୁହିଁ
ମୋ ପ୍ରାଣ, ଆହାର ରଥ ଗଡ଼ିଯାଉ
ତୋ' ଭକ୍ତ–ଶରଧା ବାଲି, ବଡ଼ଦାଣ୍ଡ ଛୁଇଁ,
ତୋ' ବିନା ମୋ ସ୍ଥିତି କାହିଁ, ଗତି କାହିଁ,
ଏ ହୀନ ଅସ୍ତିତ୍ୱ ମୋର ମିଶିଯାଉ ତୋ ସୌମ୍ୟକାନ୍ତିରେ
ତୁ'ତ' ପତିତପାବନ, ଆସେ କର ନଇ .
ମୋ ମୁକତିର, ମୋକ୍ଷର କଳ୍ପବଟ, ପ୍ରଶାନ୍ତିର ଛାଇ ॥

*ଅଧ୍ୟାପକ, ଅର୍ଥନୀତି ବିଭାଗ,*
*ଆଞ୍ଚଳିକ ପଞ୍ଚାୟତ ମହାବିଦ୍ୟାଳୟ,*
*ଜୁଜନପୁର, କଟକ–୭୫୪୦୧୭ ।*



# ଶାବର ଶ୍ରୀକ୍ଷେତ୍ର କୋରାପୁଟ

ଅଧ୍ୟାପକ ଜଗବନ୍ଧୁ ସାମଲ

ଓଡ଼ିଶାର ଦକ୍ଷିଣ ଦ୍ୱାର କୋରାପୁଟ । ଆୟତନରେ ରାଜ୍ୟର ସବୁଠାରୁ ବଡ଼ ଜିଲ୍ଲା । ଅଚଳନ ଢେଉ ଢେଉକା ପର୍ବତ ଶ୍ରେଣୀ, ଅରଣ୍ୟାନୀ, ଝରଣା, ନଦୀ ଓ ଜଳାଶୟକୁ ନେଇ ପ୍ରକୃତିର ସତେ ଯେପରି ଏହା ଏକ ଅମୂଲ୍ୟ ଗନ୍ତାଘର । ସମୁଦ୍ର ପତନଠାରୁ ତିନି ହଜାର ଫୁଟର ମାଳଭୂମି । ଏ ଭୂଇଁ ପ୍ରକୃତିର ଅମୃତ ସନ୍ତାନ ସରଳ ଓ ନିଷ୍କପଟ ଆଦିବାସୀମାନଙ୍କୁ ନିଜ ବକ୍ଷରେ ଧାରଣ କରି ଗର୍ବିତ । ଶବରା, ପରଜା, ଗଦବା, ବଣ୍ଡା, କୋନ୍ଧ, ଦିଦାୟୀ, ଭତରା, ଅମନାତ୍ୟ ଓ ଗଣ୍ଡ ସମ୍ପ୍ରଦାୟର ଆଦିମ ଅଧିବାସୀମାନଙ୍କର ଲୀଳା ସ୍ଥଳୀ କୋରାପୁଟ । ଛୋଟ ବଡ଼ ମିଶି ବାବନ ପ୍ରକାର ଆଦିବାସୀ ଗୋଷ୍ଠୀ କୋରାପୁଟ ଜିଲ୍ଲାରେ ଦେଖିବାକୁ ମିଳନ୍ତି । ପୁରାଣ ଯୁଗରେ ଏହି ଆଦିମ ଆଦିବାସୀଙ୍କୁ 'ଶବର' ନାମରେ ନାମିତ କରାଯାଇଛି । ଜାରା ଶବର ଉପାଖ୍ୟାନ, ଶବରୁଣୀର ରାମଚନ୍ଦ୍ରଙ୍କୁ ଫଳମୂଳ ପ୍ରଦାନ ଇତ୍ୟାଦି ଏହାର ନିଦର୍ଶନ । ଏଣୁ ସମସ୍ତ ଆଦିବାସୀ ଗୋଷ୍ଠୀଙ୍କୁ 'ଶବର' ଭାବେ ମାନ୍ୟତା ଦେଇ, ସେମାନଙ୍କର ସାଂସ୍କୃତିକ, ସାମାଜିକ, ଧାର୍ମିକ ଓ ଆର୍ଥିକ ଉନ୍ନତି ଦିଗରେ ଯୋଜନାବଦ୍ଧ କାର୍ଯ୍ୟକ୍ରମ ମାନ ହାତକୁ ନେବା ହେଉଛି କୋରାପୁଟ ଶାବର ଶ୍ରୀକ୍ଷେତ୍ରର ଅନ୍ୟତମ ମୁଖ୍ୟ ଉଦ୍ଦେଶ୍ୟ । କୋରାପୁଟ ସହରର କେନ୍ଦ୍ରସ୍ଥଳୀରେ ଗଢ଼ି ଉଠିଛି ରମ୍ୟ ମନ୍ଦିର — ମହାପ୍ରଭୁ ଜଗନ୍ନାଥଙ୍କର । ମୁଖ୍ୟ ମନ୍ଦିର, ଶାବରେଶ୍ୱର ମନ୍ଦିର, ଗଣେଶ, ସୂର୍ଯ୍ୟ, ନୃସିଂହ, ବିମଳା, ଲକ୍ଷ୍ମୀ, ସରସ୍ୱତୀ, ପର୍ଣ୍ଣଶବରୀ (ଲେକିତାସିକୋ) ଓ ଗାୟତ୍ରୀ ଆଦି ଦେବାଦେବୀଙ୍କର ମନ୍ଦିର ତଥା ନିକଟସ୍ଥ ଆଦିବାସୀମାନଙ୍କ ଦ୍ୱାରା ପୂଜା ପାଉଥିବା 'ନିଶାଣୀମା' ଠାକୁରାଣୀଙ୍କର ସମାହାର ହିଁ କୋରାପୁଟର ଶାବର ଶ୍ରୀକ୍ଷେତ୍ର ।

ଆଦିବାସୀ ଶବର ଓ ମହାପ୍ରଭୁ ଜଗନ୍ନାଥଙ୍କର ଯୁଗଯୁଗର ସମ୍ପର୍କ । ପୁରାଣରୁ ସୂଚନା ମିଳେ ଯେ ଶ୍ରୀଜଗନ୍ନାଥ ପ୍ରଥମେ ଶବରୀ ନାରାୟଣ ରୂପେ ଆଦିବାସୀଙ୍କ ଦ୍ୱାରା ପୂଜା ପାଉଥିଲେ । ଶବରୀ ନାରାୟଣ ବୃକ୍ଷ ରୂପରେ ପୂଜିତ ହେଉଥିଲେ । ଏହାର ପରବର୍ତ୍ତୀ ସମୟରେ ଶବର ରାଜା ବିଶ୍ୱାବସୁ ଜଗନ୍ନାଥଙ୍କୁ ନୀଳମାଧବ ରୂପେ ପୂଜା କଲେ । ଠାକୁରଙ୍କର ନବ କଳେବର ପୂର୍ବରୁ ଶବର ପଲ୍ଲୀ ନିର୍ମାଣ କରାଯାଇ ପବିତ୍ର ଦାରୁଙ୍କୁ ଶବର ରୀତିରେ ପୂଜା କରାଯାଇଥାଏ । ଶ୍ରୀଜଗନ୍ନାଥଙ୍କର ପୂଜା ପଦ୍ଧତି ଓ ରୀତି ନୀତି ସହିତ ଆଦିବାସୀ ସମ୍ପ୍ରଦାୟ ଏବେ ମଧ୍ୟ ଜଡ଼ିତ ।

କେତେକ ଐତିହାସିକ ତଥା ପଣ୍ଡିତଙ୍କ ମତରେ କୋରାପୁଟ ଜିଲ୍ଲାର ଗୁଣୁପୁର ଉପଖଣ୍ଡର ଖୁଲିମୁଣ୍ଡା ପାହାଡ଼ ଖୋଲରେ ବିଶ୍ୱାବସୁ ନୀଳମାଧବଙ୍କୁ ପୂଜା କରୁଥିଲେ । ଏହି ଜିଲ୍ଲାର ଶବରମାନେ କାଷ୍ଠ ନିର୍ମିତ ଯେଉଁ ବିଗ୍ରହଙ୍କୁ ପୂଜା କରନ୍ତି ତାଙ୍କୁ 'କିତୁଙ୍ଗ' କୁହାଯାଏ । କିତୁଙ୍ଗ ହେଉଛନ୍ତି ଜଗଦେଓ ମଧ୍ୟ ଜଗନ୍ନାଥଙ୍କର ସ୍ୱରୂପ ।

କୋରାପୁଟ ଭୂଖଣ୍ଡ ଆର୍ଯ୍ୟ, ଦ୍ରାବିଡ଼ ଓ ଆଦିବାସୀ ସଂସ୍କୃତିର ସମନ୍ୱୟ ସ୍ଥଳ । ଏହି ସଂହତି ଓ ସମନ୍ୱୟ ହିଁ ତ ଜଗନ୍ନାଥ ସଂସ୍କୃତିର ମୂଳ ମନ୍ତ୍ର । ଶାବର ଶ୍ରୀକ୍ଷେତ୍ର ସେହି ମୈତ୍ରୀ ଓ ସଂହତିର ବୈଜୟନ୍ତୀ ବାନା ଉଡ଼ାଇବା ଲକ୍ଷ୍ୟରେ ଆଗେଇ ଚାଲିଛି । ୧୯୭୨ ମସିହା ରଥଯାତ୍ରାର ଅବ୍ୟବହିତ ପୂର୍ବରୁ ପ୍ରତିଷ୍ଠା ହୁଏ କୋରାପୁଟରେ ଶ୍ରୀଜଗନ୍ନାଥ ମନ୍ଦିର । କୋରାପୁଟର ଉତ୍ସାହୀ ସଂସ୍କୃତି ପ୍ରେମୀ ପିଲୁ ତିଣର ଅସ୍ଥାୟୀ ମନ୍ଦିର, ସେଇ ଜଗନ୍ନାଥଙ୍କ କୃପାରୁ ଏବେ ସୁନ୍ଦର ସ୍ଥାୟୀ ମନ୍ଦିରରେ ପରିଣତ ହୋଇ କ୍ଷେତ୍ରର ମାହାତ୍ମ୍ୟ ଲାଭ କରିଛି । ଦକ୍ଷିଣ ଓଡ଼ିଶାର ଏହା ହୋଇଛି ଏକ ମହାନ ସାଂସ୍କୃତିକ ପୀଠ । ବାହାରୁ ଆସୁଥିବା ଅତିଥିମାନଙ୍କ ପାଇଁ ସୁନ୍ଦର ତଥା ଆକର୍ଷଣୀୟ ସ୍ଥଳୀ ।

ଶ୍ରୀଜଗନ୍ନାଥଙ୍କର ଆଦି ପୂଜକ ଆଦିବାସୀ ସମ୍ପ୍ରଦାୟର ଲୋକମାନଙ୍କୁ ଉଦାର ଜଗନ୍ନାଥ ସଂସ୍କୃତି ସହ ଆଉ ଥରେ ନିବିଡ଼ତର କରାଇବା ପାଇଁ ଶାବର ଶ୍ରୀକ୍ଷେତ୍ରରେ କେତେକ ଅଭିନବ ପଦକ୍ଷେପ ନିଆଯାଇଛି । ଶ୍ରୀଗୁଣ୍ଡିଚା ଯାତ୍ରା ଦିନ କୋରାପୁଟର ବଡ଼ଦାଣ୍ଡରେ ରଥ ଉପରେ ଛେରାପହଁରା କରନ୍ତି, ଏ ଅଞ୍ଚଳର

ଜଣେ ବୟୋଜ୍ୟେଷ୍ଠ ଆଦିବାସୀ । ଏହି ଅନୁଷ୍ଠାନଟି ନୀଳାଚଳରେ ସମାପନ କରିଥାନ୍ତି ଗଜପତି ମହାରାଜା, ଲକ୍ଷେ ରାଜାର ମଉଡ଼ମଣି, ଯାହାଙ୍କୁ ଓଡ଼ିଆ ଗର୍ବର ସହ ଠାକୁର ରାଜା ବୋଲି ସମ୍ବୋଧନ କରେ । କୋରାପୁଟର ଶ୍ରୀଜଗନ୍ନାଥ ମନ୍ଦିର ପରିଚାଳନା ସଂସ୍ଥା ତରଫରୁ ବିଶେଷ ନିମନ୍ତ୍ରଣ ପାଇ ରଥଯାତ୍ରାକୁ ଆସିଥାନ୍ତି ପାଖଆଖ ପଞ୍ଚଶ ଖଣ୍ଡ ଆଦିବାସୀ ଗ୍ରାମର ନାୟକ (ମୁଖିଆ) । ନିମନ୍ତ୍ରଣ ପାଇ ମଧ୍ୟ ଆସିଥାନ୍ତି ଡଙ୍ଗରିଆ କନ୍ଧ, ଲାଞ୍ଜିଆ ସଉରା ଓ ବଣ୍ଡା ସମ୍ପ୍ରଦାୟର ପ୍ରତିନିଧିମାନେ । ସେମାନେ ଠାକୁରଙ୍କୁ ଭେଟି ଦେବା ପାଇଁ ଆଣିଥାନ୍ତି ସେମାନଙ୍କ ଦ୍ୱାରା ବୁଣିଥିବା କେରଙ୍ଗ ବସ୍ତ୍ର, ଆମ୍ବ, କଦଳୀ ଓ ପଣସ । ବଣରୁ ତୋଳି ଓ ହାର କରି ଆଣିଥାନ୍ତି କଦମ୍ବ ଫୁଲ ଓ ଅଁଳା କୋଳିର ହାର । ପୁଣି ସାଙ୍ଗରେ ଆଣିଥାନ୍ତି ସେମାନଙ୍କର ପାରମ୍ପରିକ ବାଦ୍ୟ । ମୁଖିଆ ସାଙ୍ଗରେ ଗାଁର ସମସ୍ତ ଯୁବକ, ଯୁବତୀ ତଥା ବୟସ୍କ ଲୋକମାନେ ନାନା ରଙ୍ଗର ବେଶ ପୋଷାକ ପିନ୍ଧି ଯାତ୍ରା ଦେଖିବାକୁ ଆସିଥାନ୍ତି । ସଂସ୍ଥା ତରଫରୁ କୋରାପୁଟର ଜିଲ୍ଲାପାଳ ଆଦିବାସୀ ଗ୍ରାମର ନାୟକ ଓ ଅନ୍ୟ ଆଦିବାସୀ ସମ୍ପ୍ରଦାୟର ପ୍ରତିନିଧିମାନଙ୍କୁ ଶିରିପା ପ୍ରଦାନ କରି ସମ୍ମାନିତ କରନ୍ତି । ସତେ ଯେପରି ଏକ ଆଦିବାସୀ ମେଳାରେ ପରିଣତ ହୁଏ ଶାବର ଶ୍ରୀକ୍ଷେତ୍ର, କୋରାପୁଟ । ସେଇମାନଙ୍କର ଦୋକାନ, ସେଇମାନଙ୍କର ବାଦ୍ୟ, ସେଇମାନଙ୍କର ନୃତ୍ୟ ଓ ସେଇମାନଙ୍କର ଯାତ୍ରା । ଅଣସର ପୂଜାର ଅଧିକାର ଦିଆଯାଇଥାଏ ନିକଟସ୍ଥ ଆଦିବାସୀ ଗାଁ କୁମ୍ଭା ଗ୍ରାମର ନାୟକଙ୍କୁ । ହଳପୋଡ଼ି ଓ ଶିବରାତ୍ରୀରେ ଆଦିବାସୀଙ୍କର ଭିଡ଼ ଜମେ ଶାବର ଶ୍ରୀକ୍ଷେତ୍ରରେ । ଦଶହରାରେ ନିଶାଣି ମାଁଙ୍କ ପାଖରେ ଉତ୍ସବ ହୁଏ ସେଇ ଆଦିବାସୀଙ୍କର । ଶ୍ରୀଜଗନ୍ନାଥ ସଂସ୍କୃତି ଓ ଆଦିବାସୀ ସଂସ୍କୃତିର ସମନ୍ୱୟ ଓ ସମ୍ପର୍କ ଉପରେ ଭବିଷ୍ୟତର ଗବେଷକଙ୍କ ପାଇଁ ପଥ ଉନ୍ମୋଚନ କରିବା ଲକ୍ଷ୍ୟ ନେଇ ନାନାଦି ଯୋଜନା ହମଣଃ ହାତକୁ ନିଆଯାଉଛି ।

କୋରାପୁଟ ଅଞ୍ଚଳର ସର୍ବାଙ୍ଗୀନ ଉନ୍ନତି ଓ ବିଶେଷ କରି ଆଦିବାସୀମାନଙ୍କର ଅର୍ଥନୈତିକ ସମସ୍ୟା, ଜଙ୍ଗଲ ଓ ପରିବେଶ ସୁରକ୍ଷା ଉପରେ ବିଭିନ୍ନ ସମୟରେ ଆଲୋଚନା ଚକ୍ରମାନ ଆୟୋଜନ କରାଯାଏ, କୋରାପୁଟର ଶ୍ରୀଜଗନ୍ନାଥ ମନ୍ଦିର ପରିସର ମଧ୍ୟରେ । ଗବେଷକମାନଙ୍କୁ ସୁବିଧା ଓ ସୁଯୋଗ ଯୋଗାଇ ଦେବା ପାଇଁ ଏକ ପାଠାଗାର ଓ ବିଭିନ୍ନ ପ୍ରତିଯୋଗିତାମୂଳକ ପରୀକ୍ଷା ପାଇଁ ପ୍ରସ୍ତୁତ ହେଉଥିବା ଛାତ୍ରଛାତ୍ରୀ ତଥା ଯୁବକ ଯୁବତୀମାନଙ୍କ ପାଇଁ ପାଠ କେନ୍ଦ୍ର ପ୍ରତିଷ୍ଠା ହୋଇ ସାରିଛି ଏହି ଶାବର ଶ୍ରୀକ୍ଷେତ୍ରରେ । ଓଡ଼ିଶାର ବରପୁତ୍ର ଅତିବଡ଼ୀ ଜଗନ୍ନାଥ ଦାସଙ୍କର ପଞ୍ଚଶତ ବାର୍ଷିକୀ ପାଳନ ଉପଲକ୍ଷେ ମନ୍ଦିର ପରିସର ମଧ୍ୟରେ ଭାଗବତ ଘର ଓ ଅତିବଡ଼ୀଙ୍କର ଦାରୁମୂର୍ତ୍ତି ପ୍ରତିଷ୍ଠା ହୋଇଛନ୍ତି । ଏହି ଉପଲକ୍ଷେ ୧୯୯୧ ମସିହା ନଭେମ୍ବର ମାସରେ ଏକ ନିଖିଳ ଉତ୍କଳ ଆଲୋଚନା ଚକ୍ରର ଆୟୋଜନ ହୋଇଯାଇଛି । ଓଡ଼ିଶାର ବିଭିନ୍ନ ପ୍ରାନ୍ତରୁ ବହୁ ଗୁଣି ଓ ବିଦ୍ୱାନ ଲୋକ ଆସି ଶ୍ରୀଜଗନ୍ନାଥ ଦାସଙ୍କର ଭାଗବତ ଓ ସାମ୍ପ୍ରତିକ ପରିସ୍ଥିତିରେ ଭାଗବତର ଭୂମିକା ଉପରେ ଆଲୋକପାତ କରି ଯାଇଛନ୍ତି । ଶାବର ଶ୍ରୀକ୍ଷେତ୍ର ପରିସର ମଧ୍ୟରେ ପ୍ରତିଷ୍ଠା ହୋଇଛି ଯୋଗ କେନ୍ଦ୍ର । ଉତ୍ସାହୀ ଯୁବକ ଯୁବତୀ ତଥା ବୟସ୍କ ଲୋକମାନେ ଏଠାରେ ଯୋଗ ଶିକ୍ଷା କରୁଛନ୍ତି । ମନ୍ଦିର ପରିସର ମଧ୍ୟରେ ପ୍ରତିଷ୍ଠା ହୋଇଛି 'ସଦ୍‌ଗ୍ରନ୍ଥ ଭଣ୍ଡାର' । ମନ୍ଦିରକୁ ଆସୁଥିବା ଯାତ୍ରୀମାନେ ଏଠାରୁ ମୂଲ୍ୟବାନ ତଥା ଦୁର୍ଲଭ ପୁସ୍ତକମାନ କିଣିକି ନେଇପାରୁଛନ୍ତି । ଲୋକମାନଙ୍କର ସୁବିଧା ନିମନ୍ତେ ଦୁଇଟି କଲ୍ୟାଣ ମଣ୍ଡପ ମନ୍ଦିର ପରିସର ମଧ୍ୟରେ ନିର୍ମାଣ କରାଯାଇଛି । ବିବାହ ଓ ବ୍ରତ ଆଦି କର୍ମମାନ ଏଠାରେ ସୁବିଧାରେ କରାଯାଇ ପାରୁଛି । ମନ୍ଦିର ବେଢ଼ା ମଧ୍ୟରେ ଗାୟତ୍ରୀ ମନ୍ଦିରରେ ପ୍ରତି ରବିବାର ଗାୟତ୍ରୀ ଯଜ୍ଞ କରାଯାଇଥାଏ । ଭାଗବତ ଘରେ ପ୍ରତି ସନ୍ଧ୍ୟାରେ ଭାଗବତ ପାଠ ମଧ୍ୟ କରାଯାଏ ।

ଶାବର ଶ୍ରୀକ୍ଷେତ୍ରର ମନ୍ଦିର ଦ୍ୱାର ସମସ୍ତଙ୍କ ପାଇଁ ଉନ୍ମୁକ୍ତ । ଏ କ୍ଷେତ୍ର ବିଶ୍ୱାସ କରେ ମାନବ ଧର୍ମରେ । ଏ କ୍ଷେତ୍ର ବିଶ୍ୱାସ କରେ ଏକମାତ୍ର ବାଦରେ — ତାହା ମାନବ ବାଦ । ଏ କ୍ଷେତ୍ର ବିଶ୍ୱାସ କରେ ଏକମାତ୍ର ସଂସ୍କୃତିରେ — ତାହା ମୈତ୍ରୀପୂର୍ଣ୍ଣ ମାନବିକ ସଂସ୍କୃତି । ଏହା ହିଁ ମହାନ ଜଗନ୍ନାଥ ଦର୍ଶନ !

କୋରାପୁଟର ଐତିହ୍ୟ ମହାନ । ଏହାର ଇତିହାସ ପ୍ରାଚୀନ । କେତଲା, ସୁବାଇ, ନନ୍ଦପୁର, ଭୈରବ ସିଂହପୁର, ଗିଲିଗୁମ୍ମା, ପୋଡ଼ାଗଡ଼, ଗୁପ୍ତେଶ୍ୱର, ପଦ୍ମପୁର, ଝୁଲଗୁମ୍ମା, ଜଗଗୁଡ଼ା, ପାପଡାହାଣ୍ଡି, ବାଲିମେଳା, ନାରାୟଣ ପାଟଣା, ରାୟଗଡ଼ା ଓ ମାଲକାନଗିରି — ସବୁଠି ଭରି ରହିଛି ଅତି ପୁରାତନ ପ୍ରସ୍ତର ମୂର୍ତ୍ତି ଓ ଭଗ୍ନ ମନ୍ଦିର । ନନ୍ଦପୁର ଓ ନାରାୟଣ ପାଟଣାରେ ଦେଖିବାକୁ ମିଳେ ଭଗ୍ନ ରାଜଗଡ଼ର ସ୍ତୁପ ଓ ନାନାଦି ରାଜକୀୟ କୀର୍ତ୍ତି । ଜୟପୁର ରାଜପ୍ରାସାଦ ଏବେ ମଧ୍ୟ ଦର୍ଶକମାନଙ୍କୁ ଆକର୍ଷିତ କରେ । ଏ ସବୁ ଉପରେ ବିଧିବଦ୍ଧ ଗବେଷଣା ଏବେ ସୁଦ୍ଧା ହୋଇନାହିଁ । କୋରାପୁଟର ଏହି ଐତିହ୍ୟକୁ ଲୋକଲୋଚନକୁ ଆଣିବା ଓ ଏହା ଉପରେ ଗବେଷଣା କରିବା ପାଇଁ ବିଦ୍ୱାନ ଲୋକଙ୍କୁ ଆକୃଷ୍ଟ କରିବା ତଥା ବାହାର ପର୍ଯ୍ୟଟକମାନଙ୍କୁ କୋରାପୁଟର ଐତିହାସିକ ସ୍ଥାନ ଓ ଅନ୍ୟାନ୍ୟ ଦର୍ଶନୀୟ ସ୍ଥାନ ପ୍ରତି ଆକୃଷ୍ଟ କରାଇବା ନିମନ୍ତେ ଶ୍ରୀଜଗନ୍ନାଥ ମନ୍ଦିର ପରିଚାଳନା ସଂସ୍ଥାର ଉଦ୍‌ଯୋଗରେ କେତେକ ଆନୁଷଙ୍ଗିକ ଅନୁଷ୍ଠାନ ଧୀରେ ଧୀରେ ଗଢ଼ି ଉଠୁଛି । ସମ୍ପ୍ରତି ପ୍ରତିଷ୍ଠିତ 'ଆଦିବାସୀ ସଂଗ୍ରହାଳୟ' ଓ 'ଆଦିବାସୀ ଗବେଷଣା କେନ୍ଦ୍ର', ଏହି ଲକ୍ଷ୍ୟମାନ ହାସଲ ଦିଗରେ କେତେକ ମହତ ପଦକ୍ଷେପ ।

ଅନେକ ସ୍ୱପ୍ନକୁ ସାକାର କରିବାର ଲକ୍ଷ୍ୟ ନେଇ ଆଗେଇ ଚାଲିଛି ଶାବର ଶ୍ରୀକ୍ଷେତ୍ର କୋରାପୁଟ । ନିକଟ ଅତୀତରେ କୋରାପୁଟ ଜିଲ୍ଲାର ବିଭିନ୍ନ ସ୍ଥାନରେ ଗଢ଼ି ଉଠିଛନ୍ତି ଶ୍ରୀଜଗନ୍ନାଥ ମନ୍ଦିର । ସୁଖର କଥା ଏବେ ସୁଦ୍ଧା କୋରାପୁଟ ଜିଲ୍ଲାରେ ପ୍ରାୟ ଚାଳିଶରୁ ଊର୍ଦ୍ଧ୍ୱ ଜଗନ୍ନାଥ ମନ୍ଦିର ପ୍ରତିଷ୍ଠା ହୋଇ ସାରିଲେଣି । ଜଗନ୍ନାଥ ଧର୍ମ ଓ ସଂସ୍କୃତିର ପ୍ରସାର ପାଇଁ ଆବଶ୍ୟକ ସ୍ଥଳେ ନୂଆକରି ଗଢ଼ି ଉଠୁଥିବା ଜଗନ୍ନାଥ ମନ୍ଦିରଗୁଡ଼ିକର ପରିଚାଳନା ସଂସ୍ଥାମାନଙ୍କୁ ଦିଗ୍‌ଦର୍ଶନ ଦେବାରେ ଆଗ୍ରହର ସହ ଆଗେଇ ଆସିଛି ଶାବର ଶ୍ରୀକ୍ଷେତ୍ର ।

ସମ୍ପ୍ରତି ଶାବର ଶ୍ରୀକ୍ଷେତ୍ରରେ ନିର୍ମାଣ ଚାଲିଛି ଗୋଟିଏ ଧର୍ମଶାଳା । ବାହାରୁ ଆସୁଥିବା ଯାତ୍ରୀମାନଙ୍କୁ ରହିବାର ସମସ୍ତ ସୁବିଧା ଯୋଗାଇ ଦେବ ଏହି ଅନୁଷ୍ଠାନ । ଖୁବ୍ ଶୀଘ୍ର ଶାବର ଶ୍ରୀକ୍ଷେତ୍ରରେ ପ୍ରତିଷ୍ଠା ହେବାକୁ ଯାଉଛି ଗୋଟିଏ କର୍ମକାଣ୍ଡ ବିଦ୍ୟାଳୟ । ଉତ୍ସାହୀ ଯୁବ ଛାତ୍ରଙ୍କୁ ଏଥିରେ ଗ୍ରହଣ କରାଯାଇ କର୍ମକାଣ୍ଡ ବିଷୟରେ ତାଲିମ୍ ଦିଆଯିବ । ସ୍ୱପ୍ନ ବି ରହିଛି ଗଢ଼ିବା ପାଇଁ ଏକ ଆଦର୍ଶ ବିଦ୍ୟାଳୟ — ଯେଉଁଠାରେ ଛୋଟ ଛୋଟ ପିଲାଙ୍କୁ ଚରିତ୍ର ଗଠନ, ଶୃଙ୍ଖଳା ଓ ଧାର୍ମିକ ଚେତନା ସହ ଶିକ୍ଷାଦାନ କରାଯିବ ।

ପ୍ରଭୁ ଜଗନ୍ନାଥଙ୍କର କରୁଣାରୁ ଅନେକ ସ୍ୱପ୍ନ ସାର୍ଥକ ହେଲାଣି ଓ ଭବିଷ୍ୟତକୁ ମଧ୍ୟ ହେବ ବୋଲି ଆଶା କରାଯାଏ, ଶାବର ଶ୍ରୀକ୍ଷେତ୍ର କୋରାପୁଟରେ । ଏହି ଗଣ ଅନୁଷ୍ଠାନଟି ଅଗଣିତ ସଂସ୍କୃତି ପ୍ରେମୀ ଜନସାଧାରଣଙ୍କର ଅକୁଣ୍ଠିତ ସହଯୋଗର ଏକ ଉଜ୍ଜ୍ୱଳ ନିଦର୍ଶନ ।

---

*ଅଧ୍ୟାପକ,*
*ଡି. ଏ. ଭି. କଲେଜ, କୋରାପୁଟ ।*




*ଶିଳ୍ପୀ–ଶ୍ରୀ ପ୍ରସନ୍ନ କୁମାର ରାଉତ,*
*ଗ୍ରାମ–ନରଣପୁର,*
*ଥାନା–କାକଟପୁର, ଜି–ପୁରୀ ।*




# ଦେଖିବାକୁ ମନ

ଶ୍ରୀ ବନବିହାରୀ ପଟ୍ଟନାୟକ

ଦେଖିବାକୁ ମନ କଳାବଦନକୁ
ତ୍ରିଭଙ୍ଗୀ-ଠାଣୀକୁ ମନମୋହନଙ୍କୁ ।

ଦେଖିବାକୁ ମନ............ ॥୧॥

ନିତ୍ୟ-ଲୀଳାମୟ ଶ୍ରୀ ଭଗବାନଙ୍କୁ
ଜଗତର ନାଥ ହରି ଚରଣକୁ ।

ଦେଖିବାକୁ ମନ............ ॥୨॥

ରାଧା-ପ୍ରେମ-ଭୋଳା ଶ୍ରୀ ବଂଶୀଧରଙ୍କୁ
ଗୋପୀ-ମନ-ହାରୀ ମୁରଲୀଧରଙ୍କୁ ।

ଦେଖିବାକୁ ମନ............ ॥୩॥

ଗୋବର୍ଦ୍ଧନଧାରୀ ନନ୍ଦ ନନ୍ଦନଙ୍କୁ
ଯଶୋମତୀ- ସୁତ ରାଧା ରମଣଙ୍କୁ ।

ଦେଖିବାକୁ ମନ............ ॥୪॥

ବସୁଦେବ- ସୁତ ବ୍ରଜ ବିହାରୀଙ୍କୁ
ଗୋପ-ଜନ-ପ୍ରିୟ ବନବିହାରୀଙ୍କୁ ।

ଦେଖିବାକୁ ମନ............ ॥୫॥

ଶ୍ରୀକ୍ଷେତ୍ର-ନିବାସୀ ଭଙ୍ଗ-ଅଧରଙ୍କୁ
ବୃନ୍ଦାବନ-ସ୍ୱରୀ ଶ୍ରୀ ବଂଶୀଧରଙ୍କୁ ।

ଦେଖିବାକୁ ମନ............ ॥୬॥

---

କ୍ୱାର୍ଟର ନଂ-୬/୭, ଟାଇପ୍ ୪-ଆର୍,
ୟୁନିଟ୍-୧, ଭୁବନେଶ୍ୱର-୭୫୧୦୦୯ ।



ପ୍ରହରାଜ ସତ୍ୟନାରାୟଣ ନନ୍ଦ

ଏଠାରେ ନ ହେଉ ଯୁଦ୍ଧ ଘନଘଟା କ୍ଷେତ୍ରର ଦେବତା
ଖୋଜିବା ଆଗୁ ନିଜେ ଶାନ୍ତି ଆଣ ସମୁଦ୍ର ପ୍ରାନ୍ତରେ,
ପ୍ରୀଗାଞ୍ଚଳ ଶାନ୍ତି କେହି ଦାନ ଦେଉ ଦେଉ
ହୃଦୟକୁ ଖୋଲିଦିଏ ପୁଷ୍କରିଣୀ ତୁମ ଅଜ୍ଞାତରେ ;
ତୁମକୁ ପବିତ୍ର ହେଲେ ପବିତ୍ର ହୃଦୟ
ଥିଲା ପାଏ ଦିବ୍ୟ ଦାରୁ ରୂପ,
ସ୍ୱପ୍ନରେ ଭାସ୍ୱର ହୁଏ ଶବ୍ଦରେ ଯା' ବୁଝିହୁଏ ନାହିଁ
:ଶାହିଁକି ପୃଥକ ହୁଏ ଏକ ସତ୍ୟ, ବିବିଧ ସ୍ୱରୂପ ॥

ତୁମକୁ ସୁନ୍ଦର ଦିଶେ ପର୍ବତ ଓ ନୀଳ ମେଘମାଳ
ପାଂନୀଳ ସୁନ୍ଦର ଛବି ହାତ ଠାରି ଡାକେ,
ଅନ୍ୱେଷଣ ରେଖା କାଟେ ଶିଳାରେ ଗୁଳ୍ମରେ
କପୋଳର ସ୍ୱେଦବିନ୍ଦୁ ଝରିପଡ଼େ କଣ୍ଟା ଫୋଡ଼ିଗଲେ ॥

ଐଶ୍ୱର୍ଯ୍ୟ ଆଲୋକ ପରି ଆପେ ଖୋଜେ ଅଗ୍ରଗତି ପଥ
ତେଣୁ ଇନ୍ଦ୍ରଦ୍ୟୁମ୍ନ ନାମ ସାର୍ଥକ ତୁମର,
ଶବର ଅଛି ବୁଝେ ବୃକ୍ଷଗୁଣ, ଭୁଲି ତା' ଶିକାର
ଅଶ୍ୱମନ୍ତୁ କେତେ ବାଟ ପାହାଡ଼ ଓ ଉପାସନା ଏକଇ କାମନା
:ମାଧବ କରିବା ଠାବ ମଣିଷର କି ଦିବ୍ୟ ଦ୍ୟୋତନା ॥

ସେଦିନ ବୁଝିଲ କିସ ବିଶ୍ୱାବସୁ ପ୍ରଶ୍ନ ଶୁଣିବାରୁ
ତୁମକୁ ବୁଝାଇ ଦେଲେ ଆଉଜଣେ ଇନ୍ଦ୍ରଦ୍ୟୁମ୍ନ ରାଜା
ଶ୍ରୀକ୍ଷେତ୍ରରେ ରହୁଥିଲେ/ସେ କି ଭିନ୍ନ ସ୍ୱରୂପ ତୁମର ;
ଦର୍ଶନ କରିବ ଯଦି ପୁଣି ଦେଖ ସେ ନୀଳ କନ୍ଦର ॥

ଅବସାଦ ଆସେ ଘେରି ଅଳ୍ପଦିନେ ଉତ୍ସବ ମଉଳେ
ସୁନାର ବାଲୁକା ଡାକେ ଇନ୍ଦ୍ରନୀଳ ବିଗ୍ରହ କପୋଳେ,
ପୁଣି ପୋତିପଡ଼େ ଦିଶେ ନୀଳମୂର୍ତ୍ତି ଚିନ୍ମୟ ସୁନ୍ଦର
ଆଉଥରେ ଧୂଳିଝଡ଼ ଢାଙ୍କିଦିଏ ବିଛଣା ସୁନ୍ଦର ॥

ଶୂନ୍ୟବାଣୀ ଆକାଶରୁ ଦ୍ୱାହି ଦିଏ ତୁମ ଦାରୁ ରୂପ
ଢେଉରେ ଆସିବ ଭାସି ଢେଉରୁ କ୍ଷେତ୍ରକୁ,
ସ୍ୱପ୍ନାଦିଷ୍ଟ ଉପାସନା ଆଉଥରେ ଆଦିହୀନ ତରୁ
ଆଦିତ୍ୟବର୍ଣ୍ଣର ଶାଖା ନୀଳ ସମୁଦ୍ରରେ
ବିସ୍ତାରିବ ଧୀରେ ଧୀରେ/ମହାବେଦୀ ଗୋପନ କକ୍ଷରେ

ଯନ୍ତ୍ର ବାଦ୍ୟଧ୍ୱନି ହେବ ମେଘଛୁଆଁ ଦେଉଳ ଚକ୍ରରୁ
ପ୍ରେମର ପତାକା କେତେ ଫରଫର ବିହଙ୍ଗ ଡେଣାରେ
ଡାଳିବ ଆଲୋକ ଧାରା : ଇନ୍ଦ୍ରଦ୍ୟୁମ୍ନ ମାଟିରେ ପ୍ରେମର
ସିଂହାସନ ତୋଳିଦେଲେ ଦାରୁବ୍ରହ୍ମ ତା'ର ଅଧୀଶ୍ୱର ॥

---

*ସୁଚନା ଓ ଲୋକ ସମ୍ପର୍କ ବିଭାଗ,*
*ଭୁବନେଶ୍ୱର–୭୫୧୦୦୧ ।*






ଅମ୍ବିକା ପ୍ରସାଦ ଦାସ

ଉତ୍କଳୀୟ ଐତିହ୍ୟ ଓ ସଂସ୍କୃତିର ଅନ୍ୟତମ ପ୍ରାଣକେନ୍ଦ୍ର ଶ୍ରୀତୁଳସୀ କ୍ଷେତ୍ର କେନ୍ଦ୍ରାପଡ଼ା । ରାଜ୍ୟର ଶିଳ୍ପ ବିଭବକୁ ପରିପୁଷ୍ଟ କରୁଥିବା ଅଞ୍ଚଳମାନଙ୍କ ମଧ୍ୟରେ ଏ ଅଞ୍ଚଳର ଖ୍ୟାତି ସର୍ବଜନବିଦୀତ । ତୁଳସୀ କ୍ଷେତ୍ରାଧିପତି ଶ୍ରୀବଳଦେବ ଜୀଉଙ୍କ ପାଇଁ ଏ କ୍ଷେତ୍ର ପ୍ରସିଦ୍ଧି ଲାଭ କରିଥିଲେ ହେଁ କେନ୍ଦ୍ରାପଡ଼ା ସହରର କେନ୍ଦ୍ରସ୍ଥଳ, ଐତିହାସିକ ଗୋବରୀ ନଦୀ ତଟସ୍ଥ ଗଣା ମାହାଲରେ ଅବସ୍ଥିତ ଶ୍ରୀଶ୍ରୀବିନୋଦବିହାରୀ ମନ୍ଦିର ଏବେ ବି ଲୋକଲୋଚନର ଅନ୍ତରାଳରେ ରହିଯାଇଛି । ମନ୍ଦିର ଚତୁଃପାର୍ଶ୍ୱସ୍ଥ ସୂକ୍ଷ୍ମ କାରୁକାର୍ଯ୍ୟ ମନ୍ଦିରର ପ୍ରଧାନ ଆକର୍ଷଣ । ମନ୍ଦିରର ସୂକ୍ଷ୍ମକଳା, ମନ୍ଦିର ଗାତ୍ରରେ ଖୋଦିତ ପ୍ରସ୍ତର ମୂର୍ତ୍ତି ଅତ୍ୟନ୍ତ ରମଣୀୟ । 'କୋଣାର୍କ' ବ୍ୟତୀତ ରାଜ୍ୟରେ ଥିବା ଅନ୍ୟାନ୍ୟ ମନ୍ଦିର ତୁଳନାରେ ଏହି ମନ୍ଦିରର କାରୁକାର୍ଯ୍ୟ ଅତି ଉଚ୍ଚକୋଟୀର ।

## ମନ୍ଦିରର ପ୍ରତିଷ୍ଠା :

ମନ୍ଦିର ସମ୍ମୁଖ ଭାଗରେ ଥିବା ଚଟାଣ ଉପରେ ଖୋଦିତ ପ୍ରସ୍ତର ଶିଳାଲେଖରୁ ଏହାର ନିର୍ମାଣ କାର୍ଯ୍ୟ ସ୍ନ: ୧୨୭ ସାଲରେ ସ୍ୱର୍ଗତ ଶ୍ରୀରାମ ଗୋବିନ୍ଦ ଜଗଦେବଙ୍କ ଦ୍ୱାରା ଆରମ୍ଭ କରାଯାଇଥିବା ଜଣାପଡ଼େ । ସ୍ନ: ୧୩୧୫ ସାଲ ଜ୍ୟେଷ୍ଠ ୧୩ ଦିନ ଶୁକ୍ରବାର ଶ୍ରୀଲକ୍ଷ୍ମୀ ନାରାୟଣ ଜଗଦେବଙ୍କ ରାହୁତିରେ ଶ୍ରୀ ଗୋପାଳ ଦାସ ବାବାଙ୍କ ଦ୍ୱାରା ମନ୍ଦିର ପ୍ରତିଷ୍ଠା କରାଯାଇଥିଲା ।

ମନ୍ଦିର ପ୍ରତିଷ୍ଠା ସମ୍ପର୍କରେ ବିଭିନ୍ନ କଥା ଶୁଣିବାକୁ ମିଳୁଥିଲେ ହେଁ ପ୍ରତିଯୋଗିତା ମୂଳକ ମନୋଭାବ ନେଇ ଏ ମନ୍ଦିର ନିର୍ମାଣ କରାଯାଇଥିଲା ବୋଲି କେତେକ ପୁରୁଖା ଲୋକ ମତ ଦିଅନ୍ତି । କଥିତ ଅଛି ରାଧାଶ୍ୟାମ ନରେନ୍ଦ୍ର ଓ ଗୌରୀଶ୍ୟାମ ଜଗଦେବ ଦୁଇଭାଇ । ଗୌରୀଶ୍ୟାମ ସାନଭାଇ ହୋଇଥିବାରୁ ରାଧାଶ୍ୟାମ ନରେନ୍ଦ୍ର ତାଙ୍କୁ କିଛି ସମ୍ପତ୍ତିବାଡ଼ି ନଦେଇ କେବଳ ମହାଜନୀରୁ କିଛି ଅଂଶ ଦେଇ ପୃଥକ କରିଦେଇଥିଲେ । ଏଠାରୁ ଅନତି ଦୂରରେ ଅବସ୍ଥିତ ଶ୍ରୀଶ୍ରୀଗୋବିନ୍ଦ ଜୀଉଙ୍କ ମନ୍ଦିର ରାଧାଶ୍ୟାମ ନରେନ୍ଦ୍ରଙ୍କ କୀର୍ତ୍ତି । ସେତେବେଳେ ବିଭିନ୍ନ କ୍ଷେତ୍ରରେ ରାଧାଶ୍ୟାମ ନରେନ୍ଦ୍ରଙ୍କ ଖ୍ୟାତି ସର୍ବତ୍ର ପରିବ୍ୟାପ୍ତ ହୋଇଥିଲା । ତାଙ୍କ କୀର୍ତ୍ତିକୁ ଅକ୍ଷୟ ରଖିବା ପାଇଁ ସେ ଏହି ମନ୍ଦିର ପ୍ରତିଷ୍ଠା କରିଥିଲେ । ରାଧାଶ୍ୟାମ ନରେନ୍ଦ୍ରଙ୍କ ଦ୍ୱାରା ଶ୍ରୀଗୋବିନ୍ଦ ଜୀଉଙ୍କ ମନ୍ଦିର ନିର୍ମାଣ ପରେ ତାଙ୍କ ସାନଭାଇ ଗୋରୀଶ୍ୟାମଙ୍କ ପୁତ୍ର ଶ୍ରୀ ରାମଗୋବିନ୍ଦ ଜଗଦେବ ଏକ ସୁନ୍ଦର ମନ୍ଦିର ନିର୍ମାଣ ପାଇଁ ସଂକଳ୍ପ ନେଲେ । ଏଥିପାଇଁ ସେ ଗୋବରୀ ନଦୀ ତଟସ୍ଥ ପ୍ରାକୃତିକ ପରିବେଶ ପୂର୍ଣ୍ଣ ଗଣା ମାହାଲକୁ ଉପଯୁକ୍ତ ସ୍ଥାନ ରୂପେ ବିବେଚନା କଲେ । ମନ୍ଦିର ନଦୀ କୂଳରେ ନିର୍ମାଣ ପାଇଁ ସ୍ଥିର କରାଯାଇଥିବାରୁ ଏଥିନିମିତ୍ତ ଆବଶ୍ୟକୀୟ ଉପକରଣ ଆସିବା ସହଜସାଧ୍ୟ ଥିଲା । ୧୫୦ ଜଣ ପଥୁରିଆ ପ୍ରତିଦିନ କାର୍ଯ୍ୟରେ ଲାଗିଥିଲେ । ସେତେବେଳେ ମଜୁରି ମାତ୍ର ଛଅ ପଇସା ଥିଲା । ମନ୍ଦିରରେ ବ୍ୟବହୃତ ସମସ୍ତ ପଥର ଲଳିତଗିରିରୁ ହିଁ ଆସିଥିଲା । ମନ୍ଦିରର ନିର୍ମାଣ କାର୍ଯ୍ୟ ଦ୍ରୁତ ଗତିରେ ଆଗେଇ ଚାଲିଲା । ମାତ୍ର ଦୁର୍ଭାଗ୍ୟବଶତଃ ମନ୍ଦିରଟି ପୂର୍ଣ୍ଣାଙ୍ଗ ହେବା ପୂର୍ବରୁ ଶ୍ରୀରାମ ଗୋବିନ୍ଦ ଜଗଦେବ ଶେଷ ନିଃଶ୍ୱାସ ତ୍ୟାଗ କଲେ । ତାଙ୍କ ପରେ ପୁତ୍ର ଶ୍ରୀ ଲକ୍ଷ୍ମୀନାରାୟଣ ଜଗଦେବ ଏହି ମନ୍ଦିର ନିର୍ମାଣ କାର୍ଯ୍ୟ ସମ୍ପୂର୍ଣ୍ଣ କରିଥିଲେ ।

ମନ୍ଦିର ସମ୍ମୁଖ ଭାଗ ବ୍ୟତୀତ ଅନ୍ୟ ତିନି ପାର୍ଶ୍ୱରେ ଯଥା–ପଶ୍ଚିମ ପାର୍ଶ୍ୱରେ ନୃସିଂହ, ଉତ୍ତରରେ ବାମନ ଓ ଦକ୍ଷିଣରେ ବରାହ ପାର୍ଶ୍ୱ ଦେବତା ରୂପେ ଅବସ୍ଥାପିତ ହୋଇଛନ୍ତି । ମନ୍ଦିରର ମୁଖଶାଳା ଅତ୍ୟନ୍ତ ମନୋମୁଗ୍ଧକର । ଗୁଡ଼ାଇ ହୋଇ ରହିଥିବା କଳା ନାଗ ସାପ ଆକୃତିରେ ନିର୍ମିତ ନାଗବନ୍ଧ ରାଜ୍ୟର ଅନ୍ୟ କୌଣସି ସ୍ଥାନରେ ଦେଖିବାକୁ ମିଳେ ନାହିଁ । ମନ୍ଦିରର ଚତୁଃପାର୍ଶ୍ୱ ସୂକ୍ଷ୍ମ କାରୁକାର୍ଯ୍ୟରେ ଭରପୂର ।

ପ୍ରତ୍ୟେକ ମନ୍ଦିର ପରି ଏହାର ଜଗମୋହନ ମନ୍ଦିର ରହିଛି । ଏହି ଜଗମୋହନରେ ଚାରୋଟି ମୂର୍ତ୍ତି ସ୍ଥାପନ କରାଯାଇଛି । ଏକ ପାର୍ଶ୍ୱରେ ଗରୁଡ଼ ଓ ଜୟ ଏବଂ ଅପର ପାର୍ଶ୍ୱରେ ହନୁମାନ ଓ ବିଜୟ । ଏମାନଙ୍କୁ ଠାକୁରଙ୍କ ଦ୍ୱାରପାଳ ଭାବେ ସ୍ଥାପନ କରାଯାଇଥିବା ମନେ ହୁଏ । ଗର୍ଭ ଗୃହରେ ବାମ ପାର୍ଶ୍ୱରେ ମଦନମୋହନ, ବିନୋଦବିହାରୀ, ଗୋପୀନାଥ ଏବଂ ରାଧା

ପାର୍ଶ୍ୱରେ ରାଧା ଓ ଲଳିତାଙ୍କ ପ୍ରତିମା ସ୍ଥାପନ କରାଯାଇଛି । ଶ୍ରୀ ରାମଗୋବିନ୍ଦ ଜଗଦେବ ଏହି ପ୍ରତିମାକୁ ଜୟପୁରରୁ ଆଣିଥିବା କୁହାଯାଏ ।

## ଠାକୁରଙ୍କ ନୀତି ଓ ପର୍ବପର୍ବାଣୀ :

ସାଧାରଣତଃ ଠାକୁରଙ୍କ ତିନୋଟି ଯାତ୍ରା ପ୍ରଧାନ । ଯଥା– ଝୁଲଣ, ଶ୍ରୀପଞ୍ଚମୀ ଏବଂ ଦୋଳଯାତ୍ରା । କ୍ରମାଗତ ଅବହେଳା ଓ ରକ୍ଷଣାବେକ୍ଷଣ ଅଭାବରୁ ଝୁଲଣ ଘର ଧ୍ୱଂସ ହୋଇଯାଇଛି । ଏଣୁ ଝୁଲଣ ଯାତ୍ରା ଅନୁଷ୍ଠିତ ହୋଇପାରୁ ନାହିଁ । ପୂର୍ବରୁ ଠାକୁରଙ୍କ ଯେଉଁଳି ପାଞ୍ଚଧୂପ ହେଉଥିଲା, ସେଗୁଡିକ ହେଉଛି – ମଙ୍ଗଳ ଆଳତୀ ସହ ବାଲ୍ୟଧୂପ, ମଧ୍ୟାହ୍ନରେ ଅନ୍ନଧୂପ, ସନ୍ଧ୍ୟାରେ ଉଠାଣ ଆଳତୀ, ପରେ ଅନ୍ନଧୂପ ଏବଂ ବଡ଼ସିଂହାର ଧୂପ, ବିଭିନ୍ନ ଯାତ୍ରାରେ ଠାକୁରଙ୍କ ନିକଟରେ ଅଜସ୍ର ଅର୍ଥ ବ୍ୟୟ କରାଯାଉଥିଲା । କ୍ରମଶଃ ପୂଜା ବିଧି, ଯାତ୍ରା ଇତ୍ୟାଦି ଠିକ୍ ରୂପେ ହୋଇପାରିଲା ନାହିଁ ।

ଶ୍ରୀ ଲକ୍ଷ୍ମୀନାରାୟଣ ଜଗଦେବ ମୃତ୍ୟୁ ବେଳକୁ ଋଣଗ୍ରସ୍ତ ହୋଇଥିଲେ । ଋଣ ପରିଶୋଧ ହୋଇ ନପାରିବାରୁ ଠାକୁରଙ୍କ ଯାହା କିଛି ସାମାନ୍ୟ ସ୍ଥାବର ସମ୍ପତ୍ତି ଥିଲା ସେ ମଧ୍ୟରୁ ଠାକୁରଙ୍କ ପାର୍ଶ୍ୱସ୍ଥ କେତେକ ସମ୍ପତ୍ତି ନିଲାମ ହୋଇଗଲା ।

## ମନ୍ଦିରର ସାମ୍ପ୍ରତିକ ସ୍ଥିତି :

ଦୀର୍ଘ ଦିନ ଧରି ଅର୍ଥାଭାବରୁ ଏହି କାରୁକାର୍ଯ୍ୟ ପୂର୍ଣ୍ଣ ଦେବ ମନ୍ଦିର ମରାମତି ତ ଦୂରର କଥା, ସାଧାରଣ ଆବଶ୍ୟକତା ମଧ୍ୟ ବାଦ ପଡ଼ିଗଲା । ମନ୍ଦିର ନୀତି ଏକ ପ୍ରକାର ବନ୍ଦ ହୋଇଯାଇଥିଲା କହିଲେ ଚଳେ । ଦେବୋତ୍ତର ବିଭାଗ ପକ୍ଷରୁ ଅନୁଦାନ ମିଳିବା ପରେ ମନ୍ଦିରର ପୁନରୁଦ୍ଧାର କାର୍ଯ୍ୟ ଆରମ୍ଭ ହୋଇଥିଲା । ପରବର୍ତ୍ତୀ ସମୟରେ 'ସମାଜ' ସମ୍ପାଦକ ଡଃ ରାଧାନାଥ ରଥ ଏହି ମନ୍ଦିରକୁ ପାଞ୍ଚ ହଜାର ଟଙ୍କା ଓ ଦେବୋତ୍ତର ବିଭାଗ ପକ୍ଷରୁ ପର୍ଯ୍ୟାୟକ୍ରମେ ଆଉ ପଚିଶି ହଜାର ଟଙ୍କା ଅନୁଦାନ ଦିଆଯାଇଥିଲା । ଏବେ ମନ୍ଦିର ସୁପରିଚାଳନା ପାଇଁ ସରକାରଙ୍କ ପକ୍ଷରୁ ଏକ ମଧ୍ୟବର୍ତ୍ତୀକାଳୀନ ଟ୍ରଷ୍ଟ ବୋର୍ଡ଼ ଗଠନ କରାଯାଇଛି । ପୂର୍ବଭଳି ବଡ଼ସିଂହାର ଧୂପ ସମେତ ଠାକୁରଙ୍କର ପାଞ୍ଚ ଧୂପ ଚାଲିଛି ।

ଦୀର୍ଘ ଦିନ ଧରି ଅବହେଳିତ ଅବସ୍ଥାରେ ରହିବା ପରେ ବର୍ତ୍ତମାନ ଅବସ୍ଥାରେ ପରିବର୍ତ୍ତନ ହୋଇଥିବାରୁ ସାଧାରଣରେ ଉତ୍ସାହ ପ୍ରକାଶ ପାଇଛି ।

ରାଜ୍ୟଦେବୋତ୍ତର ବିଭାଗ ପକ୍ଷରୁ ସ୍ୱତନ୍ତ୍ର ଦୃଷ୍ଟି ଦିଆଗଲେ ଏହି କାରୁକାର୍ଯ୍ୟ ଭରା ଦେବ ମନ୍ଦିର ସୁରକ୍ଷିତ ହୋଇପାରିବ ବୋଲି ମତ ପ୍ରକାଶ ପାଉଛି ।

---

*ପରିଚାଳନା ସମ୍ପାଦକ,*
*ଦୈନିକ 'ଇଶା' ।*



ଉତ୍କଳ ଗୌରବ ମଧୁସୂଦନ ଦାସଙ୍କ ଜୟନ୍ତୀ ଅବସରରେ ବାଚସ୍ପତି ଶ୍ରୀ ଯୁଧିଷ୍ଠିର ଦାସ ଏବଂ ସୂଚନା ଓ ଲୋକ ସମ୍ପର୍କ ମନ୍ତ୍ରୀ ଶ୍ରୀ ଶରତ୍ କୁମାର କର ବିଧାନ ସଭା ପରିସର ମଧ୍ୟରେ ଥିବା ମଧୁସୂଦନ ଦାସଙ୍କ ପ୍ରତିମୂର୍ତ୍ତିରେ ମାଲ୍ୟାର୍ପଣ କରୁଛନ୍ତି ।




ଏକ

ଦାରୁବ୍ରହ୍ମ ଜ୍ୟୋତିର୍ମୟ ଶ୍ରୀଜଗନ୍ନାଥଙ୍କୁ କେନ୍ଦ୍ରକରି ଓଡ଼ିଶାର ଗୌରବାବହ ଐତିହ୍ୟ ଓ ସଂସ୍କୃତି ଯେପରି ଆନ୍ତର୍ଜାତୀୟ ଦରବାରରେ ଅନାଦି କାଳରୁ ବିଶ୍ୱମାନବସମାଜକୁ ଐନ୍ଦ୍ରଜାଲିକ ଆଭାରେ ଆକୃଷ୍ଟ ରହସ୍ୟାଚ୍ଛନ୍ନ କରି ଆସିଛି; ସେହିପରି ଦାରୁଚତୁର୍ଦ୍ଧାମୂର୍ତ୍ତିଙ୍କୁ ଭିତ୍ତିକରି ବଡ଼ଦାଣ୍ଡରେ ପ୍ରସିଦ୍ଧି ଲାଭ 'ରଥଯାତ୍ରା' ଶତାବ୍ଦୀ ଶତାବ୍ଦୀ ଧରି ଧାର୍ମିକ ଜୀବନ ପ୍ରବାହରେ ଉଦ୍ଦୀପ୍ତ ଫଲଗୁ ସୃଷ୍ଟି କରିଆସିଛି । ବିଶ୍ୱମାନସରେ ପୁରୁଷୋତ୍ତମତତ୍ତ୍ୱକୁ ପ୍ରତୀକ କରି ଉତ୍କଳଭୂଖଣ୍ଡ ଯେପରି ସର୍ବଧର୍ମ ସମନ୍ୱୟଭୂମିର ଐତିହାସିକ ମାନ୍ୟତା ଲାଭ କରିଛି ସେହିପରି 'ରଥଯାତ୍ରା'ର ପୃଷ୍ଠଭୂମିରେ ବଡ଼ଦାଣ୍ଡ, ଶରଧାବାଲି, ବଳଗଣ୍ଡି, ଗୁଣ୍ଡିଚାମଣ୍ଡପ, ବାଇଶିପାହାଚ, ପହଣ୍ଡିବିଜେ ଓ ଛେରାପହଁରା ଇତ୍ୟାଦି ଜନବିଶ୍ୱାସରେ ନାନାଧାରଣା, କିମ୍ବଦନ୍ତୀ ଓ ମହାଭାବ ଉଦ୍ରେକ କରି ଆସିଛି ।

ବିଜ୍ଞାନର ବହୁଧାବିଭକ୍ତ ପ୍ରଗତି ଓ ବିବର୍ତ୍ତନମୁଖୀ ମାନବିକ ମୂଲ୍ୟବୋଧର ପଟାନ୍ତର ସତ୍ତ୍ୱେ ଏବେବି ବଡ଼ଦାଣ୍ଡରେ ରଥ ଉପରେ ଜଗନ୍ନାଥ କଳିଯୁଗର ଭୂଷଣ, ମହାବାହୁ ପତିତପାବନ ଓ ଆର୍ତ୍ତତ୍ରାଣ–ବାମନ ରୂପେ ପୁନର୍ଜନ୍ମ ହରଣ କାରୀ ପରଂବ୍ରହ୍ମ ଭାବରେ ଲୋକ–ବିଶ୍ୱାସ ଭାଜନ ହୋଇ ରହିଛନ୍ତି । ଶହଶହ ବର୍ଷର ବ୍ୟବଧାନ ଭିତରେ ଯୁଗ, ଧର୍ମ, ନୀତି, ଆଶ୍ରୟ, ଶାସନ, ଶିକ୍ଷା ଓ ସଂସ୍କାର ପରିବର୍ତ୍ତନ ମଧ୍ୟରେ ବି ଲକ୍ଷଲକ୍ଷ ତୀର୍ଥଯାତ୍ରୀ ରଥ ଉପରେ ବାମନ ରୂପୀ ଚକାଡୋଳାଙ୍କୁ ଦର୍ଶନ କରି ମୋକ୍ଷପ୍ରାପ୍ତିର ଅଭିଳାଷରେ ବାଲିରେଣୁ ଧାରଣା ପୂର୍ବକ ବଡ଼ଦାଣ୍ଡରେ ସମାଗମ ହେଉଛନ୍ତି ।

'ରଥଯାତ୍ରା' ଶ୍ରୀଜଗନ୍ନାଥ ସଂସ୍କୃତିର ଐକ୍ୟ, ମିଳନ ଓ ମୈତ୍ରୀର ପ୍ରତ୍ୟୟଧର୍ମୀ ମହୋତ୍ସବ ଭାବରେ ଯୁଗମାନସ, ଶାସନ, ସଂସ୍କୃତି କଳା ତଥା ସାହିତ୍ୟକୁ ପ୍ରଭାବିତ କରିଆସିଛି । ରଥ ଉପରେ ମହାରଥୀ ଜ୍ୟୋତିର୍ବ୍ରହ୍ମଙ୍କ ଦର୍ଶନ ନିମନ୍ତେ ସାତଶ, ପଚାଶ କୋଶରୁ ଭକ୍ତ ପ୍ରାର୍ଥନା କରିଛି – 'ମୋହ ଯିବା ଯାଏ ଥିବ ବଡ଼ ଦାଣ୍ଡେ ଥିଁ, ଏବଂ ବିଷୟ ଆସକ୍ତ ଜୀବନରୁ ଦୂରେଇ ଯାଇ ପରମାନନ୍ଦ ପ୍ରାପ୍ତି ଆଶାରେ ଗାଇଛି – 'ଅକାମନ ଗୁଣ୍ଡିଚା ଯିବା, ଚକାନୟନ ଦେଖିବା ।' ଅନୁରୂପ ଭାବରେ ଜନବିଶ୍ୱାସ ରହିଛି – ଭକ୍ତ ହାତ ଟେକା ଶ୍ରୀଫଳ ଗ୍ରହଣ ନିମନ୍ତେ ରଥଉପରେ ମହାବାହୁ ଉଠି ଆସିଛି, ଭକ୍ତର ମାନରକ୍ଷା ପାଇଁ ବଳଗଣ୍ଡିଠାରେ ରଥଉପରେ ଦେବତା ସ୍ଥିରରହୁଛି ଏବଂ ନନ୍ଦିଘୋଷ ପରିତ୍ୟାଗ କରି ମହାବିଗ୍ରହ ଭାବସମୁଦ୍ର ବେଳାରେ ଭକ୍ତମଉବଲିଆ ନିମିତ୍ତ ବାଲିରଥ ଆରୋହଣ କରିଛି । ଏହି ଉପାସ୍ୟ ଧର୍ମବିଶ୍ୱାସ ଚରମ ଓ ପରମ ଭାବରୂପ ଗ୍ରହଣ କରିଛି ଜଗନ୍ନାଥ ପାଣିଙ୍କ 'ଗୁଣ୍ଡିଚା ବିଜେ' କାବ୍ୟରେ ନିମ୍ନମତେ – 'ରଥପରେ ଦେଖାଦେବ ଏଠିବି ପ୍ରାର୍ଥନା ଅନ୍ତିମେ ନ ମିଳେ ଭୀମଯମର ଯାତନା ।'

ସୁତରାଂ ଏହି ଯାତ୍ରାକୁ କେନ୍ଦ୍ରକରି ଓଡ଼ିଶାର ଲୋକପର୍ବ ଓ ଯାତ୍ରାସଂସ୍କୃତି ଯେପରି ସମୃଦ୍ଧିଶାଳୀ, ସେହିପରି ଓଡ଼ିଆସାହିତ୍ୟ ଏହାର ମହତ୍ତ୍ୱ କଥନରେ ଆପବିତ୍ରୁଭ ହୋଇଆସିଛି । ନୀଳାଦ୍ରି ମହୋତ୍ସବ, ଦେଉଳତୋଳା, ଯାତ୍ରାଭାଗବତ, କାଳସାର, ଗୁଣ୍ଡିଚା ବିଜେ, ଗୁଣ୍ଡିଚାଚମ୍ପୂ, ଗୁଣ୍ଡିଚାଶତକ, ମହାଭାରତ, ବଡ଼ଛତା, ଭାବସମୁଦ୍ର, ଗୁଣ୍ଡିଚାବିଜୟ ଇତ୍ୟାଦି ପ୍ରାଚୀନ–ମଧ୍ୟଯୁଗୀୟ ସାହିତ୍ୟ କୃତି ତଥା ନୀଳଶୈଳ, ନୀଳାଦ୍ରିବିଜୟ ପ୍ରଭୃତି ଆଧୁନିକ ଉପନ୍ୟାସ ସୃଷ୍ଟି ଗୁଡ଼ିକରେ ଶ୍ରୀମନ୍ଦିର ଇତିହାସରେ ପ୍ରଚଳିତ ପାରମ୍ପରିକ ଦ୍ୱାଦଶଯାତ୍ରା ମଧ୍ୟରୁ 'ରଥବର ଗତିଃ ପ୍ରୀତିଦେ ଗୁଣ୍ଡିଚା' ଯାତ୍ରା କାବ୍ୟିକ ରସାନନ୍ଦ ଭିତରେ ଲୋକବିଶ୍ୱାସକୁ ଅନୁରଞ୍ଜିତ କରି ଆସିଛି ।

ଉତ୍ପତ୍ତି ଓ ସୃଷ୍ଟି ରହସ୍ୟ ଦିଗରୁ ଜଗନ୍ନାଥ, ବଳଭଦ୍ର, ସୁଦର୍ଶନ, ନୀଳମାଧବ, ଶବରୀ ନାରାୟଣ, ଶ୍ରୀମନ୍ଦିର, ବୈକୁଣ୍ଠ, ମେଘନାଦପାଚେରୀ ଓ ବାଇଶିପାହାଚ ଯେପରି ପ୍ରାଚୀନ ଓ ତତ୍ତ୍ୱଗର୍ଭକ ସେହିପରି 'ବଡ଼ଦାଣ୍ଡେ ରଥଯାତ୍ରା' ଗୁଣ୍ଡିଚା ଯାତ୍ରା, ଘୋଷ ଯାତ୍ରା, ପତିତପାବନ ଯାତ୍ରା, ଦଶାବତାର ଯାତ୍ରା, ନବକଳେବର

ଯାତ୍ରା, ଦକ୍ଷିଣାଭିମୁଖ ଯାତ୍ରା, ଅନ୍ତର୍ବେଦୀ ଯାତ୍ରା, ଆଡ଼ପ ଯାତ୍ରା, ନନ୍ଦିଘୋଷ ଯାତ୍ରା, ବାହୁଡ଼ା ଯାତ୍ରା ଭାବରେ ଜନସାଧାରଣଙ୍କୁ ଆକର୍ଷିତ କରି ଆସିଛି ।

(ଦୁଇ)

ଲୋକ ମାନସରେ ପ୍ରଚଳିତ ଜନଶ୍ରୁତି ଅନୁସାରେ ପୌରାଣିକ ଆଶ୍ରିତ କିମ୍ବଦନ୍ତୀପୁରୁଷ ପରମବୈଷ୍ଣବ ମାଳବରାଜା ଇନ୍ଦ୍ରଦ୍ୟୁମ୍ନଙ୍କ ସହଧର୍ମିଣୀ ଗୁଣ୍ଡିଚାଙ୍କ ଅନୁରୋଧ କ୍ରମେ ତାଙ୍କର ସ୍ମୃତିସ୍ମରଣ ନିମନ୍ତେ ମହାଯଜ୍ଞବେଦୀ ଜନ୍ମମଣ୍ଡପକୁ ଦାରୁଦେବତାଙ୍କ ରଥାରୂଢ଼ ବିଜେ ଯାତ୍ରା ହିଁ 'ଗୁଣ୍ଡିଚା ଯାତ୍ରା' ଭାବରେ ପରିଚିତ । ଅନୁରୂପ ଭାବରେ ଜଗତର ମଙ୍ଗଳ ଘୋଷ ପାଇଁ ଯାତ୍ରା କରୁଥିବାରୁ ଏହି ଯାତ୍ରା ମହାବାହୁଙ୍କ 'ଘୋଷଯାତ୍ରା' ଭାବରେ ବିଖ୍ୟାତ । ରତ୍ନସିଂହାସନରୁ ଓହ୍ଲାଇ ଆସି ସର୍ବସାଧାରଣଙ୍କ ଦୁଃଖ–ଦୈନ୍ୟରେ ସମଭାଗୀ ହେଉଥିବା ମହାବାହୁ ବାମନଙ୍କର ଏ ଯାତ୍ରାକୁ 'ପତିତପାବନୀ ଯାତ୍ରା' ରୂପରେ ଗ୍ରହଣ କରାଯାଏ । 'ଆଡ଼ପ' ଅର୍ଥାତ୍ ମୂଳ ବେଦୀକୁ ଦକ୍ଷିଣମୁହାଁ ହୋଇ ଦଶାବତାର ରୂପରେ ଅନ୍ତର୍ବେଦୀ ପରିତ୍ୟାଗ କରି ଯାତ୍ରା କରିଥିବାରୁ ଏହି ଯାତ୍ରାକୁ ମହାବିଗ୍ରହଙ୍କର 'ଆଡ଼ପ ଯାତ୍ରା', ଦକ୍ଷିଣାଭିମୁଖ୍ୟ ଯାତ୍ରା ଓ ଦଶାବତାର ଯାତ୍ରା ନାମରେ ଅଭିହିତ କରାଯାଇ ଥାଏ ।

ଭାରତୀୟ ନବଜାଗରଣର ପ୍ରାକ୍ ଅବସ୍ଥାରେ ରାମକୃଷ୍ଣ, ବିବେକାନନ୍ଦ, ଦୟାନନ୍ଦ, ରାମମୋହନ ଓ ଦେବେନ୍ଦ୍ରନାଥ ପ୍ରମୁଖ ମହାନ୍ ଯୁଗପୁରୁଷମାନେ ଏହି ରଥଯାତ୍ରାର ପରମ୍ପରାକୁ ଭାରତୀୟ ସଂସ୍କୃତିର ମୂଳଧାର ଓ ଏକତାର ମାନଦଣ୍ଡ ବୋଲି ଦର୍ଶାଇଛନ୍ତି । ରାମକୃଷ୍ଣ ପରମହଂସ ଶାନ୍ତି, ପ୍ରୀତି, ଏକତା ଓ ସମତାର ମୂଳବୀଜ ଭାବରେ ଶ୍ରୀକ୍ଷେତ୍ରର ରଥ ମହୋତ୍ସବକୁ ପ୍ରଶଂସା କରି ତା'ର ଅନୁକରଣରେ ନିଜ ଆଶ୍ରମରେ ରଥଯାତ୍ରା ପାଳନ କରିଛନ୍ତି । ମହର୍ଷି ଦେବେନ୍ଦ୍ରନାଥ ଏହିଯାତ୍ରାକୁ ଏକେଶ୍ୱରବାଦୀ ଆର୍ଯ୍ୟ ସଂସ୍କୃତି ମାନବ କଲ୍ୟାଣଧର୍ମୀ ପ୍ରତୀକ ଭାବରେ ସ୍ୱୀକାର କରିଛନ୍ତି । ଜାତି, ବର୍ଣ୍ଣ, ଧର୍ମ ଓ ସଂସ୍କୃତିର ହୀନମନ୍ୟତା ଊର୍ଦ୍ଧ୍ୱରେ ପ୍ରତିଷ୍ଠିତ ଏହି ମହୋତ୍ସବର ଆଦର୍ଶ ଟୋକିଓ, ଲଣ୍ଡନ, ମସ୍କୋ, ନିଉୟର୍କ ଓ ସିଙ୍ଗାପୁର ପ୍ରଭୃତି ଆନ୍ତର୍ଜାତୀୟ ସମ୍ମାନପ୍ରାପ୍ତ ନଗର ସଭ୍ୟତାକୁ ମଧ ଆକୃଷ୍ଟ କରି ପାରିଛି ।

ଏହି 'ରଥଯାତ୍ରା'ର ପରମ୍ପରା ପ୍ରାଚୀନ–ଧର୍ମପ୍ରାବଲ୍ୟ କାଳରେ ଶ୍ରୀକ୍ଷେତ୍ରକୁ ଶଙ୍କର ରାମାନୁଜ, ନିମ୍ବାର୍କ, ନାନକ ଓ ଶ୍ରୀଚୈତନ୍ୟ ପ୍ରମୁଖ ଧର୍ମଗୁରୁମାନଙ୍କୁ ଆକର୍ଷଣ କରି ଆଣିଥିବାର ପ୍ରମାଣ ମିଳେ । ଶ୍ରୀଜଗନ୍ନାଥଙ୍କୁ ପ୍ରତୀକ ଭାବରେ ଗ୍ରହଣ କରି ବଡ଼ଦାଣ୍ଡର ତୀର୍ଥ ଯାତ୍ରୀଙ୍କ ମନରେ ଜୈନ, ବୌଦ୍ଧ, ବ୍ରାହ୍ମଣ୍ୟ, ଶୈବ, ଶାକ୍ତ ଓ ବୈଷ୍ଣବ ଆଦି ଧର୍ମସମ୍ପ୍ରଦାୟର ପୁରୋଧାମାନେ ସ୍ୱଧର୍ମର ପ୍ରତ୍ୟୟ ସୃଷ୍ଟି କରିବାରେ ସମର୍ଥ ହୋଇଛନ୍ତି ଏହିକ୍ରମରେ ରଥ ଉପରେ ଶ୍ରୀଜୀଉଙ୍କ ନବଯୌବନକାନ୍ତିକୁ ସନ୍ଦର୍ଶନ କରି ଶ୍ରୀଚୈତନ୍ୟ ସ୍ୱାମୀ ଶ୍ରୀମନ୍ଦିର ସାଂସ୍କୃତିକ ଚେତନାରେ କୃଷ୍ଣତ୍ୱ ଆରୋପ କରି ଓଡ଼ିଶାର ଜ୍ଞାନମିଶ୍ରିତ ଜାତୀୟଧର୍ମଧାରଣାରେ ରାଗାନୁଗା ପ୍ରେମଧର୍ମର ପ୍ଲାବନ ସୃଷ୍ଟି କରି ଏକ ଐତିହାସିକ ବୈପ୍ଳବିକ ପରିବର୍ତ୍ତନର ଅଧ୍ୟାୟ ପ୍ରଚଳନ କରିପାରିଛନ୍ତି ।

(ତିନି)

ରଥଯାତ୍ରାର ଉତ୍ପତ୍ତି ସମ୍ପର୍କରେ ବୌଦ୍ଧଧର୍ମକୁ ଆଧାରକରି ଡକ୍ଟର ହରେକୃଷ୍ଣ ମହତାବ 'ଓଡ଼ିଶା ଇତିହାସ' ଗ୍ରନ୍ଥରେ ଦର୍ଶାଇଛନ୍ତି ଖ୍ରୀ: ପୂ ୪ର୍ଥ ଶତାବ୍ଦୀରୁ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ନବଦିବସାବଧି ମହାନ୍ ରଥଯାତ୍ରା ପ୍ରତିପାଳିତ ହୋଇ ଆସୁଛି । ଆଲୋଚକ ଲକ୍ଷ୍ମୀନାରାୟଣ ସାହୁ ଇନ୍ଦ୍ରଦ୍ୟୁମ୍ନ କିମ୍ବଦନ୍ତୀ ମଧ୍ୟରେ ଖାରବେଳଙ୍କ ଐତିହାସିକ ଜୀନାସନ ସ୍ଥାପନର ସ୍ୱାକ୍ଷରକୁ ପ୍ରମାଣକରି ଜୈନଧର୍ମ ଭିତ୍ତିରେ ଏହି ଯାତ୍ରା ଖ୍ରୀ: ପୂ ୧ମ ଶତାବ୍ଦୀରୁ ପ୍ରଚଳିତ ହୋଇ ଆସୁଥିବାର ଯୁକ୍ତି ପ୍ରଦର୍ଶନ କରିଛନ୍ତି ।

ଡକ୍ଟର ନବୀନ କୁମାର ସାହୁ ଏହି 'ରଥଯାତ୍ରା'କୁ 'ଗୁଣ୍ଡିଚାଯାତ୍ରା' ଭାବରେ ନାମିତ କରିବା ପାଶ୍ଚାତ୍‌ରେ 'ଇନ୍ଦ୍ରଦ୍ୟୁମ୍ନଙ୍କ ରାଣୀ ଗୁଣ୍ଡିଚାଙ୍କ ଜନଶ୍ରୁତିକୁ ସମ୍ପୂର୍ଣ୍ଣ ପରିହାର କରିଛନ୍ତି । ୧୦୭୬ ଖ୍ରୀ: ଠାରୁ ୧୧୪୭ ଖ୍ରୀ: ଅ ପର୍ଯ୍ୟନ୍ତ ଉତ୍କଳର ସିଂହାସନକୁ ଅଳଂକୃତ କରିଥିବା ଚୋଳଗଙ୍ଗ ଦେବଙ୍କ ଗୁଣ୍ଡିଚା ମନ୍ଦିର ନିର୍ମାଣର ଇତିହାସକୁ ସଂଶ୍ଳିଷ୍ଟ କରି ଏହି କ୍ରମରେ ସେ ମନ୍ତବ୍ୟ ଦିଅନ୍ତି – ଚୋଳଗଙ୍ଗ ଦେବଙ୍କ ରାଜତ୍ୱ କାଳରୁ 'ରଥଯାତ୍ରା' ଗୁଣ୍ଡିଚା ଯାତ୍ରା ଭାବରେ ଅଭିହିତ ହୋଇ ଆସୁଛି । (History of Orissa– P.—206).

ଅପର ପକ୍ଷରେ ଗୁଣ୍ଡିଚା ଶବ୍ଦର ବ୍ୟୁତ୍ପତ୍ତିକୁ ଅବଲମ୍ବନ କରି ୪ର୍ଥ ଶତାବ୍ଦୀରୁ ଓଡ୍ର ଶବରମାନଙ୍କ ଦ୍ୱାରା ଜଗନ୍ତ ବା ଜଗାହୋଇ ଜଗନ୍ନାଥଙ୍କୁ ଗୁଡ଼ିଶା ବା କୁଟୀରରୁ କୁଟୀର ଭ୍ରମଣ କରାଇ ରଥଯାତ୍ରାର ଆରମ୍ଭ ହୋଇଛି ବୋଲି ଡକ୍ଟର ବେଣୀମାଧବ ପାଢ଼ୀ, ଡକ୍ଟର ହରେକୃଷ୍ଣ ମହତାବ୍ ଓ ପଣ୍ଡିତ ନୀଳକଣ୍ଠ ଦାଶ ସଂଭାବନା କରିଛନ୍ତି । ପୁନଶ୍ଚ ସୌରା ଭାଷାରେ ପ୍ରଚଳିତ 'କୁନ୍–ଡ଼ିଜା' ଶବ୍ଦର ଆରୋପଣ ଓ ବ୍ୟବହାରଗତ ଗୁରୁତ୍ୱକୁ ନୂତନ ତତ୍ତ୍ୱଗତିକ କରିଛନ୍ତି । ଏହୃଷ୍ଟିରୁ କୁନ୍–ଡ଼ିଜା ଅର୍ଥ ଯେଉଁ ମୂଳଦାରୁ ଗଣ୍ଡି । ଏହାର ପରିବର୍ତ୍ତିତ ଅର୍ଥ ହେଉଛି 'ଜନ୍ମସ୍ଥାନ' ଯେଉଁ କ୍ଷେତ୍ରରେ 'ଜଗନ୍ତ' ଶବରମାନଙ୍କ ଦ୍ୱାରା 'ଦାରୁରୂପ–ଗଣ୍ଡି' ଭାବରେ ପୂଜିତ ହେଉଥିଲେ । ପରବର୍ତ୍ତୀ କାଳରେ ଶବରୀ ଅର୍ଚ୍ଚିତ ଦାରୁଗଣ୍ଡିରେ ବ୍ରହ୍ମ ସଂସ୍ଥାପନ ହୋଇ ପୁରୁଷୋତ୍ତମ ତତ୍ତ୍ୱର ବିକାଶ ଘଟିଥିବ । ଶବର ମୌଳିକତାକୁ ସ୍ୱୀକାର କରିବା ଉଦ୍ଦେଶ୍ୟରେ ଏହି ଦାରୁବ୍ରହ୍ମ ଜନ୍ମସ୍ଥାନ କୁନ୍‌ଡ଼ିଜା ବା ଗୁଣ୍ଡିଚା ମନ୍ଦିରକୁ ଯାତ୍ରା କରାଉଥିବା ବିଧିରୁ ଖ୍ରୀ :ଅ: ୪ର୍ଥ ଶତାବ୍ଦୀରୁ 'ରଥଯାତ୍ରା'ର ପରିଯୋଜନା ସଂଭବ ହୋଇଥିବ । ସ୍କନ୍ଦପୁରାଣରେ ମଧ ଅନୁରୂପ ଭାବରେ ଗୁଣ୍ଡିଚା ମଣ୍ଡପକୁ ମୂଳ ଜନ୍ମ ସ୍ଥାନ ଭାବରେ ବର୍ଣ୍ଣନା କରାଯାଇଛି । ଯଥା– 'ଗୁଣ୍ଡିଚା ମଣ୍ଡପ ନାମ ଯାତ୍ରାହମ ଜନଂ ପୁରା । ଏଥିରୁ ସ୍ପଷ୍ଟ ପ୍ରମାଣିତ ହୁଏ ଓଡ୍ର ଖଣ୍ଡରେ ବୌଦ୍ଧ ତନ୍ତ୍ର ଜ୍ଞାନର ବିକାଶରେ ଯଥେଷ୍ଟ ପୂର୍ବରୁ 'ରଥଯାତ୍ରା'ର ପ୍ରସାର ହୋଇସାରିଛି ।

(ଚାରି)

ରଥଯାତ୍ରା ସମ୍ପର୍କରେ ପ୍ରଥମତଃ ଅନର୍ଘ ନାଟକରୁ ଆଂଶିକ ସୂଚନା ମିଳିଥାଏ । ଅଷ୍ଟମ ଶତାବ୍ଦୀର ରଚନା ଏହି ଗ୍ରନ୍ଥରେ ଶ୍ରୀଜଗନ୍ନାଥଙ୍କ ମହୋତ୍ସବ ବନ୍ଦନା ବିଷୟ ଉଲ୍ଲିଖିତ ରହିଛି । ଏହି ମହୋତ୍ସବ ହିଁ 'ରଥଯାତ୍ରା' ଏଥିରେ ଦ୍ୱନ୍ଦର ଅବକାଶ ନାହିଁ । ପରବର୍ତ୍ତୀ କାଳରେ 'ମାଦଳା ପାଞ୍ଜି' ଅନୁସାରେ ଶ୍ରୀଜଗନ୍ନାଥ

ଓଡ଼ିଶାର ରାଷ୍ଟ୍ର ଦେବତା ଓ ରଥଯାତ୍ରା ଜାତୀୟ ମହୋତ୍ସବର ସମ୍ମାନ ପାଇ କପିଳେନ୍ଦ୍ର ଓ ପୁରୁଷୋତ୍ତମଦେବଙ୍କ ରାଜତ୍ୱ ଚତୁର୍ଦ୍ଦଶ ଶତାବ୍ଦୀରେ ଛେରାପହଁରା, ପହଣ୍ଡିବିଜେ ଭଳି ଭକ୍ତିଭାବ-ଉଦ୍ରେକ ଆଡ଼ମ୍ବର ଓ ଉପଚାର ମଧ୍ୟରେ ଆକର୍ଷଣୀୟ ହୋଇଉଠିଛି । ଏହି ପରିପ୍ରେକ୍ଷୀରେ ଛେରାପହଁରାକୁ କେନ୍ଦ୍ରକରି ପୁରୁଷୋତ୍ତମ ଦେବଙ୍କ କାଞ୍ଚି ଅଭିଯାନ ଓ ପଦ୍ମାବତୀଙ୍କ ଆନୟନ ଓଡ଼ିଶାର ଜନମାନସରେ ଭକ୍ତି ଓ ବୀରରସର ପ୍ରାବଲ୍ୟ ସୃଷ୍ଟି କରିଆସିଛି ।

ଏହି ରଥଯାତ୍ରାର ମହାନ୍ ପରମ୍ପରା ଭାରତବର୍ଷର ବରିଷ୍ଠ ଧର୍ମାଚାର୍ଯ୍ୟମାନଙ୍କୁ ଆକୃଷ୍ଟ କରିଛି । ଫଳରେ ଅଧିକାଂଶ ପ୍ରସାରଣଶୀଳ ଧର୍ମଧାରଣା ରଥଯାତ୍ରାର ମୂଳଧାରାରେ ପ୍ରବେଶ କରିଛି । ଏହି ସମ୍ମିଶ୍ରଣର ତଥ୍ୟ ଓ ସ୍ୱରୂପକୁ ରଥଯାତ୍ରାର ପ୍ରଚଳିତ ବିଧିରେ ଲକ୍ଷ୍ୟକରି ଡକ୍ଟର ନବୀନ କୁମାର ସାହୁ, ଗୁରୁଦାସ ସରକାର, ଡଃ ବାସୁଦେବ ସାହୁ, ଡକ୍ଟର ଓ୍ୱିଲକିନ୍ ପ୍ରମୁଖ ବିଦ୍ୱାନମାନେ ଶ୍ରୀଜଗନ୍ନାଥଙ୍କ ଶବର ଦେବତା ଓ ରଥଯାତ୍ରାକୁ ଶବର ସଂସ୍କୃତି ଅନୁପ୍ରଭାବର ପରିଣତି ଭାବରେ ଗ୍ରହଣ କରିଛନ୍ତି । ଡକ୍ଟର ମହତାବ୍, ସୁନ୍ଦରାନନ୍ଦ ବିଦ୍ୟାବିନୋଦ ଓ ପ୍ରାଧ୍ୟାପକ ରଞ୍ଜଲସନ - ଦାରୁବିଗ୍ରହଙ୍କୁ 'ବୁଦ୍ଧୋ' ଧମ୍ମୋ ଓ ସଂଘୋ'ର ପ୍ରତୀକ ଭାବରେ ଗ୍ରହଣ କରି ରଥଯାତ୍ରାକୁ ବୌଦ୍ଧଧର୍ମର ଅବଶେଷଧାରଣା ସହିତ ସଂଯୋଗ କରିଛନ୍ତି । 'ଏତଦ୍‌ବ୍ୟତୀତ ପ୍ରଫେସର ପ୍ରଭାତ ମୁଖାର୍ଜୀ, ପିଟର୍‌ସନ୍, ସଦାଶିବ ମିଶ୍ର, ସୂର୍ଯ୍ୟ ନାରାୟଣଦାସ ଓ ମନମୋହନ ଗାଙ୍ଗୁଲି ପ୍ରମୁଖ ଆଲୋଚକମାନେ ଉପନିଷଦୀୟ ବ୍ରାହ୍ମଣ୍ୟ ସଂସ୍କୃତି ଓ ଧର୍ମାଚାରର ମଧ୍ୟରେ ଦାରୁ ମୂର୍ତ୍ତି ଚତୁଷ୍ଟୟଙ୍କୁ ବିଚାର କରି ରଥ ଯାତ୍ରାକୁ ପିଣ୍ଡ ବ୍ରହ୍ମାଣ୍ଡ ତତ୍ତ୍ୱ ଓ ସୃଷ୍ଟି ଉପାସନାର ପରିଣତ ଭାବରେ ଉଲ୍ଲେଖ କରିଛନ୍ତି ।

ଏସବୁ ଉର୍ଦ୍ଧ୍ୱରେ ରଥଯାତ୍ରାକୁ ଜୈନଧର୍ମର ଅନୁଗାମୀ ଭାବରେ ସମର୍ଥନ କରାଯାଇ ପାରେ । ଜୈନ ବିଗ୍ରହ ସୂତ୍ରକ ଜୀନାସନ ମଗଧରୁ କଳିଙ୍ଗ ଆନୟନ ଓ ଏହି ମୂର୍ତ୍ତିର ସ୍ଥାପନା ପୁଣି ଜୈନଧର୍ମାବଲମ୍ବୀ କଳିଙ୍ଗ ସମ୍ରାଟ ଖାରବେଳଙ୍କ ରଥଯାତ୍ରା ମୁଖ୍ୟରୂପ ଐତିହାସିକ ସତ୍ୟାନୁଗାମୀ ବୋଧ ହେଉଛି । ଜୈନଗୁରୁ ପାର୍ଶ୍ୱନାଥଙ୍କ (ଋଷଭନାଥ) ଜନ୍ମତିଥିରେ ଅନୁଷ୍ଠିତ ଆଷାଢ଼ ଶୁକ୍ଳପକ୍ଷ ଦ୍ୱିତୀୟା 'ଘୋଷଯାତ୍ରା'ଜୈନ ପରମ୍ପରା ଅନୁସାରୀ ହୋଇଛି ବୋଲି ସ୍ୱର୍ଗତ କେଦାରନାଥ ମହାପାତ୍ର ଓ ଲକ୍ଷ୍ମୀନାରାୟଣ ସାହୁଙ୍କ ପରି ବିଦ୍ୱାନମାନେ ଅଭିମତ ପ୍ରକାଶ କରିଛନ୍ତି ।

ଫଳତଃ ଉପରୋକ୍ତ ଆଲୋଚନାରୁ ଏହା ସ୍ଥିର ନିଶ୍ଚିତ ବୋଧହୁଏ ଯେ ଶ୍ରୀଜଗନ୍ନାଥ ଯେପରି ସମୟର ବିବର୍ତ୍ତନ ମଧ୍ୟରେ ନାନାଧର୍ମ, ନାନା ମତ ଓ ନାନା ସମ୍ପ୍ରଦାୟକୁ ଗ୍ରହଣ କରି ମଧ୍ୟ ଅବିଚଳିତ ଓ ସ୍ୱତନ୍ତ୍ର ହୋଇ ରହିଛନ୍ତି ସେହିପରି ଶ୍ରୀକ୍ଷେତ୍ରର 'ରଥଯାତ୍ରା' ନାନା ଧର୍ମଧାରଣାରୁ ସାର ନିର୍ଯ୍ୟାସ ଆହରଣ କରି ମମତା-ପ୍ରତୀକ ଧର୍ମୀ ମଙ୍ଗଳକାରୀ ଘୋଷଯାତ୍ରା ଭାବରେ ଜନମାନସକୁ ପ୍ରଭାବିତ କରିଆସୁଛି ।

---

*ଅଧ୍ୟାପକ,*
*ମାଣିକେଶ୍ୱରୀ କଲେଜ, ସୁନ୍ଦରଗଡ଼-୭୭୦୦୭୪ ।*



ଭୁବନେଶ୍ୱର ସଚିବାଳୟଠାରେ ଅନୁଷ୍ଠିତ ଅନ୍ତଃ ଗଣ ମାଧ୍ୟମ ପ୍ରଚାର ସମନ୍ୱୟ ସମିତି ବୈଠକରେ ସୂଚନା ଓ ଲୋକ ସମ୍ପର୍କ ମନ୍ତ୍ରୀ ଶ୍ରୀ ଶରତ କୁମାର କରଙ୍କ ଅଭିଭାଷଣ (୬/୬/୧୯୯୨) ।



# ଭାରତୀୟ ସଂସ୍କୃତିରେ ଶ୍ରୀରାଧା

କୁମାରୀ ହରପ୍ରିୟା ପଣ୍ଡା

ଭାରତୀୟ ସାହିତ୍ୟକୁ କେବେ, କିପରି ଓ କେଉଁଠାରୁ 'ରାଧା' ଶବ୍ଦଟି ଆସିଛି ତା'ର କୌଣସି ନିର୍ଦ୍ଦିଷ୍ଟ ସୂଚନା ନାହିଁ । କିନ୍ତୁ ବିଗତ ବହୁ ବର୍ଷର ଭାରତୀୟ ସାହିତ୍ୟର ପୃଷ୍ଠା ଉନ୍ମୋଚନ କଲେ ରାଧା–କୃଷ୍ଣ ଚରିତ୍ରର ଗୁରୁତ୍ୱ ସ୍ପଷ୍ଟ ହୁଏ । କେବଳ ସାହିତ୍ୟ ନୁହେଁ, ଧର୍ମର ପରମ୍ପରା ପୁଷ୍ଟ ସାମାଜିକ ଜୀବନରେ ମଧ୍ୟ ରାଧା–କୃଷ୍ଣ କଥାର ଅଖଣ୍ଡ ପ୍ରଭାବ ଲକ୍ଷ୍ୟଣୀୟ । ୧୫ଶ/୧୬ଶ ଶତାବ୍ଦୀର ସାହିତ୍ୟରେ ଯେଉଁ ସବୁ କାବ୍ୟ–କବିତା, ଭଜନ–ଜଣାଣ ସୃଷ୍ଟିର ପରମ୍ପରା ଉନ୍ମୋଚିତ ହେଲା, ସେ ସବୁର ପ୍ରେରଣାର ଉତ୍ସ ହେଉଛି ରାଧା–କୃଷ୍ଣ କଥା । ଅପ୍ରାକୃତ ପ୍ରେମମୟୀ ରାଧା ଏବଂ ପ୍ରେମମୟ ପୁରୁଷ କୃଷ୍ଣଙ୍କର ବୃନ୍ଦାବନ ଲୀଳାର ଆଲେଖ୍ୟ ଶ୍ରୀମଦ୍ ଭାଗବତ, ବ୍ରହ୍ମ ବୈବର୍ତ୍ତ ପୁରାଣ, ବୈଷ୍ଣବ ଗୋସ୍ୱାମୀ ରଚିତ କାବ୍ୟ, ନାଟକ ଏବଂ ବୈଷ୍ଣବ ପଦାବଳୀ ପ୍ରଭୃତିରେ ବେଶ୍ ଜୀବନ୍ତ ।

ବୈଷ୍ଣବ ଧର୍ମ ଓ ସାହିତ୍ୟର ପରମ୍ପରା ମଧ୍ୟରେ ପରମ ଆରାଧ୍ୟା ପ୍ରେମମୟୀ ରାଧା–ରାସେଶ୍ୱରୀ । ସେ କୃଷ୍ଣଙ୍କର ହ୍ଲାଦିନୀ–ଶକ୍ତି(୧) । ଶ୍ରୀକୃଷ୍ଣ ଲୀଳାର ସର୍ବସ୍ୱ ହେଉଛନ୍ତି – "ଶ୍ରୀରାଧା" । ଗୋଟିଏ କଥାରେ କହିଲେ, ଯେଉଁଳି ଦେହ ମଧ୍ୟରେ ଆତ୍ମାର ସତ୍ତା ଓ ମନ୍ଥନ, କାଷ୍ଠ ମଧ୍ୟରେ ଅଗ୍ନିର ସ୍ଫୁଲିଙ୍ଗ ବିଦ୍ୟମାନ, ସେହିଭଳି ବେଦ, ଉପନିଷଦ, ପୁରାଣ, ତନ୍ତ୍ର ଓ ସର୍ବ ବେଦାନ୍ତ ସାର ଶ୍ରୀମଦ୍ ଭାଗବତରେ ରାଧା ତତ୍ତ୍ୱର ରହସ୍ୟ ପ୍ରଚ୍ଛନ୍ନ ରହିଛି । ଅବଶ୍ୟ କେଉଁଠାରେ ସ୍ପଷ୍ଟ ଭାବରେ, କେଉଁଠାରେ ଇଙ୍ଗିତ ମାଧ୍ୟମରେ ଅଥବା କେଉଁଠାରେ ପ୍ରଚ୍ଛନ୍ନ ଭାବରେ ଶାସ୍ତ୍ର ସମୂହରେ ଶ୍ରୀରାଧାଙ୍କ ମହିମାର ଉଲ୍ଲେଖ ରହିଛି । କେତେକ ଗବେଷକଙ୍କ ମତରେ ଶ୍ରୀଚୈତନ୍ୟ ମହାପ୍ରଭୁ ଓ ବୈଷ୍ଣବାଚାର୍ଯ୍ୟଗଣ ଶ୍ରୀରାଧାଙ୍କୁ ପ୍ରାଧାନ୍ୟ ଦେଇ ଆସିଛନ୍ତି । ଅବଶ୍ୟ ବେଦାଦି ଶାସ୍ତ୍ରରେ କିମ୍ବା ଶ୍ରୀମଦ୍ ଭାଗବତରେ ଶ୍ରୀରାଧାଙ୍କର ନାମ ଓ ମହିମାର ଉଲ୍ଲେଖ ନାହିଁ । ତଥାପି ନିମ୍ନୋକ୍ତ କେତେକ ପ୍ରମାଣରୁ ଗବେଷକମାନଙ୍କର ଏହି ଧାରଣା ଭ୍ରମାତ୍ମକ ବୋଲି ପ୍ରମାଣିତ ହୁଏ ।

ଋକ୍, ସାମ ଓ ଅଥର୍ବ ବେଦରେ ବିଶେଷ ଭାବରେ ଲୀଳାମୟୀ ରାଧାଙ୍କର ନାମର ଉଲ୍ଲେଖ ଦେଖିବାକୁ ମିଳେ – "ସ୍ତୋତଂ ରାଧାନାଂ ପତେ ଗିର୍ବାହୋ ବୀରଯସ୍ୟ ତେ"(୨) । ଉପନିଷଦରେ ବର୍ଣ୍ଣିତ ହୋଇଛି–"ଶ୍ୟାମାଚ୍ଛବଳଂ ପ୍ରପଦ୍ୟେ ଶବଳାଂଛ୍ୟାମଂ ପ୍ରପଦ୍ୟେ "(୩) । ଅର୍ଥାତ୍ ମୁଁ ଶ୍ୟାମଙ୍କଠାରୁ ଶବଳ (ଶ୍ୟାମର ବିଳାସ ବୈଚିତ୍ର୍ୟର ଆଦର ଶ୍ରୀରାଧାଙ୍କୁ ପ୍ରାପ୍ତ ହୁଏ) । ପୁନଶ୍ଚ ଶବଳ (ଶ୍ରୀରାଧାଙ୍କଠାରୁ ଶ୍ୟାମସୁନ୍ଦରଙ୍କୁ ପ୍ରାପ୍ତ ହୁଏ । "ଗୋପାଳ ତାପିନୀ" ଶ୍ରୁତିରୁ ଜଣାଯାଏ ଗାନ୍ଧର୍ବୀ ଶ୍ରୀରାଧା(୩) ଶ୍ରୀକୃଷ୍ଣଙ୍କର ସର୍ବଶ୍ରେଷ୍ଠା କାନ୍ତା । ମଥୁରା ମଣ୍ଡଳରେ ଗୋକୁଳ ଧାମରେ ପୀତାମ୍ବରଧାରୀ ଦ୍ୱିଭୁଜ ଶ୍ୟାମସୁନ୍ଦର ରାଧିକା ଶ୍ରୀକୃଷ୍ଣଙ୍କର ଆଦ୍ୟାଶକ୍ତି ଶ୍ରୀରାଧା ନିତ୍ୟନିର୍ଗୁଣା ଲକ୍ଷ୍ମୀ –ଦୁର୍ଗାଦି ସମସ୍ତ ଭଗବତ୍ ଶକ୍ତିବର୍ଗ ତାହାଙ୍କର ଅଂଶ (୪) ।

ଋକ୍ ବେଦର ପରିଶିଷ୍ଟରେ ପ୍ରଦତ୍ତ ଶ୍ଳୋକରେ ଶ୍ରୀରାଧାଙ୍କ ଦ୍ୱାରା ମାଧବ ଏବଂ ମାଧବଙ୍କ ଦ୍ୱାରା ଶ୍ରୀରାଧା ଦୀପ୍ତିମାନ ପୂର୍ବକ ଜନଗଣଙ୍କ ମଧ୍ୟରେ ବିରାଜିତା(୫) । ବୃହତ୍ ଗୌତମୀୟ ତନ୍ତ୍ରରେ କୃଷ୍ଣଙ୍କୁ ଯେଉଁଳି ବିଶ୍ୱର କାର୍ଯ୍ୟ–କାରଣ ଓ ତୁରୀୟ–ଚିତତ୍ତ୍ୱ–ସ୍ୱରୂପ ରୂପେ ବର୍ଣ୍ଣନା କରାଯାଇଛି, ଠିକ୍ ସେଉଁଳି ଶ୍ରୀରାଧାଙ୍କୁ ମଧ୍ୟ ତା'ର ଶକ୍ତି ଭାବରେ ସର୍ବକରଣ–କାରଣ ସ୍ୱରୂପା ଆଦ୍ୟାଶକ୍ତି–ମହାଭାବ ରୂପା ଭାବରେ ବର୍ଣ୍ଣନା କରାଯାଇଛି ।

ଭାରତୀୟ ସାହିତ୍ୟରେ ଦ୍ୱାଦଶ ଶତାବ୍ଦୀକୁ ରାଧାତତ୍ତ୍ୱର ସାହିତ୍ୟିକ ଉନ୍ମୀଳନର ସମୟ ରୂପେ ଗ୍ରହଣ କରାଯାଏ । ୧୨ଶ ଶତାବ୍ଦୀର ପ୍ରାରମ୍ଭରେ ଶ୍ରୀଧର ଦାସଙ୍କ ଦ୍ୱାରା ସଙ୍କଳିତ "ସଦୁକ୍ତି କର୍ଣ୍ଣାମୃତ" ନାମକ ସୁକ୍ତି ଗ୍ରନ୍ଥ ମଧ୍ୟ ରାଧାକୃଷ୍ଣ ପ୍ରେମ ସମ୍ବଳିତ ବହୁ କବିତାର ସାମଗ୍ରିକ ରୂପ ଭାବେ ବିବେଚିତ । ଶାଳୀ ବାହନ ପ୍ରତିଷ୍ଠାନ ପୁରର ନରପତି "ହାଲ"ଙ୍କର "ଗାଥା ସପ୍ତସତୀ"ରେ ହିଁ ଆଦ୍ୟାଶକ୍ତି ରାଧାଙ୍କର ପ୍ରଥମ ଆଭାସ ମିଳେ । ସେଥିରେ ବ୍ୟବହୃତ "ରାହି" ଶବ୍ଦର ପ୍ରୟୋଗକୁ "ରାଧା" ବୋଲି ଗ୍ରହଣ କରାଯାଏ(୬) । କିନ୍ତୁ ଭାରତୀୟ ବୈଷ୍ଣବ ଦର୍ଶନରେ ରାଧାତତ୍ତ୍ୱ ପୂର୍ବରୁ ଥିଲେ ମଧ୍ୟ ଶ୍ରୀଜୟଦେବଙ୍କ "ଗୀତଗୋବିନ୍ଦ"ର "ଲଳିତ ଲବଙ୍ଗଲତା ପରିଶୀଳନ" ଭିତରେ ତାହା ପ୍ରସ୍ଫୁଟିତ ଏବଂ ଶ୍ରୀଚୈତନ୍ୟଙ୍କର ଆଗମନରେ ପୁରଭିତ ।

ବାସ୍ତବିକ୍ ଏହି "ରାଧା" ଶବ୍ଦର ବ୍ୟୁତ୍ପତ୍ତିଗତ ଅର୍ଥ ସମ୍ପର୍କରେ ନାନା ମୁନିଙ୍କର ନାନା ମତ ଦେଖାଯାଏ । ଯେମିତି "ବ୍ରହ୍ମ ବୈବର୍ତ୍ତ ପୁରାଣ" ଅନୁସାରେ କୃଷ୍ଣଙ୍କର ରମଣ ଇଚ୍ଛା ପ୍ରବୃତ୍ତିରୁ "ରାଧା" ଜାତ । ପୁଣି ଭାଗବତ କହେ — "ଅ ନୟାରାଧିତୋନୂନଂ ଭଗବାନ ହରିରୀଶ୍ୱରଃ" । ଶ୍ରୀ ନିମ୍ବାର୍କ ମତାନୁସାରେ ଟୀକାକାର ଶୁକଦେବ ତାଙ୍କର "ସିଦ୍ଧାନ୍ତ ପ୍ରଦୀପ"ରେ କହନ୍ତି — "ରାଧ୍ନୋତଃ" ଶବ୍ଦର ଅର୍ଥ ରାଧା ସହିତ ସଂଯୁକ୍ତ(୭) । ଅତଏବ ଦୁଗ୍ଧର ସ୍ୱଚ୍ଛତା, ଅଗ୍ନିର ଦାହିକତା, ଜଳର ଶୀତଳତା ପରି କୃଷ୍ଣଙ୍କ ଭିତରେ ରାଧାଙ୍କର ସ୍ଥିତି ସ୍ଥାପକତା ବିଦ୍ୟମାନ । ବୈଷ୍ଣବ ସାହିତ୍ୟ ମଧ୍ୟରେ ଶ୍ରୀରାଧା କୃଷ୍ଣଙ୍କର ପ୍ରେୟସୀ–ପ୍ରେମର ଆଧାର ରୂପେ ବର୍ଣ୍ଣିତ ।

ବସ୍ତୁତଃ ବହୁ ଧ୍ୟାନ–ଧାରଣା ଓ ଭାରତୀୟ ଧାର୍ମିକ ପରମ୍ପରାରେ ପ୍ରଚଳିତ ଓ ପ୍ରତିଷ୍ଠିତ କେତେକ ମୌଳିକ ତତ୍ତ୍ୱକୁ ନେଇ ବୈଷ୍ଣବ କବିଗଣ କାବ୍ୟ–କବିତା ଭିତରେ କୃଷ୍ଣଙ୍କର ହ୍ଲାଦିନୀ ଶକ୍ତି ରୂପରେ ଶ୍ରୀରାଧାଙ୍କୁ ଉପସ୍ଥାପିତ କରିଛନ୍ତି । ଭାରତୀୟ ପ୍ରାନ୍ତୀୟ–ଧାର୍ମିକ ସାହିତ୍ୟରେ ସେ(ରାଧା) ଥିଲା ପ୍ରକୃତି; ଯାହା ଭାରତୀୟ ପରମ୍ପରାରେ ଦୃଢ଼ମୂଳ ଓ ଐତିହ୍ୟ ବିମଣ୍ଡିତ । ଯାହାର ପ୍ରମାଣ ମିଳେ ବୈଷ୍ଣବ ସାହିତ୍ୟରୁ । ଏ ପ୍ରସଙ୍ଗରେ ବୈଷ୍ଣବ–ସାଧକ ରାୟ ରାମାନନ୍ଦଙ୍କ "କାନ୍ତା ପ୍ରେମ" ଉଲ୍ଲେଖଯୋଗ୍ୟ । ତାଙ୍କ ଭାଷାରେ "ଏହି କାନ୍ତା ପ୍ରେମର ସଂବାହିକା ଗୋପୀମାନଙ୍କ ମଧ୍ୟରେ ଶ୍ରେଷ୍ଠ ହେଉଛନ୍ତି 'ଶ୍ରୀରାଧା" ଏବଂ ରାଧା ପ୍ରେମ ହେଉଛି ସାଧ୍ୟ ଶିରୋମଣି"(୮) ।

ବୈଷ୍ଣବ ଧର୍ମ ଓ ସାହିତ୍ୟରେ ପରମ ଆରାଧ୍ୟା ପ୍ରେମମୟୀ ଶ୍ରୀରାଧାଙ୍କ ଭିତରେ ଭାରତୀୟ ଶକ୍ତିତତ୍ତ୍ୱର ଚମତ୍କାର ବିକାଶ ପରିଲକ୍ଷିତ ହୁଏ । ଭାରତୀୟ ପ୍ରାନ୍ତୀୟ ସାହିତ୍ୟରେ ହେଉ କି ଧାର୍ମିକ ଚେତନା ମଧ୍ୟରେ ହେଉ ଶ୍ରୀରାଧାଙ୍କର ସ୍ୱରୂପ ଦେଖିବାକୁ ମିଳେ, ମାତ୍ର ଏ କଥା ନିଃସନ୍ଦେହରେ କୁହାଯାଇ ପାରେ ଯେ ଗୌଡ଼ୀୟ–ବୈଷ୍ଣବମାନଙ୍କ ଦ୍ୱାରା ହିଁ ଶ୍ରୀରାଧାଙ୍କ ଭିତରେ ଶକ୍ତିତ୍ୱ (Energic Power)ର ସ୍ଫୁରଣ ଘଟିଛି ଏବଂ ଏହି ଶକ୍ତିତତ୍ତ୍ୱକୁ ଅବଲମ୍ବନ କରି ରାଧା ତତ୍ତ୍ୱର ଉତ୍ପତ୍ତି ଓ କ୍ରମବିକାଶ ସମ୍ପାଦିତ ହୋଇଛି ।

ବଙ୍ଗ ଦେଶର ଜାତୀୟ ଜନମାନସରେ ଯେତେବେଳେ ଶକ୍ତିତତ୍ତ୍ୱ ଓତଃପ୍ରୋତ ଭାବରେ ସଂଶ୍ଳିଷ୍ଟ ଥିଲା ଠିକ୍ ସେତେବେଳେ ବୈଷ୍ଣବ ସାଧକ ତଥା ଦାର୍ଶନିକମାନେ ଶକ୍ତିତତ୍ତ୍ୱ ଦ୍ୱାରା ହିଁ ଶ୍ରୀରାଧାଙ୍କ ସମ୍ପୂର୍ଣ୍ଣ ବ୍ୟାଖ୍ୟା କରିବାକୁ ସମର୍ଥ ହୋଇ ପାରିଛନ୍ତି । ଶକ୍ତିତତ୍ତ୍ୱ ସହିତ ଶାକ୍ତ ଧର୍ମର ଭାବାନୁସଙ୍ଗ ଆମମାନଙ୍କ ମଧ୍ୟରେ ଦୃଢ଼ ହୋଇପାରିଛି । ଏହି ଶକ୍ତିତତ୍ତ୍ୱ ଭାରତରେ ବିଶେଷ କୌଣସି ସାମ୍ପ୍ରଦାୟିକ ଧର୍ମର ନିରପେକ୍ଷ ଦାର୍ଶନିକ ତତ୍ତ୍ୱ । ପୁଣି ଏହି ଶକ୍ତିତତ୍ତ୍ୱ ଭାରତୀୟ ଦାର୍ଶନିକ ମନରେ ଗୋଟିଏ ମନନ ବୈଶିଷ୍ଟ୍ୟର ପରିଚୟ ବହନ କରେ । ଉପନିଷଦ ମଧ୍ୟରୁ ଏହି ଶକ୍ତିତତ୍ତ୍ୱର ବୀଜ ମଧ୍ୟ ଲକ୍ଷ୍ୟ କରାଯାଏ — ବୃହଦାରଣ୍ୟକ ଉପନିଷଦାନୁସାରେ ସୃଷ୍ଟିର ଆଦି ଏକକରେ ରମଣ ଇପ୍ସିତ ସ୍ତ୍ରୀ ଓ ପୁରୁଷ ରୂପେ ଦ୍ୱିଧା ବିଭକ୍ତ ହେବାର ଦେଖାଯାଏ । କାରଣ୍ ଦ୍ୱିତୀୟର ଅନୁପସ୍ଥିତିରେ କେବେହେଲେ ରମଣ ହୋଇପାରିବ ନାହିଁ, କେବଳ ଏକର ଆସ ରତି ନିମିତ୍ତ ଦ୍ୱିଧାକରଣ ପ୍ରୟୋଜନ । ଏହି ଦ୍ୱୟର ମିଳନରେ ହିଁ ଆସ ରତିର ଉପଲବ୍ଧି । ଏହା ହିଁ ତ ହେଉଛି "ଆଦି ମିଥୁନ ତତ୍ତ୍ୱ" । ଏତଦ୍ ବ୍ୟତୀତ ଉପନିଷଦରୁ ଆଉ ଏକ ପ୍ରକାର ମିଥୁନ ତତ୍ତ୍ୱର ଆଭାସ ମିଳେ । ସୃଷ୍ଟି ପ୍ରକରଣ ପ୍ରସଙ୍ଗରେ ବହୁ ସ୍ଥଳରେ ଦେଖିବାକୁ ମିଳେ ଯେ, ସୃଷ୍ଟି କାମ ପ୍ରଜାପତି ଗୋଟିଏ ମିଥୁନ ସୃଷ୍ଟି କରିଥିଲେ । ଏହି ମିଥୁନରେ ଦୁଇ ଅଂଶକୁ ସାଧାରଣତଃ "ରୟି" ବା "ପ୍ରାଣ" ଏବଂ "ଅନ୍ନ" ଅଥବା "ଅନ୍ନଦା" ଏବଂ ଅନ୍ନ କୁହାଯାଇପାରେ । "ଛାନ୍ଦୋଗ୍ୟ ଉପନିଷଦ"ରେ "ବାକ୍" ଓ "ପ୍ରାଣ"ର ମିଥୁନ କଥା କୁହାଯାଇଛି । ବହୁ ସ୍ଥାନରେ ଆହୁରି ମଧ୍ୟ ଦେଖିବାକୁ ମିଳେ "ଅଗ୍ନି" ଓ "ସୋମ" ମିଥୁନର କଥା । ତତ୍ତ୍ୱ ଦିଗରୁ ବିଚାର କଲେ ଏ ସବୁ "ମିଥୁନ ତତ୍ତ୍ୱ"କୁ କେବଳ ମାତ୍ର ଗୋଟିଏ ତତ୍ତ୍ୱ ରୂପେ ଗ୍ରହଣ କରାଯାଇପାରେ । କେତେକ କ୍ଷେତ୍ରରେ ଏହାକୁ "ଶୁକ୍ଳ", "କୃଷ୍ଣ", "ଦିବା", "ରାତ୍ରି", "ରବି", "ଚନ୍ଦ୍ର" ରୂପେ ବର୍ଣ୍ଣନା କରାଯାଇଛି । ସମଗ୍ର ବିବର୍ତ୍ତନ ରାଜ୍ୟ ଭାବ କେନ୍ଦ୍ର ହେଉଛି ବିଷମ ଲିଙ୍ଗର ସମାୟନ ଜନିତ ପ୍ରଜନନ ଓ ଗର୍ଭାଧାନ । ଉଭୟ ପ୍ରକୃତି ବା ପୁରୁଷକୁ ପ୍ରତୀକିତ କରେ ।

ବିଶ୍ୱ ପ୍ରପଞ୍ଚ ସୃଷ୍ଟିର ବହୁ ପୂର୍ବରୁ ପ୍ରଜାପତି ଯେ ତପସ୍ୟା ଦ୍ୱାରା ପ୍ରଥମେ ଏହି "ମିଥୁନ" ସୃଷ୍ଟି କରିଥିଲେ । ତା'ର ତାତ୍ପର୍ଯ୍ୟ ଏହି ଯେ, ବିଶ୍ୱ ପ୍ରପଞ୍ଚରେ ଯାହା କିଛି ଦେଖିବାକୁ ମିଳେ ସେଗୁଡ଼ିକ ପ୍ରାଣ ଓ ଅନ୍ନ ବା ପ୍ରାଣ ଓ ରୟି । ଏହି ଦୁଇ ଅଂଶର ମିଳନରେ ସୃଷ୍ଟି ସମ୍ଭବ ହୋଇଛି । ଗୋଟିଏ ପ୍ରକାଶକ ସ୍ଥାୟି ଅମୃତ ଏବଂ ଅନ୍ୟଟି ଅପ୍ରକାଶକ ଉପାଦାନ ଅପାୟ— ଧର୍ମକ ସ୍ଥଳ — ମର୍ତ୍ତ୍ୟ; ଏହାରି ଭିତରେ ପ୍ରାଣ କାରଣାଂଶ, ରୟି ବା ଅନ୍ନ କାର୍ଯ୍ୟାଂଶ । ଅନ୍ନ ବା ରୟି ହେଉଛି ପ୍ରାଣର ଆଧାର ଏବଂ ଏହି ଆଧାରକୁ ଆଶ୍ରୟ କରି ପ୍ରାଣର ଯାବତୀୟ କ୍ରିୟା କଳାପ । ଅଗ୍ନି ହିଁ ପ୍ରାଣର କାରଣ, ସେ "ଅତା"; ସେ ଅନ୍ନର ରକ୍ଷକ । ତେଣୁ ଅଗ୍ନି ବା ପ୍ରାଣ ହେଲା ଅନ୍ନଦା ଏବଂ ସୋମ ହେଲା "ଅନ୍ନ" ବା "ରୟି", କାରଣ ସେ ଭୋଜ୍ୟ । ଋଗ୍ ବେଦରେ ଅଗ୍ନିକୁ ହିଁ ଆୟୁଃ ବା ପ୍ରାଣର ପ୍ରଥମ ବିକାଶ ବୋଲି କୁହାଯାଇଛି । ପ୍ରାଣୀ ଦେହ ଭିତରେ ଏହି ଅଗ୍ନି – ବୈଶ୍ୱାନର ରୂପେ "ଅନ୍ନ"କୁ ଗ୍ରହଣ କରିଥାଏ । ଫଳତଃ ଅନ୍ନର ଆହୁତି ଓ ପ୍ରାଣାଗ୍ନିର ଗ୍ରହଣକୁ ଅବଲମ୍ବନ କରି ଚାଲିଛି ଦେହ ଯାତ୍ରା । ଦେହ ଯାତ୍ରା ସମ୍ବନ୍ଧରେ ଯାହା ସତ୍ୟ ବିଶ୍ୱ ଯାତ୍ରା ସମ୍ବନ୍ଧରେ ତାହା ହିଁ ସତ୍ୟ । ଆଲୋଚ୍ୟ "ପ୍ରାଣ" ଓ "ରୟି", "ଅଗ୍ନି" ଓ "ସୋମ" କେଉଁଠାରେ ହେଲେ ସ୍ୱତନ୍ତ୍ର ରୂପେ ଅବସ୍ଥାନ କରନ୍ତି ନାହିଁ ବରଂ ସେମାନେ ସର୍ବଦା ଅନ୍ୟୋନ୍ୟାଶ୍ରିତ; ସେମାନେ ଯେମିତି ଏକ ଅବିଚ୍ଛେଦ୍ୟ ସତ୍ୟର ଦୁଇଟି ଅଂଶ ମାତ୍ର । ପରବର୍ତ୍ତୀ କାଳରେ ଶୈବ ଓ ଶାକ୍ତ ତନ୍ତ୍ରଗୁଡ଼ିକରେ ପ୍ରାଣ ବା ଅଗ୍ନିକୁ "ଶିବ" ଏବଂ "ସୋମ"କୁ ଶକ୍ତିର ପ୍ରତୀକ ଭାବରେ ଗ୍ରହଣ କରାଯାଇ ଶିବ ଶକ୍ତିତତ୍ତ୍ୱର ଭିତ୍ତି ଭୂମି ପ୍ରସ୍ତୁତ କରାଯାଇଛି ।

ଏକ ଅଦ୍ୱୟ ତତ୍ତ୍ୱର ଅଗ୍ନି–ସୋମାତ୍ମକ ଦ୍ୱିଧା ବିଭକ୍ତିର ସମାନ୍ତରାଳ ଆଉ ଏକ ତତ୍ତ୍ୱ ଗଢ଼ି ଉଠିଥିବାର ଦେଖାଯାଏ, ତାହା ହେଉଛି ଏକ ଅଦ୍ୱୟ ସତ୍ୟକୁ ଶକ୍ତିମାନ ଓ ଶକ୍ତି ରୂପରେ ଅଦ୍ୱୟ ମଧ୍ୟରେ ଥିବା ଦ୍ୱୟିଭାବ ଦର୍ଶନ ତତ୍ତ୍ୱ । ପ୍ରାଚୀନ ଶକ୍ତି ତତ୍ତ୍ୱର ବ୍ୟାଖ୍ୟା ଓ ବିସ୍ତାର ବିଷ୍ଣୁ ଓ ବିଷ୍ଣୁ ଶକ୍ତିକୁ ନେଇ ବହୁ ଶ୍ରୁତି, ଉପନିଷଦ

...ରୂପ ଦେଖିବାକୁ ମିଳେ । ପୁରାଣମାନଙ୍କ ଭିତରେ ଦାର୍ଶନିକ ଦୃଷ୍ଟିରୁ ଶିବ-ଶକ୍ତି ଅପେକ୍ଷା ବିଷ୍ଣୁ ଶକ୍ତି ରୂପେ ବର୍ଣ୍ଣନା କରାଯାଇଥିବାର ଦେଖିବାକୁ ମିଳେ । ଏହି ବିଷ୍ଣୁ-ଶକ୍ତିର ଏକ ବିଶେଷ ପରିଣତ ହିଁ ହେଲେ "ଶ୍ରୀରାଧା"(୯) । ବୈଷ୍ଣବ ସାହିତ୍ୟ ଦର୍ଶନରେ ଲୀଳା ସଙ୍ଗିନୀ ଶ୍ରୀରାଧାଙ୍କର ଲୀଳା ମାଧୁରୀ ଦେଖିଲେ ତାଙ୍କୁ ଶ୍ରୀରାଧାଙ୍କୁ କୌଣସି ଦେବୀ-ଶକ୍ତି ରୂପରେ ଗ୍ରହଣ କରିହୁଏନା । କାରଣ ରାଧା ହେଉଛନ୍ତି ବିଶୁଦ୍ଧ ପ୍ରେମ ରୂପିଣୀ-ଅନନ୍ତ-ସୌନ୍ଦର୍ଯ୍ୟ-ସ୍ୱର୍ଗୀୟ ମାଧୁର୍ଯ୍ୟର ଘନିଭୂତ ବିଗ୍ରହ । ପ୍ରଚଳିତ ଶକ୍ତି ଦେବୀ ସହିତ ଯେଉଁ ବଳର ସଂଯୋଗ ରହିଛି ରାଧାଙ୍କ ସହିତ ପରୋକ୍ଷ ଭାବରେ ତା'ର କୌଣସି ସଂଯୋଗ ନାହିଁ; ସେ ସଂହାର କର୍ତ୍ତୀ ନୁହେଁ କି ଧନ-ଜନ-ଯଶ ଦାନ କରେ ନାହିଁ କି ସୌଭାଗ୍ୟ-ବିଜୟ-ଆରୋଗ୍ୟ କରେ ନାହିଁ କିମ୍ବା ଏଭଳି କୌଣସି କାର୍ଯ୍ୟରେ ସେ ତତ୍ପର ମଧ୍ୟ ନୁହେଁ ବରଂ କେବଳ ମାତ୍ର କୃଷ୍ଣର ଆନନ୍ଦ ବର୍ଦ୍ଧିନୀ ଏବଂ ଭକ୍ତଗଣଙ୍କୁ ସୁଖ ପ୍ରଦାନ କରିବାରେ ହ୍ଲାଦିନୀ କାରଣ ।

ପୁନଶ୍ଚ ଦେବୀ ପୂଜା ବା ମାତୃ ପୂଜାକୁ ଅବଲମ୍ବନ କରି ଯେଉଁ ଶକ୍ତି ଆରାଧନାର ଧାରା ପ୍ରଚଳିତ ତାହା ସହିତ ରାଧାର ପରୋକ୍ଷ ଭାବରେ ମଧ୍ୟ କୌଣସି ସଂଯୋଗ ନାହିଁ; କିନ୍ତୁ ଯେଉଁ ଦାର୍ଶନିକ ଦୃଷ୍ଟିରେ କେବଳ ରାଧା ଶକ୍ତି ରୂପିଣୀ, ମାତ୍ର ଶ୍ରୀରାଧାଙ୍କର କେବଳ ବିଶୁଦ୍ଧ ପ୍ରେମ ସ୍ୱରୂପ ନିମିତ୍ତ ଅତି ସ୍ୱାଭାବିକ ଭାବରେ ମନେ କରାଯାଇ ପାରେ ଯେ ରାଧା ମଧ୍ୟ ଶକ୍ତି ବିଗ୍ରହା କିନ୍ତୁ ସର୍ବ ସମ୍ପୂର୍ଣ୍ଣା ନୁହନ୍ତି । କାରଣ ତାଙ୍କ ଭିତରେ ଶକ୍ତିର ସମସ୍ତ ଦିଗର ସମ୍ୟକ୍ ପରିପ୍ରକାଶ ନାହିଁ(୧୦) । ମଧ୍ୟ ଯୁଗୀୟ ବୈଷ୍ଣବ ଦାର୍ଶନିକଗଣ ଶକ୍ତି ତତ୍ତ୍ୱର ଆଲୋଚନା ପ୍ରସଙ୍ଗରେ କୃଷ୍ଣର ସ୍ୱରୂପଭୂତ ସତ୍ତା, ଚୈତନ୍ୟ ଓ ଆନନ୍ଦକୁ ନେଇ ସ୍ୱରୂପ ଶକ୍ତିକୁ ସମ୍ବିତ୍-ସନ୍ଧିନୀ-ହ୍ଲାଦିନୀ – ଏଭଳି ତ୍ରିଧା ବିଭକ୍ତି କରି ହ୍ଲାଦିନୀର ଘନୀଭୂତ ବିଗ୍ରହ ଭାବରେ ରାଧାଙ୍କୁ ଗ୍ରହଣ କରିଛନ୍ତି । ସୁତରାଂ ରାଧାଙ୍କ ଭିତରେ ଏକାଧାରରେ ଚୈତନ୍ୟ ଓ ଆନନ୍ଦର ପରିପୂର୍ଣ୍ଣତା । ଅତଏବ୍ କୃଷ୍ଣ ମଧ୍ୟରେ ପ୍ରେମ ରୂପ ଅନନ୍ତ ରସ ଆସ୍ୱାଦନ ଏବଂ ଭକ୍ତ ହୃଦୟରେ ଭକ୍ତାନଳ ରୂପେ ବିଗଳନ – ଏହା ବ୍ୟତୀତ ଦେବୀର ଅନ୍ୟ କୌଣସି କାର୍ଯ୍ୟ ନାହିଁ ।

ବୈଷ୍ଣବ ସହଜିଆ ଧର୍ମ ସାହିତ୍ୟରେ ଶକ୍ତି ରୂପିଣୀ ରାଧାଙ୍କର ଆଉ ଏକ ବିଶେଷ ରୂପ ଦେଖିବାକୁ ମିଳେ । ବୈଷ୍ଣବ ସହଜିଆମାନଙ୍କର ପ୍ରେମ ସାଧନା ମୂଳତଃ ତନ୍ତ୍ର ସାଧନା । ତନ୍ତ୍ରର ଯୋଗ ସାଧନା ସହିତ ବୈଷ୍ଣବ ପ୍ରେମର ଭାବ ସାଧନା ସଂଯୁକ୍ତ । ବୌଦ୍ଧ ତନ୍ତ୍ର ସାଧନାରେ ଯେଉଁଳି ଅଦ୍ୱୟ ସହଜର ଦୁଇଟି ଧାରା ଦେଖିବାକୁ ମିଳେ – ପ୍ରଜ୍ଞା ଏବଂ ଉପାୟ ମଧ୍ୟରେ; ଗୋଟିଏ (ଶକ୍ତି) ବାମସ୍ଥା ଅନ୍ୟଟି (ଶିବ) ଦକ୍ଷିଣସ୍ଥା । ଗୋଟିଏ ପ୍ରାଣ ଅପରଟି ଅପାନ, ଗୋଟିଏ ପ୍ରକୃତି ଅପରଟି ପୁରୁଷ । ହିନ୍ଦୁ ତନ୍ତ୍ର ସାଧନାରେ ଦେଖିବାକୁ ମିଳେ – ଶକ୍ତି ଏବଂ ଶିବଙ୍କୁ ପ୍ରକୃତି ଏବଂ ପୁରୁଷ ଭିତରେ । ସେମିତି ମଧ୍ୟ ବୈଷ୍ଣବ ସହଜିଆ ସାଧନାରେ ଦେଖିବାକୁ ମିଳେ । ମହାଭାବ ରୂପ ସହଜର ଦୁଇଟି ଧାରା – 'ରସ' ଏବଂ 'ରତି' । 'ରସ' ହେଉଛି 'କୃଷ୍ଣ' ଏବଂ 'ରତି' ହେଉଛି 'ରାଧା' । ରାଧା ବାମସ୍ଥା ଓ କୃଷ୍ଣ ହେଉଛି ଦକ୍ଷିଣସ୍ଥା । ବାମ ନେତ୍ର ସହଜିଆ ସାଧକମାନଙ୍କ ଦୃଷ୍ଟିରେ ରାଧାକୁଣ୍ଡ ଏବଂ ଦକ୍ଷିଣ ନେତ୍ର ଶ୍ୟାମକୁଣ୍ଡ । ବୌଦ୍ଧ ସହଜିଆ ସାଧନାରେ ନର-ନାରୀ ହିଁ ମିଳିତ ସାଧନାର ଭିତ୍ତିଭୂମି । ନାରୀ ମଧ୍ୟରେ ପ୍ରଜ୍ଞା ଭାବନା ଏବଂ ବିଶେଷ ଉପଲବ୍ଧି ଉପାୟ ଭାବନା ଓ ଉପାୟ ଉପଲବ୍ଧି ନିହିତ । ଠିକ୍ ସେହିଭଳି ହିନ୍ଦୁ ତନ୍ତ୍ର ସାଧନାରେ ଦେଖିବାକୁ ମିଳେ ନାରୀ ଭିତରେ ଶକ୍ତି ଭାବନା ଏବଂ ଶକ୍ତି ଉପଲବ୍ଧି; ଆଉ ପୁରୁଷ ଭିତରେ ଶିବ ଭାବନା ଓ ଶିବର ଉପଲବ୍ଧି(୧୧) । ସୁତରାଂ ମହାଭାବ ସାଧନାର ମୂଳ କଥା ହେଲା ରୂପ ମଧ୍ୟରେ ସ୍ୱରୂପର ଉପଲବ୍ଧି । ନାରୀର ରୂପ ମଧ୍ୟରେ ସ୍ୱରୂପର ଅବସ୍ଥିତି 'ଶ୍ରୀରାଧା' ଏବଂ ପୁରୁଷର ରୂପ ମଧ୍ୟରେ ସ୍ୱରୂପ ଶ୍ରୀକୃଷ୍ଣ । ରୂପ ମଧ୍ୟରେ ସ୍ୱରୂପ ପ୍ରତିଷ୍ଠାର ଯୁଗଳ ସାମରସରୁ ମହାଭାବର ଉତ୍ପତ୍ତି । ମହାଭାବହିଁ ଜୀବନର ସହଜ ସ୍ୱରୂପ । ଏସବୁ ଦୃଷ୍ଟିରୁ ଲକ୍ଷ୍ୟକଲେ ତନ୍ତ୍ର ମଧ୍ୟରେ ରତି ରୂପିଣୀ ରାଧା ଶକ୍ତିର ସ୍ଥାନ ଗ୍ରହଣ କରିଛନ୍ତି ତାହା ପ୍ରତ୍ୟକ୍ଷ ହୁଏ ।

ମଧ୍ୟଯୁଗ ସାହିତ୍ୟ ସୃଷ୍ଟିର ପ୍ରାକ୍ କାଳ ପ୍ରତି ଦୃଷ୍ଟି ନିକ୍ଷେପ କଲେ ଦେଖୁ ଯେ ଦେବୀ ରୂପରେ ପାର୍ବତୀ-ଉମାଙ୍କୁ; ଯାହାଙ୍କର କି ଅସୁର ନିଧନ ସହିତ କୌଣସି ପ୍ରତ୍ୟକ୍ଷ ସମ୍ପର୍କ ନାହିଁ; କିନ୍ତୁ ସମଗ୍ର ଭାରତୀୟ ସାହିତ୍ୟ ତାଙ୍କୁ ଶକ୍ତି ସ୍ୱରୂପିଣୀ ରୂପେ ଗ୍ରହଣ କରିବା ପରିବର୍ତ୍ତେ ବରଂ ସୌନ୍ଦର୍ଯ୍ୟ ଓ ପ୍ରେମର ପ୍ରତିମା ରୂପରେ ପରିଚିତ କରାଇଛି । ସେଥିପାଇଁ ପରବର୍ତ୍ତୀ କାଳରେ ଭାରତୀୟ ପୁରାଣ ସାହିତ୍ୟ ଚିତ୍ର-ଭାସ୍କର୍ଯ୍ୟ ମଧୁର ଶୃଙ୍ଗାର ରସର ବିଚିତ୍ର ବିକାଶ ରାଧା-କୃଷ୍ଣ, ଉମା-ମହେଶ୍ୱରଙ୍କୁ ନେଇ ସାଧିତ ହୋଇଛି । ଅତଏବ୍ ଏସବୁ ଦୃଷ୍ଟିରୁ ବେଦ-ବେଦାନ୍ତର ବ୍ରହ୍ମ ଓ ମାୟା; ସଂଖ୍ୟାରେ ପୁରୁଷ-ପ୍ରକୃତି; ବୈଷ୍ଣବଗଣଙ୍କର ବିଷ୍ଣୁ-ଲକ୍ଷ୍ମୀ; ତନ୍ତ୍ରରେ ଶିବ ଓ ଶକ୍ତି ବା ମହେଶ୍ୱର-ଉମାଙ୍କୁ ଗୋଟିଏ ତତ୍ତ୍ୱର ଦ୍ୟୋତକ ଭାବରେ ଦ୍ୱିଧାହୀନ ଭାବେ ଗ୍ରହଣ କରାଯାଇଛି । ସପ୍ତଦଶ, ଅଷ୍ଟାଦଶ ଓ ଊନବିଂଶ ଶତକରେ ଅତି ସହଜ ଭାବରେ କୃଷ୍ଣଙ୍କ ସହିତ ରାଧାର ପ୍ରତିଷ୍ଠା କରାଗଲା । ତେଣୁ ଉମା-ମହେଶ୍ୱର ଯାହା ସେହି ଯେ ରାଧା-କୃଷ୍ଣ – ଏ ସତ୍ୟଟି ପରବର୍ତ୍ତୀ ବଙ୍ଗଳା ସାହିତ୍ୟରେ ଅତି ସହଜ ଭାବରେ ଗୃହୀତ ହୋଇଥିବାର ଆମେ ଦେଖିବାକୁ ପାଉ(୧୨) ।

ବୈଷ୍ଣବ ସାହିତ୍ୟରେ ବୈଷ୍ଣବ କବିଗଣ ରାଧାଙ୍କର ରୂପ ବର୍ଣ୍ଣନାରେ ସୀମାବଦ୍ଧ ନରହି ବରଂ ତାଙ୍କୁ ତତ୍ତ୍ୱର ବିଷୟ ଭାବରେ କିଭଳି ଗ୍ରହଣ କରି ନେଇଥିଲେ ନିମ୍ନୋକ୍ତ ଉଦ୍ଧୃତାଂଶରୁ ତାହା ସ୍ପଷ୍ଟ ସୂଚିତ ହୁଏ –"Its bipolar system of thought and culture, for instance, must have considerably influenced and slaped the bipolar conception of Radha and Krishna which Bengal Vaisnavaism developed and which is certainly are of its disting wishing features. The Vaisnava Sakti tattva, the acceptance of Kamagayatri and the idea of Radha as the Sakti or Energy of Krishna Point

probably to tantric influence xxxx Radha is already established in the tantra as the Hladini Mahasakti of Krishna."

ଶ୍ରୀଚୈତନ୍ୟଙ୍କ ଓଡ଼ିଶା ଆଗମନ ପରେ ଉତ୍କଳୀୟ ଧର୍ମ ଧାରାରେ ବହୁ ପରିବର୍ତ୍ତନ ସଂଘଟିତ ହୋଇଛି । ରାଧା–କୃଷ୍ଣ ସେମାନଙ୍କର ଉପାସ୍ୟ ଦେବତା ହେବା ସଙ୍ଗେ ସଙ୍ଗେ ସେମାନଙ୍କର ଲୀଳା କାବ୍ୟ କବିତାର ବିଷୟବସ୍ତୁ ରୂପେ ଗୃହୀତ ହେଲା । ଫଳତଃ ଆମ ସାହିତ୍ୟର କବିସୂର୍ଯ୍ୟଙ୍କ 'ଚମ୍ପୂ', ଗୋପାଳକୃଷ୍ଣ ପଦାବଳୀ, ରସକଲ୍ଲୋଳ ବିଦଗ୍ଧ ଚିନ୍ତାମଣି ତଥା ସର୍ବୋପରି କବି ସମ୍ରାଟଙ୍କ 'କଳା କଉତୁକ' ସହିତ ରୀତି ଯୁଗୀୟ ଅଧିକାଂଶ କାବ୍ୟରେ ରାଧା–କୃଷ୍ଣଙ୍କ ପ୍ରୀତି ତତ୍ତ୍ୱର ବ୍ୟାଖ୍ୟା ଖୁବ୍ ସୁନ୍ଦର ଭାବରେ କରାଯିବା ସଙ୍ଗେ ସଙ୍ଗେ ଏ ସବୁଥିରେ ନାରୀ ପ୍ରେମକୁ ମାଧ୍ୟମ କରାଯାଇଛି ।

ବାସ୍ତବିକ ବୈଷ୍ଣବ କବିଙ୍କ ଶ୍ରୀରାଧା ଚରିତ୍ର ଅଧିକାଂଶରେ କାବ୍ୟ–ପ୍ରସଙ୍ଗ ଦୃଷ୍ଟିରୁ ଏକ ଚରିତ୍ର ବିଶେଷ; ଯଦିଓ ରାଧା ଚରିତ୍ର ଜରିଆରେ ବୈଷ୍ଣବୀୟ ପ୍ରୀତି ତତ୍ତ୍ୱର ବ୍ୟାଖ୍ୟାନ ହୋଇଛି । କାରଣ ମଧ୍ୟ ଯୁଗୀୟ ସମସ୍ତ ବୈଷ୍ଣବ କାବ୍ୟ ଅଧିକାଂଶରେ ଗଳ୍ପ ପ୍ରଧାନ ଓ ଏକ ବିଷୟବସ୍ତୁ ହିଁ ତନ୍ମଧ୍ୟରେ କ୍ରମଶଃ ଉନ୍ମୋଚିତ ହୋଇଛି ଏବଂ ତଦନୁଯାୟୀ 'ରାଧା' ଚରିତ୍ରର ପୂର୍ଣ୍ଣ ବିକଶିତ ରୂପ ଘଟଣା ସହିତ ଆଗେଇ ଆସିଛି ଜନମାନସ ନିକଟକୁ ।


ପାଦଟୀକା

(୧) "ହ୍ଲାଦିନୀ କରାଏ କୃଷ୍ଣେ ଆନନ୍ଦାସ୍ୱାଦନ/ହ୍ଲାଦିନୀ ଦ୍ୱାରାଏ କରେ ଭକ୍ତିର ପୋଷଣ" – ଚୈତନ୍ୟ ଚରିତାମୃତ–୪ର୍ଥ ପରିଚ୍ଛେଦ) ।

(୨) ଋକ୍–୧/୩୦/୫, ସାମ–୨୦୦, ଅଥର୍ବ–୨୦/୪୫/୨ ।

(୩) ଛାନ୍ଦୋଗ୍ୟ ଉପନିଷଦ–୮/୧୩/୧ ।

(୪) "ତସ୍ୟାଦ୍ୟା ପ୍ରକୃତି ରାଧିକା ନିତ୍ୟ ନିର୍ଗୁଣା ଯସ୍ୟାଂଶେ/ଲକ୍ଷ୍ମୀ ଦୁର୍ଗାଦିକା ଶକ୍ତିୟ"–"ଭାରତେର ଶକ୍ତି ସାଧନା ଓ ଶକ୍ତି ସାହିତ୍ୟ"–ଶଶୀଭୂଷଣ ଦାସଗୁପ୍ତ ।

(୫) ରାଧାୟା ମାଧୋବୋ ଦେବେ/ମାଧବେ ନୈବ ରାଧିକା/ବିଭାଜନ୍ତେ ଜନେଷ୍ୱା ।

(୬) "ଭାରତୀୟ ବାଂଙମୟ ମେ ଶ୍ରୀରାଧା"–ବଳଦେବ ଉପାଧ୍ୟାୟ–ପୃ ୧୧-୧୨ ଶ୍ଳୋକ ।

(୭) ତଦୈବ ।

(୮) ରାୟ ଶଙ୍କର ନାଥ–"ଭାରତେର ସାଧକ"–୧ମ ଖଣ୍ଡ, ପୃ ୧୮୨–୧୮୩ ।

(୯) ଦାସଗୁପ୍ତ ଶଶୀଭୂଷଣ–"ଭାରତେର ଶକ୍ତି ସାଧନା ଓ ଶକ୍ତି ସାହିତ୍ୟ"–ପୃ ୨୫ ।

(୧୦) ତଦୈବ–ପୃ: ୧ ।

(୧୧) ପଟ୍ଟନାୟକ ଆଶୁତୋଷ–"ସାହିତ୍ୟରେ ତନ୍ତ୍ରର ପ୍ରଭାବ"–ଓଡ଼ିଶା ସାହିତ୍ୟ ଏକାଡ଼େମୀ–ମୁଖବନ୍ଧ ।

(୧୨) "......ଏଖାନେ ଶ୍ରୀରାଧା ବାଂଲା ଦେଶେର ସର୍ବ ପ୍ରକାରେର ଦେବୀଗଣେର ସହିତ କିରୂପ ସହଜେ ମିଲିୟା ମିଶିୟା ଏକ ହଇୟା ଗେଛେନ୍"–ଶଶୀଭୂଷଣ ଦାସଗୁପ୍ତ–"ଶ୍ରୀରାଧାର କ୍ରମ ବିକାଶ" ।

(୧୩) Dey S. K., "The Early History of Vaisnav Faith and Movement in Bengal"-Page 27-28.



ଅଧ୍ୟାପିକା (ଓଡ଼ିଆ ବିଭାଗ),
କୁଚିଣ୍ଡା ମହାବିଦ୍ୟାଳୟ, କୁଚିଣ୍ଡା,
ସମ୍ବଲପୁର ।




ସୂଚନା ଓ ଲୋକ ସମ୍ପର୍କ ମନ୍ତ୍ରୀଙ୍କ କାର୍ଯ୍ୟାଳୟ ପ୍ରକୋଷ୍ଠରେ ଏକ ବୈଠକରେ ବିଜ୍ଞାପନ ନୀତି ନିର୍ଦ୍ଧାରଣ ଉପରେ ଅର୍ଥ ମନ୍ତ୍ରୀ ଶ୍ରୀ ବେଦ ପ୍ରକାଶ ଅଗ୍ରୱାଲ ଓ ଲୋକ ସମ୍ପର୍କ ମନ୍ତ୍ରୀ ଶ୍ରୀ ଶରତ କୁମାର କରଙ୍କ ଆଲୋଚନା ।




ଇଃ ରଘୁନାଥ ପାତ୍ର

ନିର୍ଗୁଣ, ନିରାକାର, ଅନନ୍ତ, ଅବ୍ୟକ୍ତ ଓ ଅଚିନ୍ତ୍ୟ ବ୍ରହ୍ମ ଏକ ହେଲେ ମଧ୍ୟ ଅନେକ ରୂପରେ ପ୍ରତିଭାତ "ରୂପଂ ରୂପଂ ପ୍ରତିରୂପଂ ବଭୂବ"। ଏକ ବ୍ରହ୍ମ ବହୁ ରୂପରେ ପ୍ରତିପାଦିତ। ନିରାକାରରୁ ସାକାର, ନିର୍ଗୁଣରୁ ସଗୁଣ, ଅରୂପରୁ ସରୂପ ଓ ଅବ୍ୟକ୍ତରୁ ବ୍ୟକ୍ତବାଦର ସୃଷ୍ଟି। 'ସୁବର୍ଣ୍ଣ'ରୁ ବିବିଧ ସ୍ୱର୍ଣ୍ଣାଳଙ୍କାର ସୃଷ୍ଟି ହେଲାପରି ଭକ୍ତ ବା ସାଧକର ରୁଚି ଓ ଉପଲବ୍ଧିର ବୈଶମ୍ୟ ନେଇ ଏକ ନିର୍ଗୁଣ ବାଦରୁ ବହୁ ସଗୁଣ ଅବତାରବାଦର ସୃଷ୍ଟି।

"ଯଥା ସ୍ୱର୍ଣ୍ଣଂ କନକଂ ସ୍ୱେଚ୍ଛାଯା ଘଟିତଂ ନୃପ।
ତେଷୁ ସଂଜ୍ଞାମବାପ୍ୟେହ ତତ୍ତତ୍ ସନ୍ତୋଷ କାରଣମ୍ ॥"
(ସ୍କନ୍ଦପୁରାଣ ୨୯/୪୯)

କେତେକ ଆଲୋଚନା ପ୍ରସଙ୍ଗରେ କହିଥାଆନ୍ତି ଭଗବାନ ନିର୍ଗୁଣ, ନିରାକାର ତେଣୁ ସାକାର ଓ ସଗୁଣ ଉପାସନା ନିରର୍ଥକ। ସନ୍ଥ ତୁଳସୀ ନିର୍ଗୁଣ ଉପାସନାକୁ ତୁଳନା କରିବାକୁ ପାଇଁ ସୁନ୍ଦର ଅବତାରଣା ବା ପ୍ରସ୍ତାବନା ଦେଇଛନ୍ତି। ନିର୍ଗୁଣ ଉପାସନା ଅଙ୍କ ବା ସଂଖ୍ୟା ହେଲେ ସଗୁଣ ଉପାସନା ଅକ୍ଷର ସଦୃଶ। ଅର୍ଥର ମୂଲ୍ୟାଙ୍କନ ଉଭୟ ଅଙ୍କ ଓ ଅକ୍ଷରରେ କରାଯାଇଥାଏ। ଅଜ୍ଞାନ ବିନା ଜ୍ଞାନ, ତମ ବିନା ଜ୍ୟୋତିପ୍ରକାଶ ଅସମ୍ଭବ। ସେହିପରି, ସଗୁଣ ବିନା ନିର୍ଗୁଣର ଚିନ୍ତନ ମନନ ଅସମ୍ଭବ। ନିର୍ଗୁଣ ଓ ସଗୁଣ ସମନ୍ୱୟର ସର୍ବଶ୍ରେଷ୍ଠ ପ୍ରତୀକାତ୍ମକ ଉପାସନା "ଜଗନ୍ନାଥ–ଉପାସନା"।

"ଅଙ୍କ ଅଗୁନ ଆଖର ସଗୁନ।
ସମୁଝିଅ ଉଭୟ ପ୍ରକାର ॥
ଖୋୟେ ରାଖେ ଆପୁ ଭଲ।
ତୁଳସୀ ଚାରୁ ବିଚାର ॥"

XX XX XX

"ଜ୍ଞାନ କହଇ ଅଜ୍ଞାନ ବିନୁ।
ତମ ବିନୁ କହଇ ପ୍ରକାଶ ॥
ନିର୍ଗୁଣ କହଇ ଯୋ ସଗୁଣ ବିନୁ।
ସୋ ଗୁରୁ ତୁଳସୀ ଦାସ ॥" (ସନ୍ଥ ତୁଳସୀ)

## ଶ୍ରୀଜଗନ୍ନାଥ : ଶ୍ରୀବିଷ୍ଣୁ

ଏକ ନିର୍ଗୁଣ ବ୍ରହ୍ମ ସନାତନଙ୍କ ତ୍ରିଗୁଣାତ୍ମକ ପରିକଳ୍ପନାରୁ ସତ୍ତ୍ୱ, ରଜ ଓ ତମାଦି ତ୍ରିଗୁଣାତ୍ମକ ବ୍ରହ୍ମର ସୃଷ୍ଟି। ବୈଦିକ ସାହିତ୍ୟର ସମଗ୍ର ଶୀର୍ଷା ପୁରୁଷ ଉପନିଷଦ ଯୁଗର ଶେଷଶାୟୀ ସତ୍ତ୍ୱ ପ୍ରଧାନ ଶ୍ରୀମନ୍ ନାରାୟଣ (ବିଷ୍ଣୁ)। ରଜ ପ୍ରଧାନ ପଦ୍ମଯୋନି ବ୍ରହ୍ମା ଓ ତମ ପ୍ରଧାନ ଶେଷଦେବ ଅନନ୍ତ। ପୁରୁଷୋତ୍ତମ ତତ୍ତ୍ୱରେ ବିଚାର କଲେ କ୍ଷର ଭାବର ପ୍ରତିକ ଶେଷଦେବ 'ବଳଭଦ୍ର', ଅକ୍ଷର ଭାବର ପ୍ରତୀକ ହିରଣ୍ୟ ଗର୍ଭା ସୁଭଦ୍ରା ଓ କ୍ଷରାକ୍ଷରରୁ ଅତୀତ ପୁରୁଷୋତ୍ତମ ଶ୍ରୀଜଗନ୍ନାଥ। ପୁରୁଷୋତ୍ତମ ତତ୍ତ୍ୱରେ ଆଧାର ତତ୍ତ୍ୱ ଶେଷଦେବ ଅନନ୍ତ 'ବଳଭଦ୍ର ଓ ଆଧେୟ ଶ୍ରୀମନ୍ ନାରାୟଣ ଶ୍ରୀଜଗନ୍ନାଥ।

ହରିବଂଶରେ ଉଲ୍ଲେଖ ଅଛି, ଭଗବାନ ଶେଷଶାୟୀ ଶ୍ରୀମନ୍ ନାରାୟଣ ନିଜ ଶରୀରକୁ ଦୁଇଭାଗ କଲେ। ସ୍ୱର୍ଗସ୍ଥିତ ପ୍ରଥମ ମୂର୍ତ୍ତି ଦୁଷ୍କର ତପସ୍ୟାରତ ରହିଲେ ଓ ଯୋଗମାୟା ଆଶ୍ରିତ ମର୍ତ୍ତ୍ୟସ୍ଥିତ ଦ୍ୱିତୀୟ ମୂର୍ତ୍ତି ସୃଷ୍ଟି, ସ୍ଥିତି ଓ ଲୟର କାରଣ ହେଲେ। ଭାଷ୍ୟକାର ନୀଳକଣ୍ଠ ପ୍ରଥମ ମୂର୍ତ୍ତିକୁ ସାତ୍ତ୍ୱିକୀ ଓ ଦ୍ୱିତୀୟ ମୂର୍ତ୍ତିକୁ ତାମସୀ ଆଖ୍ୟା ଦେଇଛନ୍ତି। ପୁନଶ୍ଚ ମହାଭାରତ ଓ ହରିବଂଶରେ ପ୍ରଥମ ମୂର୍ତ୍ତି ବାସୁଦେବ ଓ ଦ୍ୱିତୀୟ ମୂର୍ତ୍ତି ସଂକର୍ଷଣ।

"ତସ୍ୟୈକା ମହାରାଜ ମୂର୍ତ୍ତି ସତ୍ତମ
ନିତ୍ୟଂ ଦିବିସ୍ଥା ଯା ରାଜନ୍। ତପଶ୍ଚରତି ଦୁଶ୍ଚରମ୍ ॥
ଦ୍ୱିତୀୟା ଚାସ୍ୟ ଶୟନେ ନିଦ୍ରାଯୋଗ ମୁପାଯଯୌ।
ପ୍ରଜାସଂହାର ସର୍ଗାର୍ଥଂ କିମଧ୍ୟାତ୍ମ ବିଚିନ୍ତକମ୍ ॥
ସୁପ୍ତ୍ୱା ଯୁଗ ସହସ୍ରଂ ପ୍ରାଦୁର୍ଭବତି କାର୍ଯ୍ୟତଃ।
ପୂର୍ଣ୍ଣେ ଯୁଗ ସହସ୍ରେଷୁ ଦେବ ଦେବୋ ଜଗତ୍ ପତି ॥"
(ହରିବଂଶ–ପ୍ରଥମ ଖଣ୍ଡ ୪୧/୧୮/୨୦୦)

ଦାରୁବ୍ରହ୍ମ ଶ୍ରୀଜଗନ୍ନାଥ 'ଦାରୁବପୁର୍ବିଷ୍ଣୁଃ ସୁଖଦାତା ସୁବାନ୍ଧବଃ' ରୂପେ ସର୍ବଜନ ବିଦିତ। ଭକ୍ତ ବାଞ୍ଛାକଳ୍ପତରୁ ଅବତାରୀ

ଜଗନ୍ନାଥଙ୍କଠାରୁ ସକଳ ଅବତାରବାଦର ସୃଷ୍ଟି । ବର୍ଷର ବିଭିନ୍ନ ପର୍ବପର୍ବାଣିରେ ରାମ, କୃଷ୍ଣ, ନୃସିଂହ ଓ ବାମନାଦି ରୂପରେ ପ୍ରତିଭାତ ହୋଇ ନୀଳାଦ୍ରିଚନ୍ଦ୍ରମା ଭକ୍ତମାନଙ୍କ ମନୋରଞ୍ଜନ କରିଥାଆନ୍ତି ।

"ଅନୁଗ୍ରହାୟ ଲୋକାନାଂ ନାନା ରୂପ ଧରଂ ପ୍ରଭୁଂ ।
ବନ୍ଦେହଂ କମଳାକାନ୍ତଂ ସ୍ଫଟିତା ଯୁଜ ଲୋଚନଂ ॥"

(ନୀଳାଦ୍ରି ମହୋଦୟ, ଷଷ୍ଠ ଅଧ୍ୟାୟ)

ଶ୍ରୀଜଗନ୍ନାଥଙ୍କୁ ଶ୍ରୀସମ୍ପ୍ରଦାୟୀ ବୈଷ୍ଣବାଚାର୍ଯ୍ୟଗଣ ଶ୍ରୀମନ୍ ନାରାୟଣ ରୂପେ ଗ୍ରହଣ କରିଥିବାରୁ ରତ୍ନ ସିଂହାସନରେ ଭୂଦେବୀ ଓ ଶ୍ରୀଦେବୀ ଉଭୟ ବିଷ୍ଣୁ ପତ୍ନୀ ରୂପେ ପୂଜା ପାଉଛନ୍ତି । ଦ୍ୱାରପାଳ ଜୟ ବିଜୟ ଓ ସମ୍ମୁଖରେ ସ୍ତମ୍ଭୋପରି ଗରୁଡ଼ ବିଦ୍ୟମାନ ।

କବି ଡିଣ୍ଡିମ ପଣ୍ଡିତେନ୍ଦ୍ର ଜୀବଦେବ କୃତ 'ଭକ୍ତି ଭାଗବତ'ର ମଙ୍ଗଳାଚରଣରେ ଶ୍ରୀଜଗନ୍ନାଥ ଭଗବାନ ଶେଷଶାୟୀ ଶ୍ରୀମନ୍ ନାରାୟଣ ରୂପେ ପରିକୀର୍ତ୍ତିତ ।

"ଅସ୍ତି ପ୍ରଶସ୍ତି ଲଳିତେ ଲବଣାବ୍ଧିତୀରେ ।
ନୀଳାଚଳଂ ଚଳଚଟୀ ମୁକୁଟାୟ ମାନଃ ॥
ଏକସ୍ତି ମୂର୍ତ୍ତି କୃତକାକୃତି ବିଶ୍ୱମୂର୍ତ୍ତିଃ ।
ଲକ୍ଷ୍ମୀ ପତିଃ ସକଳ ଦୈବତ ବନ୍ଦନୀୟଃ ॥"

ପୁନଶ୍ଚ ଦନେଇ ଦାସ (ଜନାର୍ଦ୍ଦନ ଦାସ) ଓ ମାର୍କଣ୍ଡ ପୁରାଣ ପ୍ରଣେତା ମହାଦେବ ଦାସଙ୍କ ନିମ୍ନୋକ୍ତ ପଦାବଳି ପ୍ରଣିଧାନ ଯୋଗ୍ୟ ।

"ନମସ୍ତେ ନମସ୍ତେ ପ୍ରଭୁ ନୀଳଗିରି ନାଥ ।
ନମସ୍ତେ ନମସ୍ତେ ପ୍ରଭୁ ଲକ୍ଷ୍ମୀ ଦେବୀ କାନ୍ତ ॥
ନମସ୍ତେ ନମସ୍ତେ ଅନ୍ତର୍ଯାମୀ ଜନାର୍ଦ୍ଦନ ।
ନମସ୍ତେ ନମସ୍ତେ ପ୍ରଭୁ ଗରୁଡ଼ ଆସନ ॥"

(ଦନେଇ ଦାସ)

"ନୀଳଗିରି ନାମେ ଅଛି ଏକଇ ଶଇଳ ।
ଚତୁର୍ଦ୍ଧା ମୂରତି ତହିଁ ଧରି ଆଦିମୂଳ ॥
ବ୍ରହ୍ମା, ବିଷ୍ଣୁ, ଈଶ୍ୱର ଆବର ଦିନମଣି ।
ଏହି ଚାରି ରୂପେ ବିଜେ ପ୍ରଭୁ ଚିନ୍ତାମଣି ॥"

(ମାର୍କଣ୍ଡେୟ ପୁରାଣ–ମହାଦେବ ଦାସ)

ନୀଳାଦ୍ରୀ କନ୍ଦରାନନ୍ଦ ବର୍ଷର ବିଭିନ୍ନ ପର୍ବ ପର୍ବାଣିରେ ଭଗବାନ ବିଷ୍ଣୁ ତଥା ତାଙ୍କର ଅବତାର ପୁରୁଷ ରୂପେ ଅପୂର୍ବ ବେଶଧାରଣ କରି ଭକ୍ତ ଚିତ୍ତ ବିନୋଦନ କରନ୍ତି । ଦଶହରାଦିନ ରାଜବେଶ, କାର୍ତ୍ତିକ ଶୁକ୍ଳ ଏକାଦଶୀ ଦିନ ଲକ୍ଷ୍ମୀ ନାରାୟଣ (ଠିଆ କିଆ ବେଶ), ଦ୍ୱାଦଶୀ ଦିନ ବାମନ (ବାଙ୍କ ଚୂଡ଼ ବେଶ), ତ୍ରୟୋଦଶୀ ଦିନ ତ୍ରିବିକ୍ରମ (ଆଡ଼କିଆ ବେଶ), ଚତୁର୍ଦ୍ଦଶୀ ଦିନ ଲକ୍ଷ୍ମୀ ନୃସିଂହ (ଡାଳିକିଆ ବେଶ), କାର୍ତ୍ତିକ ପୂର୍ଣ୍ଣମୀଦିନ ରାଜବେଶ, ପୌଷ ପୂର୍ଣ୍ଣମୀ ଦିନ ରାଜ ବେଶ, ମାଘ ପୂର୍ଣ୍ଣମୀରେ ଗଜ ଉଦ୍ଧାରଣ ବେଶ ଓ ଫାଲ୍‌ଗୁନ ପୂର୍ଣ୍ଣମୀ (ଦୋଳ ପୂର୍ଣ୍ଣମୀ) ଦିନ ରାଜ ବେଶରେ ଶ୍ରୀଜଗନ୍ନାଥ ଶଙ୍ଖଚକ୍ର ଧାରଣ କରି ବିଷ୍ଣୁ ରୂପେ ପ୍ରତିଭାତ ହୁଅନ୍ତି । ଉପରୋକ୍ତ ବେଶରେ ଅନନ୍ତ ରୂପୀ ବଳଭଦ୍ର ହଳ ମୂଷଳ ଧାରଣ କରିଥାଆନ୍ତି । ଏତଦ୍‌ବ୍ୟତୀତ ଶ୍ରୀଜଗନ୍ନାଥଙ୍କ ବାହୁଡ଼ା ଯାତ୍ରାରେ ରାଜନବର ସମ୍ମୁଖରେ ଲକ୍ଷ୍ମୀ ନାରାୟଣ ଭେଟ ନୀଳାଦ୍ରୀନାଥଙ୍କ ସହିତ ବୈକୁଣ୍ଠାଧିପତି ବିଷ୍ଣୁଙ୍କର ଅଭିନ୍ନତ୍ୱ ପ୍ରତିପାଦନ କରିଥାଏ । ଶ୍ରୀ ମନ୍ଦିରରେ ରାମ, କୃଷ୍ଣ, ବାମନ ଓ ନୃସିଂହାଦି ଅବତାର ପୁରୁଷଙ୍କ ଜନ୍ମ ଓ ଲୀଳୋତ୍ସବ ଶ୍ରୀଜଗନ୍ନାଥଙ୍କ ଶ୍ରୀଛାମୁରୁ ଆଜ୍ଞାମାଳ ପ୍ରାପ୍ତି ପରେ ଅନୁଷ୍ଠିତ ହୋଇଥାଏ । "ଅବତାରାଃ ପ୍ରବର୍ତ୍ତନ୍ତେ ବିଷ୍ଣୋରସ୍ୟ ଯୁଗେ ଯୁଗେ ।" (ସ୍କନ୍ଦ ପୁରାଣ ୩୧/୫୦)

"ଅବତାର ଯେତେ ଏହି ଜଗନ୍ନାଥ ଅଙ୍ଗରୁ ଖସି ମିଶନ୍ତି ।
ଲୀଳା ନିମନ୍ତେ ଶ୍ରୀ ନୀଳାଦ୍ରୀ ନାୟକ
ନିର୍ବିକାରେ ବସିଛନ୍ତି ।"

ଅଜ୍ଞାତ କୃଷ୍ଣ

## ଶ୍ରୀଜଗନ୍ନାଥ : ଶ୍ରୀନୃସିଂହ

ମାଳବ ରାଜା ପୁଣ୍ୟଶ୍ଳୋକ ଇନ୍ଦ୍ରଦ୍ୟୁମ୍ନ ପଦ୍ମଯୋନି ବ୍ରହ୍ମାଙ୍କର ପଞ୍ଚମ ପୁରୁଷ । ସେ ନୃସିଂହ ଓ ଦୁର୍ଗାଙ୍କ ପରମ ଭକ୍ତ ଥିଲେ । ବିଦ୍ୟା ପତିଙ୍କଠାରୁ ନୀଳମାଧବଙ୍କ ବିଷୟରେ ଶ୍ରବଣକରି ଦେବର୍ଷି ନାରଦଙ୍କ ସହିତ ପୁଷ୍ୟା ନକ୍ଷତ୍ର ସଂଯୁକ୍ତ ପୌଷ ଶୁକ୍ଳ ଷଷ୍ଠୀ ଶନିବାରଦିନ ଶ୍ରୀକ୍ଷେତ୍ର ଅଭିମୁଖେ ଯାତ୍ରାରମ୍ଭ କଲେ । ଯାତ୍ରାନୁକୂଳ ସମୟରେ ଇଷ୍ଟଦେବ ଭଗବାନ ନୃସିଂହ ଓ ଇଷ୍ଟଦେବୀ ଦୁର୍ଗାଙ୍କୁ ସାଷ୍ଟାଙ୍ଗ ପ୍ରଣିପାତ ପୂର୍ବକ ଯଥୋଚିତ ବନ୍ଦାପନା କଲେ । ଇଷ୍ଟଦେବ ଓ ଦେବୀଙ୍କୁ ଶିବିକାର ଅଗ୍ରଦେଶରେ ଉପସ୍ଥାପନ କରି ପ୍ରଦକ୍ଷିଣ ପୂର୍ବକ ସ୍ୱୟଂ ପଶ୍ଚାଦ୍ ଗମନ କଲେ ।

"ଦୃଷ୍ଟ୍ୱା ସ ନୃହରିଂ ଦିବ୍ୟ ସିଂହାସନ ସ୍ଥିତମ୍ ।
ପ୍ରଣମ୍ୟ ସାଷ୍ଟାଙ୍ଗବଦ୍ଧଂ ସନ୍ତୁଷ୍ଟ୍ୟା ପନିଷଦ ଗିରା ॥
ଦକ୍ଷ ପାର୍ଶ୍ୱସ୍ଥିତାଂ ଦୁର୍ଗାଂସର୍ବ ଦୁର୍ଗତି ମୋଚିନୀମ୍ ।
ବବନ୍ଦେ ଚରଣାଭ୍ୟାସେ ପଶ୍ୟନ୍ତିଂ କୃପୟାନ୍ୱୃପଃ ॥

(ସ୍କନ୍ଦ ପୁରାଣ ୧୧/୫୯–୬୦)

ପୁନଶ୍ଚ ପ୍ରଦକ୍ଷିଣୀ କୃତ୍ୟ ତୌ ଦେବୌ ନୃପସତ୍ତମଃ ।
ଶିବିକାୟାଂ ସମାରୋପ୍ୟ ପ୍ରତସ୍ଥେ ଚ ପୁରସ୍କୃତୌ ॥

(ସ୍କନ୍ଦପୁରାଣ ୧୧/୬୩)

ଇନ୍ଦ୍ରଦ୍ୟୁମ୍ନ ଶ୍ରୀକ୍ଷେତ୍ର ଉପକଣ୍ଠରେ ଅର୍ଥାତ୍ ବର୍ତ୍ତମାନ ଗୁଣ୍ଡିଚା ମନ୍ଦିର ନିକଟରେ ଏକ କିଶ୍ମା ଗୁରୁ ବୃକ୍ଷତଳେ ଦକ୍ଷିଣାଭିମୁଖୀ ନିସିଂହ ଦେବଙ୍କୁ ଦର୍ଶନ କରି କୃତ୍ୟ କୃତ୍ୟ ହେଲେ । ସେଠାରେ ଏକ ମନ୍ଦିର ନିର୍ମାଣ କରି ନୃସିଂହ ଦେବଙ୍କୁ ପ୍ରତିଷ୍ଠା କଲେ ଓ ସହସ୍ର ଅଶ୍ୱମେଧ ଯଜ୍ଞ ସମ୍ପାଦନ କଲେ । ନୃସିଂହ ଦେବଙ୍କ ଅପାର କରୁଣାରୁ ପୁଣ୍ୟଶ୍ଳୋକ ରାଜା ପୁଷ୍ୟା ନକ୍ଷତ୍ର ସଂଯୁକ୍ତ ଫାଲ୍‌ଗୁନ ଶୁକ୍ଳ ଦ୍ୱାଦଶୀ (ଗୋବିନ୍ଦ ଦ୍ୱାଦଶୀ) ଗୁରୁବାର ଦିନ ପୁରୀ ମହୋଦଧି କୂଳରେ ଅପୁରୁଷେୟ ଦାରୁବ୍ରହ୍ମଙ୍କୁ ଦର୍ଶନ କଲେ । ସେ ମହାଦାରୁର ଉଜ୍ଜଳ ଚକ୍ର ମଣ୍ଡଳ ମଧ୍ୟରେ ନୃସିଂହ ଦେବଙ୍କୁ ଦର୍ଶନ କରି ଇନ୍ଦ୍ରଦ୍ୟୁମ୍ନ ସଭକ୍ତି ପ୍ରଣାମ ଜଣାଇଲେ ।

ଫାଲ୍‌ଗୁନ ଶ୍ୟାମଳେ ପକ୍ଷେ ଦ୍ୱାଦଶ୍ୟାଂ ଜୀବ ବାସରେ ।
ଦଦର୍ଶ ନୃପ ତତ୍ରରେ ଅପୂର୍ବ ଦାରୁ ପାବନମ୍ ॥

ଚକ୍ର ଚିହ୍ନାଙ୍କିତ ଦାରୁ ନ୍ରୁହରି ଚକ୍ର ମଣ୍ଡଳେ ।
ଦର୍ଶନାତ୍ ପ୍ରଣିପାତେନ ନୃପଃ ନୃହରି ପ୍ରାର୍ଥୟନ୍ ।।"

(ଇନ୍ଦ୍ର ନୀଳମଣି)

ଉକ୍ତ ମହାଦାରୁରୁ ମୂର୍ତ୍ତି ଗଠନ ନିମିତ୍ତ ଶିଳ୍ପୀକୁଳ ଅସମର୍ଥ ହେବାରୁ ପରିଶେଷରେ ସ୍ୱୟଂ ଭଗବାନ ବିଷ୍ଣୁ ବ୍ରାହ୍ମଣ ବେଶ ଧାରଣ କରି ବିଶ୍ୱକର୍ମା ରୂପେ ଇନ୍ଦ୍ରଦ୍ୟୁମ୍ନ ସମ୍ମୁଖରେ ଉପସ୍ଥିତ ହେଲେ ।

"ବିଶ୍ୱକର୍ମା ଚ ବିଷ୍ଣୁଶ୍ଚ ବିପ୍ରରୂପଧରାବୁଭୌ ।
ଆଜଗ୍ମତୁର୍ମହୀପାବେ। ତଥା ତୁଲ୍ୟାଗ୍ର ଜନ୍ମନୌ ।।"

(ନାରଦ ପୁରାଣ, ଉତ୍ତର ଖଣ୍ଡ ୫୪/୨୬)

ବିଶ୍ୱକର୍ମା ଭଗବାନଙ୍କ ଚତୁଷ୍ଟୟ ମୂର୍ତ୍ତି ନିର୍ମାଣ କରି ନିଜେ ଅନ୍ତର୍ଦ୍ଧାନ ହେଲେ । ଇନ୍ଦ୍ରଦ୍ୟୁମ୍ନ ମୂର୍ତ୍ତି ପ୍ରତିଷ୍ଠା ପାଇଁ ବ୍ରହ୍ମଲୋକରୁ ପଦ୍ମଯୋନି ବ୍ରହ୍ମାଙ୍କୁ ଡାକିବାକୁ ଗଲେ । ବ୍ରହ୍ମା ଇନ୍ଦ୍ରଦ୍ୟୁମ୍ନଙ୍କ ବିନମ୍ର ନିବେଦନରେ ପ୍ରୀତ ହୋଇ ଶ୍ରୀକ୍ଷେତ୍ରରେ ଅବତରଣ କଲେ । ବ୍ରହ୍ମାଙ୍କ ମନ୍ତ୍ର ପ୍ରଭାବରେ ଜଗନ୍ନାଥ ପ୍ରଥମେ ନୃସିଂହ ରୂପରେ ପ୍ରତିଭାତ ହେଲେ । ନୃସିଂହଙ୍କ ଭୟଙ୍କର ରୂପ ତେଜ ସନ୍ଦର୍ଶନରେ ରାଜନ୍ୟ ପ୍ରଳୟ କାଳୀନ ବ୍ୟାକୁଳତା ପ୍ରକାଶ କଲେ । ଚତୁର୍ଦ୍ଧାମୂର୍ତ୍ତି ନୃସିଂହ ରୂପରେ ପ୍ରକଟିତ ହେବାର କାରଣ ଇନ୍ଦ୍ରଦ୍ୟୁମ୍ନ ଆଶ୍ଚର୍ଯ୍ୟାନ୍ୱିତ ହୋଇ ପଚାରିବାରୁ ବ୍ରହ୍ମା କହିଲେ, "ନୃସିଂହ ମୂର୍ତ୍ତି ଭଗବାନଙ୍କ ଆଦ୍ୟମୂର୍ତ୍ତି । ଭଗବାନ ମୌଳିକ ରୂପ ଉକ୍ତ ନୃସିଂହ ରୂପରେ ରୂପାୟିତ। ଶ୍ରୀଜଗନ୍ନାଥ ହେଉଛନ୍ତି ନୀଳାଦ୍ରୀ ସିଂହ ।"

"ଆଦ୍ୟାମୂର୍ତ୍ତି ଭଗବତୋ ନରସିଂହା କୃତି ର୍ନୃପ ।
ନାଥସ୍ୱଣେନ ପ୍ରଥିତା ମଦନୁଗ୍ରହତ ସ୍ତ୍ୱୟି ।।"

(ସ୍କନ୍ଦ ପୁରାଣ ୨୮/୩୮)

ନାରଦଙ୍କ ପ୍ରଶ୍ନୋତ୍ତର ଦେବାକୁ ଯାଇ ବ୍ରହ୍ମା କହିଲେ, "ହୁଏତ, ଅଜ୍ଞ କେଉଁ ମୂଢ଼ ବ୍ୟକ୍ତି ପ୍ରତ୍ୟକ୍ଷ ବ୍ରହ୍ମରୂପୀ ଜଗନ୍ନାଥଙ୍କୁ କାଷ୍ଠ ବୋଲି ଭାବି ଅବହେଳା କରିବ, ସେହିହେତୁ ମୁଁ ସର୍ବଶ୍ରେଷ୍ଠ ପରମେଷ୍ଠି ମନ୍ତ୍ରରେ ଅଭିମନ୍ତ୍ରିତ କରିଛି । ଅତଃ ଭଗବାନଙ୍କ ତାଦୃଶ ରୂପ ପ୍ରକାଶ ।" ତା'ପରେ ବ୍ରହ୍ମା ଯଜ୍ଞ ନୃସିଂହ ମୂର୍ତ୍ତି ଉପରେ ନୃସିଂହ ମନ୍ତ୍ରାଙ୍କିତ କରି ତଦୁପରି ଅଥର୍ବ ବେଦ ବିହିତ ନୃସିଂହ ଦେବଙ୍କ ମନ୍ତ୍ରରାଜ ସନ୍ନିବେଶ କଲେ ଓ ସ୍ୱୟଂ ଇନ୍ଦ୍ରଦ୍ୟୁମ୍ନ ଉକ୍ତ ନୃସିଂହ ମନ୍ତ୍ରରେ ଦୀକ୍ଷିତ ହେଲେ । ବେଦାନ୍ତ ବିଦ୍‌ମାନଙ୍କ ମତରେ ଉକ୍ତ ମନ୍ତ୍ର ବୈଷ୍ଣବ ନିର୍ମାଣ ମନ୍ତ୍ର । ଇନ୍ଦ୍ରଦ୍ୟୁମ୍ନ ଉକ୍ତ ମନ୍ତ୍ରରେ ଦୀକ୍ଷିତ ହେବାପରେ ବ୍ରହ୍ମା ନୃସିଂହଙ୍କ ସ୍ତବପାଠ କଲେ ।

"ନମୋଽସ୍ତୁ ତେ ଦେବ ବରୈକ ସିଂହ ।
ନମୋଽସ୍ତୁ ପାଦୌଘ ଗଜୈକ ସିଂହ ।।
ନମୋଽସ୍ତୁ ଦୁଃଖାର୍ଣ୍ଣବ ପାରସିଂହ ।
ନମୋଽସ୍ତୁ ତେଯୋମୟ ଦିବ୍ୟସିଂହ ।।
ନମୋଽସ୍ତୁ ସର୍ବାକୃତ ଚିଦ୍‌ସିଂହ ।
ନମୋଽସ୍ତୁତେ କ୍ଲେଶ ବିମୁକ୍ତ ସିଂହ ।।
ନମୋଽସ୍ତୁତେ ଦିବ୍ୟବପୁ ନୃସିଂହ ।
ନମୋଽସ୍ତୁତେ ବୀର ବରୈକ ସିଂହ ।।
ନମୋଽସ୍ତୁତେ ଦୈତ୍ୟ ବିଦାର ସିଂହ ।
ନମୋଽସ୍ତୁତେ ଦେବେଶ୍ୱର୍ଯ୍ୟ ଦେବସିଂହ ।।
ନମୋଽସ୍ତୁ ବେଦାନ୍ତ ବନୈକ ସିଂହ ।
ନମୋଽସ୍ତୁତେ ଯୋଗି ଗୁହୈକ ସିଂହ ।।
ନମୋଽସ୍ତୁତେ ସିଂହ ବିଶେଷ ସିଂହ ।
ନମୋଽସ୍ତୁତେ ନୀଳାଚଳ ଶୃଙ୍ଗ ସିଂହ ।।

(ସ୍କନ୍ଦ ପୁରାଣ ୨୮/୧୪-୧୭)

ପଦ୍ମଯୋନିଙ୍କ ସ୍ତବପାଠରେ ନୃସିଂହ ଉଗ୍ର ରୂପ ପରିହାର କରି ପ୍ରଶାନ୍ତ ରୂପ ଧାରଣ କଲେ । ଊର୍ଦ୍ଧ୍ୱ ହସ୍ତ ଦ୍ୱୟରେ ଚକ୍ର ଓ ପିନାକ ଓ ନିମ୍ନ ହସ୍ତ ଦ୍ୱୟରେ ବରାଭୟ । ଚନ୍ଦ୍ର ସୂର୍ଯ୍ୟାଗ୍ନି ସଦୃଶ ଦେଦୀପ୍ୟମାନ ତ୍ରିନୟନ । ବକ୍ଷସ୍ଥଳରେ ଲକ୍ଷ୍ମୀ ଓ ପଶ୍ଚାଦ୍‌ଭାଗରେ ଛତ୍ରାକୃତି ସହସ୍ର ଫଣାଯୁକ୍ତ ହଳ ମୂଷଳଧାରୀ ଶେଷଦେବ ଅନନ୍ତ ଶୋଭାୟମାନ। ଦ୍ୱାତ୍ରିଂଶ ପଦ୍ମାପରି ଅଟ୍ଟହାସ ବଦନରେ ନୃସିଂହଦେବ ଉପବିଷ୍ଟ ।

ନୃସିଂହ ଶାନ୍ତ ବପୁସ୍ତଂ ଲକ୍ଷ୍ମୀ ସଂଶ୍ଳିଷ୍ଟ ବକ୍ଷସମ୍ ।୨୭"
ଚକ୍ରଂ ପିନାକଂ ଦଧତଂ ଚନ୍ଦ୍ରସୂର୍ଯ୍ୟାଗ୍ନି ଚକ୍ଷୁଷମ୍ ।
ଜାନୁ ପ୍ରସାରିତ କର ସରୋଜ ଦ୍ୱନ୍ଦ୍ୱ ମୁକ୍ତନ୍ଦମ୍ ।।୨୮"
ଯୋଗ ପଟ୍ଟ ସମାରୂଢ଼ଂ ଦ୍ୱାତ୍ରିଂଶଦ୍ଦଳ ପଦ୍ମକେ
ମନ୍ତ୍ର ବର୍ଣ୍ଣମୟେ ମଧ୍ୟେ କର୍ଣ୍ଣିକା ପ୍ରଣବୋଜ୍ଜ୍ୱଳେ ।।୨୯"
ସୁଖାସୀନଂ ସାଟ୍ଟହାସଂ ବୀକ୍ଷନ୍ତଂ ଶ୍ରୀମୁଖାମ୍ବୁଜମ୍ ।
ସଟା ମଣ୍ଡିତ ବକ୍ତ୍ରାବ୍ଜଂ ଦିବ୍ୟ ରତ୍ନୋ ଜ୍ଜ୍ୱଳା କୃତି ।।୩୦"
ଫଣା ସହସ୍ରଂ ବିସ୍ତାର୍ଯ୍ୟ ପଶ୍ଚାତ୍ ଛତ୍ରାକୃତିଂ ବିଭୋ ।
ଦଦର୍ଶ ବଳଭଦ୍ରଂ ତଂ ହଳ ଲଙ୍ଗଳଧାରିଣମ୍ ।।୩୧"

(ସ୍କନ୍ଦ ପୁରାଣ ୨୮/୨୭-୩୧)

ତଦନନ୍ତର ସଂସାର ଦୁଃଖଭାର ଲାଘବ ପାଇଁ ପରଂବ୍ରହ୍ମ ଦାରବ ବିଗ୍ରହରେ ରୂପାୟିତ ହେଲେ ।

"ଖଣ୍ଡନାତ୍ ସର୍ବ ଦୁଃଖାନାମଖଣ୍ଡାନନ୍ଦ ଦାନତଃ ।
ସ୍ୱଭାବାତ୍ ଦାରୁବେଶୋହି ପରଂ ବ୍ରହ୍ମାଭିଧୀୟତେ ।।

(ସ୍କନ୍ଦପୁରାଣ ୨୮/୪୦)

ଏହିପରି ଏକ ବ୍ରହ୍ମ, ନୃସିଂହ ବିଗ୍ରହ ମଧ୍ୟରେ ତ୍ରିଗୁଣାତ୍ମକ ବା ତ୍ରିଧା ରୂପରେ ପ୍ରତିଭାତ ହେଲେ ।

"ଜ୍ଞାନ ନୃସିଂହୋ ଜଗତାମଧୀଶଃ ।
ତେଜୋ ନିବାସୋଽପର ସନ୍ନିକାଶଃ ।।
ରୂପଂ ମଦ୍ଦୈତ ତ୍ରିବିଧଂ ପ୍ରଦିଷ୍ଟଂ ।
ତସ୍ୟା ପ୍ରମେୟସ୍ୟ ଜନାର୍ଦ୍ଦନସ୍ୟ ।।"

ନୃସିଂହ ତାପିନୀ ଉପନିଷଦ"ରେ ପ୍ରଣବ ରୂପୀ ନୃସିଂହଙ୍କ ଚତୁର୍ଦ୍ଧା ପାଦ ଦ୍ରଷ୍ଟବ୍ୟ । ଏହା ରତ୍ନ ସିଂହାସନସ୍ଥ ଚତୁର୍ଦ୍ଧା ଦାରବ ମୂର୍ତ୍ତିର ପରିଚାୟକ ।

ପ୍ରଣବର ପ୍ରଥମ ପାଦ – ସ୍ଥୂଳ ଜଗତ – ତାତ୍ତ୍ୱିକ ନାମ ବୈଶ୍ୱାନର

ଦ୍ୱିତୀୟ ପାଦ – ସୂକ୍ଷ୍ମ ଜଗତ – ତାତ୍ତ୍ୱିକ ନାମ ହିରଣ୍ୟଗର୍ଭ

ତୃତୀୟ ପାଦ – ବିଜ୍ଞାନମୟ ଜଗତ – ତାତ୍ତ୍ୱିକ ନାମ ପ୍ରାଜ୍ଞ ।

ଚତୁର୍ଥ ପାଦ – ଆନନ୍ଦମୟ ଜଗତ – ତାତ୍ତ୍ୱିକ ନାମ ତୁରୀୟ ।

ପଦ୍ମଯୋନି ବ୍ରହ୍ମଙ୍କ ମନ୍ତ୍ର ପ୍ରଭାବରେ ଶ୍ରୀଜଗନ୍ନାଥ ଯଜ୍ଞ ନୃସିଂହ ରୂପରେ ଆବିର୍ଭୂତ ହୋଇଥିଲେ କିନ୍ତୁ ହିରଣ୍ୟକଶିପୁ ବିନାଶକାରୀ ନୃସିଂହଦେବ ଭଗବାନ ବିଷ୍ଣୁଙ୍କର ଅଂଶାବତାର ।

ପ୍ରତିବର୍ଷ ବୈଶାଖ ଶୁକ୍ଳ ଚତୁର୍ଦ୍ଦଶୀ (ନୃସିଂହ ଚତୁର୍ଦ୍ଦଶୀ) ଦିନ ନୃସିଂହ ଜନ୍ମୋତ୍ସବ ଶ୍ରୀମନ୍ଦିରରେ ପାଳିତ ହୋଇଥାଏ । ଚନ୍ଦନ ପୁଷ୍କରିଣୀରୁ ଦିଅଁ ଫେରିବା ପରେ ପାଳିଆ ପଣ୍ଡା ଶ୍ରୀଜଗନ୍ନାଥଙ୍କ ଶ୍ରୀଅଙ୍ଗରୁ ଆଜ୍ଞାମାଳ ନେଇ ଘଣ୍ଟା ଛତା କାହାଳୀ ସହ ସିଂହ ଦ୍ୱାର ଦୋଳମଣ୍ଡପ ସାହୀ ବାଟେ ଚକ୍ର ନାରାୟଣଙ୍କ ନିକଟକୁ ଯାଆନ୍ତି । ସେଠାରେ ଆଜ୍ଞାମାଳ ଦେଇ ଶ୍ରୀମନ୍ଦିର ପ୍ରତ୍ୟାବର୍ତ୍ତନ କରନ୍ତି । ଭିନିବାଡ଼ରେ ମୈଲମ ହୋଇ ଆଳତି ବନ୍ଦାପନା ଓ ପଞ୍ଚାମୃତ ମହାସ୍ନାନ ହୁଏ । ସର୍ବାଙ୍ଗ (ଚନ୍ଦନଲାଗି) ପରେ ନବବସ୍ତ୍ର ଓ ଛ' ମୂର୍ତ୍ତି ଅଳଙ୍କାର ଲାଗି ହୁଅନ୍ତି । ଜଗନ୍ନାଥ ଓ ବଳଭଦ୍ରଙ୍କ ବାଡ଼ରେ ଦୁଇଟି ଲେଖାଏ କୁଣ୍ଡଳ ଓ ସୁଭଦ୍ରାଙ୍କ ବାଡ଼ରେ ତଡ଼ଗି ଲାଗିହୁଏ । ଦକ୍ଷିଣ ଗୃହରୁ ରତ୍ନ ସିଂହାସନକୁ ନୃସିଂହ ବିଜେ ହୁଅନ୍ତି ଓ ମହାପ୍ରଭୁଙ୍କ ଶ୍ରୀଭୁଜରୁ ଆଜ୍ଞାମାଳ ପ୍ରାପ୍ତିପରେ ନୃସିଂହ ମୁକ୍ତି ମଣ୍ଡପ ଉପରିସ୍ଥ ଖଟୁଲିରେ ବିଜେ ହୁଅନ୍ତି । ମୁକ୍ତି ମଣ୍ଡପ ପାର୍ଶ୍ୱସ୍ଥ ନୃସିଂହ ମନ୍ଦିରରେ ପତି ମହାପାତ୍ର ମହାସ୍ନାନ ସମ୍ପାଦନ କରନ୍ତି । ମୁକ୍ତି ମଣ୍ଡପ ସମୀପ ନୃସିଂହଙ୍କ ନିକଟରେ ପୁଜାପଣ୍ଡା ମହାସ୍ନାନ ସମ୍ପାଦନ କରନ୍ତି । ମହାସ୍ନାନ ପରେ ଉଭୟ ନୃସିଂହଙ୍କ ନିକଟରେ ପଣ୍ଡୋପସ୍କର ଶୀତଳ ଭୋଗ ହୁଏ । ବନ୍ଦାପନା ପରେ ନୃସିଂହ ଝୁଲଣ ମଣ୍ଡପତଳେ ରଖାଯାଇଥିବା ବିମାନରେ ବିଜେ ହୋଇ ଜଗନ୍ନାଥ ବଲ୍ଲଭକୁ ଯାତ୍ରା କରନ୍ତି । ସେଠାରେ ଶୀତଳ ଭୋଗ ପରେ ନୃସିଂହ ଶ୍ରୀମନ୍ଦିର ପ୍ରତ୍ୟାବର୍ତ୍ତନ କରନ୍ତି ।

ପଷ୍ଟ୍ର ପୂର୍ଣ୍ଣମୀ (ମାର୍ଗଶୀର ପୂର୍ଣ୍ଣମୀ) ଦିନ ଶ୍ରୀଜଗନ୍ନାଥଙ୍କ ମଧ୍ୟାହ୍ନ ଧୂପ ପରେ ଦକ୍ଷିଣଗୃହରୁ ନୃସିଂହ ପ୍ରତିମା ରତ୍ନ ସିଂହାସନରେ ବିଜେ ହୁଅନ୍ତି । ମହାପ୍ରଭୁଙ୍କ ଦକ୍ଷିଣ ଭୁଜରୁ ଆଜ୍ଞାମାଳ ପ୍ରାପ୍ତିପରେ ଝୁଲଣ ମଣ୍ଡପତଳେ ଥିବା ବିମାନରେ ନୃସିଂହ ବିଜେ ହୋଇ ମାର୍କଣ୍ଡ (କଣ୍ଡୁ), ପଣ୍ଡୁ, ଅଙ୍ଗିରା ଓ ଭୃଗୁ ଆଶ୍ରମ ଭ୍ରମଣ କରିବାକୁ ଯାଆନ୍ତି । ପୂର୍ବେ ମହାମାରୀ ରୋଗରୁ ରକ୍ଷା ପାଇବା ନିମନ୍ତେ ସେବକଗଣ ଶ୍ରାବଣ ଶୁକ୍ଳ ପକ୍ଷ ନବମୀ ଦିନ ନୃସିଂହଙ୍କୁ ଧରି ଆଶ୍ରମକୁ ନେଉଥିଲେ । ଏହା 'ବାଡି ନୃସିଂହ' ବିଜେନାମରେ ଅଭିହିତ । କାର୍ତ୍ତିକ ଶୁକ୍ଳ ଚତୁର୍ଦ୍ଦଶୀଦିନ ନବ କଳେବରର ସମସ୍ତ ଗୋପନୀୟ କାର୍ଯ୍ୟାବଳି ନୃସିଂହ ସ୍ଥାପନ ପୂର୍ବକ ସମ୍ପାଦିତ ହୋଇଥାଏ । ଦାରୁ ଛେଦନ ପୂର୍ବରୁ ପାତାଳ ନୃସିଂହ ମନ୍ତ୍ରରେ ନୃସିଂହଙ୍କୁ ଆରାଧନା କରି ସହସ୍ର ଆହୁତି ଦିଆଯାଏ । ଦାରୁ ଚତୁଷ୍ଟୟକୁ ଶ୍ରୀମନ୍ଦିରକୁ ଆଣି ଚକାବଡ଼ି ନୃସିଂହ ମଣ୍ଡଳରେ ଅବସ୍ଥାନ କରି ନୃସିଂହ ରୂପରେ ପୂଜା କରାଯାଏ । ବିଗ୍ରହ ପ୍ରତିଷ୍ଠା ସମୟରେ ନୃସିଂହ ମନ୍ତ୍ରରେ ଉପାସନା ଓ ପ୍ରତିଷ୍ଠା ହୋଇଥାଏ ।

ଶ୍ରୀଜଗନ୍ନାଥଙ୍କ ସହିତ ନୃସିଂହଙ୍କର ନିବିଡ଼ ସମ୍ପର୍କ, କେତେକଙ୍କ ମତରେ ଯଜ୍ଞ ନୃସିଂହ ବା ଯଜ୍ଞନାଥ ଶବ୍ଦରୁ ଜଗନ୍ନାଥ ଶବ୍ଦ ସୃଷ୍ଟି । ଶ୍ରୀଜଗନ୍ନାଥଙ୍କ ମୂର୍ତ୍ତିତତ୍ତ୍ୱ ଅନୁଧ୍ୟାନ କରି ଜର୍ମାନୀ ଗବେଷିକା ଏସ୍ ମାନ୍, ଶ୍ରୀଜଗନ୍ନାଥଙ୍କ ବିଗ୍ରହ ନୃସିଂହ ଆଦର୍ଶରେ ନିର୍ମିତ ବୋଲି ନିମ୍ନୋକ୍ତ ମତ ବ୍ୟକ୍ତ କରି ଛନ୍ତି– "A close scrutiny of the Jagannath image betrays that the head is an attempt to represent lion head and its round eyes are the typical features of Narasingh's fury." A Eschmann– The Cult of Jagannath and Regional tradition of Orissa.

ଚତୁଷ୍ଟୟ ଦାରବ ବିଗ୍ରହ ବ୍ରହ୍ମାଙ୍କ ଦ୍ୱାରା ପରମେଷ୍ଠି ମନ୍ତ୍ରରେ ଅଭିମନ୍ତ୍ରିତ ହେବାପରେ ଯଜ୍ଞ ନୃସିଂହ ରୂପେ ପ୍ରତିଷ୍ଠିତ ହେଲେ। ଅର୍ଥାତ୍ ଶବର ଉପାସିତ ସାଙ୍କେତିକ ଦାରବ ବିଗ୍ରହ ପରବର୍ତ୍ତୀ କାଳରେ ବ୍ରାହ୍ମଣ୍ୟ ଧର୍ମର ପ୍ରଭାବରେ ଏତାଦୃଶ ରୂପ ଗ୍ରହଣ କରିଥିବା ଅନୁମେୟ ଅର୍ଥାତ୍ ଶବର ଉପାସିତ ଦେବତାଙ୍କୁ ସର୍ବଜନାଦୃତ କରିବାପାଇଁ ବ୍ରାହ୍ମଣମାନଙ୍କର ଏତାଦୃଶ ପ୍ରଚେଷ୍ଟା । ଉପରୋକ୍ତ ଅନୁଶୀଳନୀ ଶ୍ରୀଜଗନ୍ନାଥ ଓ ନୃସିଂହଙ୍କ ମଧ୍ୟରେ ଅଭିନତ୍ୱ ପ୍ରତିପାଦନ କରିବା ସମୟରେ, ନିର୍ଗୁଣ ବ୍ରହ୍ମ ଜଗନ୍ନାଥଙ୍କଠାରୁ ସଗୁଣବ୍ରହ୍ମ ନୃସିଂହଙ୍କ ଉତ୍ପତ୍ତି ସୂଚାଇଥାଏ । ଏ କ୍ଷେତ୍ରରେ ନୃସିଂହ ପୁରାଣ ପ୍ରଣେତା ଶ୍ରୀ ପୀତାମ୍ବର ଦାସଙ୍କ ନିମ୍ନୋକ୍ତ ପଦାବଳି ପ୍ରଣିଧାନଯୋଗ୍ୟ ।

"ଯେ ଅଟଇ ଜଗନ୍ନାଥ ସେ ନୃସିଂହ ଅଟେ ।
ଜଗନ୍ନାଥ ହୃଦୁ ଜନ୍ମ ନୃସିଂହ ପ୍ରକଟେ ॥"

## ଶ୍ରୀଜଗନ୍ନାଥ : ଶ୍ରୀବାମନ :

ବାମନବତାରରେ ଭଗବାନ ବିଷ୍ଣୁ ତ୍ରିବିକ୍ରମ ରୂପ ଧାରଣ କରି ଦାନବୀର ବଳିକୁ ସ୍ୱାଭିମାନ ଚୂର୍ଣ୍ଣ କରିଥିବା ସର୍ବଜନ ବିଦିତ। କିନ୍ତୁ ରଥଯାତ୍ରାରେ ଶ୍ରୀବାମନ ରୂପେ ଜଗନ୍ନାଥଙ୍କର ମହିମାଗାନ କରାଯାଏ । "ରଥେତୁ ବାମନଂ ଦୃଷ୍ଟ୍ୱା ପୁନର୍ଜନ୍ମ ନ ବିଦ୍ୟତେ ।" ସେ ଶ୍ରୀଜଗନ୍ନାଥ ଗୁରୁର୍ଗରୀୟାନ୍ ହେଲେ ମଧ୍ୟ ଅଣୁରଣୀୟାନ୍ । ସେ ସର୍ବତ୍ର ପରିବ୍ୟାପ୍ତ ହେଲେ ମଧ୍ୟ ଶରୀର ରୂପୀ ରଥରେ ବୁଦ୍ଧ୍ୟାଦି ଦ୍ୱାରା ଶରୀର ଧାରି ଆତ୍ମା ରୂପୀ ବାମନ । ବାମନ ବିଶ୍ୱରେ ସର୍ବତ୍ର ପରିବ୍ୟାପ୍ତ ଓ ସକଳ ଜୀବର ଶରୀର ମଧ୍ୟରେ ଜୀବୀଭୂତ ହେଲେ ମଧ୍ୟ ଇନ୍ଦ୍ରିୟ ଉପଲବ୍ଧ ହୁଅନ୍ତି । କେବଳ ସାଧକ ବ୍ୟତୀତ ସାଧାରଣ ମନୁଷ୍ୟ ଜାଣିପାରେ ନାହିଁ । ଶ୍ରୀଜଗନ୍ନାଥଙ୍କ ରଥ ଯାତ୍ରାରେ ତିନୋଟି ରଥ ହେଲାପରି ଆତ୍ମା ରୂପୀ ବାମନଙ୍କ ତିନି ରଥ ବିଦ୍ୟମାନ ଯଥା (୧) ସ୍ଥୂଳ ଶରୀର (୨) ସୂକ୍ଷ୍ମ ଶରୀର ଓ (୩) କାରଣ ଶରୀର । ଏ ତିନୋଟି ରଥର ପ୍ରତୀକ ଯଥାକ୍ରମେ ବଳଭଦ୍ର, ସୁଭଦ୍ରା ଓ ଜଗନ୍ନାଥଙ୍କ ରଥତ୍ରୟ । ରଥଯାତ୍ରା ସମୟରେ ଆମେ ବଡ଼ଦାଣ୍ଡର ଦୋକାନପତ୍ର ଆଡ଼େଇ ସଫା ରାସ୍ତା ପରି ଯୋଗୀ ବ୍ରହ୍ମପଥ ବା ସୁଷୁମ୍ନା ପଥକୁ ଯୋଗ ପ୍ରକ୍ରିୟାଦ୍ୱାରା ଉନ୍ମୁକ୍ତ ରଖେ । ରଥ ବିଭିନ୍ନ ସ୍ଥାନରେ ଅଟକି ଯିବାପରି ଯୋଗମାର୍ଗରେ ଷଡ଼ଚକ୍ରରେ କିଛି ସମୟ ଅଟକି ଯିବାକୁ ପଡ଼େ । ଷଡ଼ଚକ୍ର ଅର୍ଥାତ୍

ମୂଳାଧାର, ସ୍ୱାଧିଷ୍ଠାନ, ମଣିପୁର, ଅନାହତ, ବିଶୁଦ୍ଧ ଓ ଆଜ୍ଞାଚକ୍ରରେ ରହି ପରିଶେଷରେ ଗୁଣ୍ଡିଚା ମନ୍ଦିର ଅର୍ଥାତ୍ 'ସହସ୍ରାର'ରେ ପହଞ୍ଚେ ମାନଚିତ୍ର (MAP)ର ଉର୍ଦ୍ଧ୍ୱକୁ ଉତ୍ତର ଓ ଅଧଭାଗକୁ ଦକ୍ଷୀଣ ଚିହ୍ନିତ କରିବାପରି ମାନବ ଶରୀରର ସମସ୍ତ ଉତ୍ତର ଦିଗ ଓ ଗୁହ୍ୟଦେଶ ଦକ୍ଷିଣ । ରଥଯାତ୍ରୀ ଦକ୍ଷିଣ ଦିଗରୁ ଉତ୍ତର ଦିଗକୁ ଅନୁଷ୍ଠିତ ହେବାପରି ଯୋଗଦ୍ୱାରା ପ୍ରାଣବାୟୁକୁ ଶରୀରର ଗୁହ୍ୟଦେଶରୁ ସହସ୍ରାରକୁ ଉତ୍ତୋଳନ କରାଯାଏ । ରଥ ମାଉସୀମା ମନ୍ଦିର ନିକଟରେ କିଛି ସମୟ ଅଟକିଯିବା ପରି ପ୍ରାଣବାୟୁ ଆଜ୍ଞାଚକ୍ର ବା କୁଟସ୍ଥରେ ଅଳ୍ପଅଟକି ରହି ଗୁଣ୍ଡିଚା ମନ୍ଦିର ଅର୍ଥାତ୍ ସହସ୍ରାରରେ ପହଞ୍ଚେ । ଯୋଗମାର୍ଗରେ ଏହି ଶରୀର ରୂପୀ ରଥରେ ଆତ୍ମାପୁରୁଷ ବା ବାମନଙ୍କୁ ଦର୍ଶନ କଲେ ପୁନର୍ଜନ୍ମ ହେବ ନାହିଁ । ଏହାହିଁ ଯୋଗୀର ନିର୍ବିକଳ୍ପାବସ୍ଥା ବା ତୁରୀୟାବସ୍ଥା । ମନୁଷ୍ୟ ଥରେ ଏହି ଅମୃତାବସ୍ଥା ବା ଦିବ୍ୟାବସ୍ଥା ବା ସମାଧି ଅବସ୍ଥାରେ ବ୍ରହ୍ମ ସାକ୍ଷାତ୍ କରି ଜୀବବୋଧ ବା ସହଜ ଅବସ୍ଥାକୁ ଫେରି ଆସିଲେ ସର୍ବଦା ବ୍ରହ୍ମ ସ୍ମରଣ ହୁଏ । ଯୋଗ ମାର୍ଗରେ ବାମନ ଦର୍ଶନ ଅର୍ଥାତ୍ ଆତ୍ମ ଦର୍ଶନ ବା ଆତ୍ମୋପଲବ୍ଧି ହେଲେ ମନୁଷ୍ୟର ମର ଶରୀର ପୁରୀ ବା ପୁରୁଷୋତ୍ତମ କ୍ଷେତ୍ରରେ ରୂପାନ୍ତରିତ ହେବ । ବଳରାମ ରୂପୀ ଶରୀର କ୍ଷେତ୍ରକୁ ଯୋଗାଭ୍ୟାସ ଦ୍ୱାରା କର୍ଷଣ କରି ବହିର୍ମୁଖୀ ଜ୍ଞାନ ବା ବାଲୁକା ସଫା କଲେ, ଦିବ୍ୟଜ୍ଞାନ ଅଙ୍କୁରିତ ହେବା ସଙ୍ଗେ ମର ଶରୀର ପୁଣ୍ୟଭୂମି ଶ୍ରୀକ୍ଷେତ୍ରରେ ରୂପାନ୍ତରିତ ହେବ ।

"ଇଦଂ ଶରୀରଂ କୌନ୍ତେୟ କ୍ଷେତ୍ରମିତ୍ୟଭିଧୀୟତେ ।
ଏତଦ୍ ଯୋ ବେତ୍ତି ତଂ ପ୍ରାହୁଃ କ୍ଷେତ୍ରଜ୍ଞ ଇତିତଦ୍ ବିଦଃ ।"

(ଭଗବଦ୍ ଗୀତା)

ଯୋଗୀ ସହସ୍ରାରରେ ବ୍ରହ୍ମ ସାକ୍ଷାତ୍‌କରି ଯେଉଁ ଆତ୍ମ ପ୍ରସାଦ ଲାଭକରେ ତାହାହିଁ ମହାପ୍ରସାଦ ଅର୍ଥାତ୍ ମନୁଷ୍ୟ ସ୍ଥିତ ପ୍ରଜ୍ଞା ବା ସମଦର୍ଶୀ ହୋଇଥାଏ । "କୀଟେ ଦ୍ୱିଜେ ତଥା ନରେ ମୁନିଚୈବ ଶ୍ୱପାକେଚ ।" ଓ ଜଗତର ପ୍ରତ୍ୟେକ ବସ୍ତୁରେ ଭଗବଦ୍ ସତ୍ତା ଉପଲବ୍ଧି କରେ "ଈଶାବାସ୍ୟମିଦଂ ସର୍ବଂ ଯତ୍ କିଂଚିତ୍ ଜଗତ୍ୟାଂ ଜଗତ ।"

ସେଥିପାଇଁ ଓଡ଼ିଆ ଭାଗବତରେ ଉଲ୍ଲେଖ ଅଛି— "ଏ ଦେହ ଥିଲେହିଁ ଉଦ୍ଧବ । କେତେ ନୋହିବ ଶୁଭାଶୁଭ ।" "ଶରୀରଂ ଆଦ୍ୟଂ ଖଳୁ ଧର୍ମ ସାଧନଂ ।" ତେଣୁ ଏ ଶରୀର ହେଉଛି ଜଗନ୍ନାଥ ମନ୍ଦିର ବା ରଥ ଓ ଆତ୍ମୋପଲବ୍ଧି ହେଉଛି ଶରୀରସ୍ଥ ଆତ୍ମାପୁରୁଷ ବା ଜଗନ୍ନାଥଙ୍କୁ ଦର୍ଶନ କରିବା । ଜୀବ ଥରେ ମାତ୍ର ଆତ୍ମାରୂପୀ ବାମନ ବା ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କଲେ ପୁନର୍ଜନ୍ମ ବା ଜୀବନଚକ୍ରରୁ ମୁକ୍ତିପାଏ ।

ଆଷାଢ଼ ଶୁକ୍ଳ ଏକାଦଶୀ ବା ହରିଶୟନ ଏକାଦଶୀ ଦିନ ତିନୋଟି ରଥ ବାହୁଡ଼ା ଯାତ୍ରାପରେ ସିଂହଦ୍ୱାର ସମ୍ମୁଖରେ ରହନ୍ତି । ତିନି ରଥରେ ଜିଉଙ୍କର ସୁନାବେଶ ବା ରାଜବେଶ ହୁଏ । ଉକ୍ତ ସମୟରେ ଶ୍ରୀମନ୍ଦିରରେ ହରିଶୟନ ଉତ୍ସବ ପାଳନ କରାଯାଏ । ଶୟନ ଯାତ୍ରା ବିଧି ପାଳନ ପୂର୍ବରୁ ବାମନ ରୂପୀ ଜଗନ୍ନାଥଙ୍କ ଆଜ୍ଞା ଭିକ୍ଷା କରାଯାଏ ।

"ହେ ଦେବ ଦେବ ବଳିରାଜ ପୂଜ୍ୟ
ତ୍ୱାଙ୍କାଂ ଗୁରୁତ୍ୱଂ ଶୟନସ୍ୟ କୃତ୍ୟେ ।" ।
(ବାମଦେବ ସଂହିତା ୧୯ ଅଧ୍ୟାୟ)

ଭାଦ୍ରବ ଶୁକ୍ଳ ଦ୍ୱାଦଶୀଦିନ ଶ୍ରୀମନ୍ଦିରରେ ବାମନ ଜନ୍ମୋତ୍ସବ ପାଳନ କରାଯାଏ । ଶ୍ରୀଜଗନ୍ନାଥଙ୍କ ମଧ୍ୟାହ୍ନ ଧୂପ ଘଣ୍ଟା ଛତା କାହାଳି ସହ ସମ୍ପାଦିତ ହୁଏ । ଜୟ ବିଜୟ ଦ୍ୱାର ରୁଦ୍ଧ ହୁଏ । ଭିତର ଚନ୍ଦନ ଅର୍ଗଳିଠାରେ ପୂଜାପଣ୍ଡା ପଞ୍ଚ ବର୍ଣ୍ଣ ଗୁରୁଜରେ ସର୍ବତ ଭଦ୍ରମଣ୍ଡଳ କାଟନ୍ତି । ତିନିବାଡ଼ରେ ବନ୍ଦାପନା ହୁଏ । ବରୁଣ ପୂଜା ହୁଏ । ପତି ଓ ମୁଦିରସ୍ତ ଆଚାର୍ଯ୍ୟ ବରଣ ହୋଇ ଦକ୍ଷିଣ ଘରେ ଥିବା ବାମନଙ୍କୁ ଭୋଗ ବନ୍ଦାପନା କରନ୍ତି । ଦକ୍ଷିଣ ଗୃହରୁ ବାମନ ପ୍ରତିମା ମହାଜନ ସେବକଙ୍କ ହସ୍ତରେ ବିଜେ ହୋଇ ରତ୍ନ ସିଂହାସନରେ ଉପସ୍ଥାପିତ ହୁଅନ୍ତି । ବାମନ ଜନ୍ମୋତ୍ସବ ପାଳନ ପାଇଁ ଶ୍ରୀଜଗନ୍ନାଥଙ୍କ ଅନୁମତି ପ୍ରାର୍ଥନା କରାଯାଏ ଓ ବାମନ ଶ୍ରୀଜଗନ୍ନାଥଙ୍କ ହସ୍ତରୁ ଆଜ୍ଞାମାଳ ପାଇବାପରେ ମହାଜନଙ୍କ ହସ୍ତରେ ବିଜେ ହୁଅନ୍ତି ।

"ଆଜ୍ଞାପୟ ଜଗନ୍ନାଥ ବାମନୋହତ୍ତି ହେତବେ ।
ନାନାବତାର ଲୀଳାନାଂ ପ୍ରବର୍ତ୍ତକ ଜଗଦ୍‌ଗୁରେ ।"
ଇତ୍ୟୁକ୍ତ୍ୱା ପୂଜକ ସ୍ତାବତ୍ ବଦ୍ଧାଞ୍ଜଳି ପୁରଃ ସରଂ ।
ଦରେଦିକ୍ଷାଙ୍ଗିତୋ ମାଲାଂ ପ୍ରତ୍ୟେଚୌପରି ସଂନ୍ୟସେତ୍ ।"

(ନୀଳାଦ୍ରି ମହୋଦୟ, ୨୬ ଅଧ୍ୟାୟ)

ବାମନଙ୍କ ପ୍ରତିମା ବିଜେ ହେବାପରେ ପଞ୍ଚାମୃତ ମହାସ୍ନାନ ଓ ଶୀତଳ ଭୋଗ ସମର୍ପଣ ହୁଏ । ଗର୍ଭୋଦୟ କ୍ରିୟା ପାଇଁ ପଞ୍ଚୋପସ୍କର ପୂଜା ହୁଏ । ଖଣ୍ଡୁଆ ଘୋଡ଼ାଇ ଶାସ୍ତ୍ରୀୟ ପ୍ରମାଣ ଅନୁଯାୟୀ ବାମନଙ୍କ ଜନ୍ମବିଧି ପାଳନ କରାଯାଏ । ମହାଜନ ବାମନଙ୍କୁ ହସ୍ତରେ ବିଜେ କରାଇ ଜୟ ବିଜୟ ଦ୍ୱାର ତଳେ ଦଣ୍ଡାୟମାନ ହୁଅନ୍ତି । ମାର୍କଣ୍ଡେଶ୍ୱର ସାହୀର ଜନୈକ ବ୍ୟକ୍ତି (ଶୁଦ୍ର ସେବକ) ବାମନ ପତି ସହ ବଳି, ବାମନ ଓ ଶୁକ୍ରାଚାର୍ଯ୍ୟ ବେଶରେ ସୁସଜ୍ଜିତ ବାଳକଗଣଙ୍କୁ ଶ୍ରୀମନ୍ଦିରକୁ ଆଣନ୍ତି । ଶ୍ରୀବାମନ ବଟଦ୍ୱାର ଦେଇ ମହାଜନଙ୍କ ହସ୍ତରେ ମାଜଣା ମଣ୍ଡପରେ ପଡ଼ିଥିବା ଖଟ ଉପରେ ବିଜେ ହୁଅନ୍ତି । ବ୍ରହ୍ମଚାରୀ ବାମନଙ୍କୁ ଦଧିଭିକ୍ଷା ଦେବାପାଇଁ, ଭଣ୍ଡାର ଗୃହରୁ ଶ୍ରୀଦୁର୍ଗାଦେବୀଙ୍କୁ ରତ୍ନ ସିଂହାସନରେ ବିଜେ କରାଯାଏ । ଶ୍ରୀଜଗନ୍ନାଥଙ୍କ ବାମଭୁଜରୁ ଆଜ୍ଞାମାଳ ପାଇବା ପରେ ଦୁର୍ଗାଦେବୀ ମାଜଣା ମଣ୍ଡପସ୍ଥିତ ଖଟ ଉପରେ ବିଜେ ହୁଅନ୍ତି ।

"ଦୁର୍ଗେ ଦେବି ଜଗଦ୍ଧାତ୍ରି ସର୍ବକାମ ପ୍ରଦେ୍ୟନଘେ ।
ଦଧିଭିକ୍ଷାଂ ଚ ନେ ଦେହି ଗିରିଜେ ବ୍ରହ୍ମଚାରିଣି ॥
ଶ୍ରୁତ୍ୱେମାଂ ପ୍ରାର୍ଥନାଂ ଦୁର୍ଗାସ୍ୟାତ୍ମ ପୂର୍ଣ୍ଣା ସୁରେଶ୍ୱରୀ ।
ବାମନାୟ ଦଦୌଭିକ୍ଷାଂ ରକ୍ଷୋରକ୍ଷୋ ବିଦାରିଣୀ ॥"

(ନୀଳାଦ୍ରି ମହୋଦୟ – ୨୬ ଅଧ୍ୟାୟ)

ମାଜଣା ମଣ୍ଡପରେ ପୂଜାପଣ୍ଡା ବସୁଧାରା କରନ୍ତି ଓ ଯଜ୍ଞ ପବିତ୍ରୀ ଦିଅନ୍ତି । ଦୁଗ୍ଧଦେଧ୍ରୀ ମଣୋହି କରି ମୁଦିରସ୍ତ ପ୍ରସାଦ ଲାଗି ଦିଅନ୍ତି । ଦୁଗ୍ଧଦେଧ୍ରୀ ମଣୋହି କରି ମୁଦିରସ୍ତ ପ୍ରସାଦ ଲାଗି

ଭାଦ୍ରବ ଶୁକ୍ଳ ଦ୍ୱାଦଶୀଦିନ ଶ୍ରୀଜଗନ୍ନାଥ ବଳିବାମନ ବେଶ ହୁଅନ୍ତି । ଏତଦ୍ ବ୍ୟତୀତ କାର୍ତ୍ତିକ ଶୁକ୍ଳ ଦ୍ୱାଦଶୀ ଦିନ ଶ୍ରୀଜଗନ୍ନାଥଙ୍କର ବଳିବାମନ ବା ବାଙ୍କ ଚୂଡ଼ ବେଶ ହୁଏ । ଉକ୍ତ ବେଶରେ ଜଗନ୍ନାଥ ବାମନ, ବଳଭଦ୍ର ବଳିରାଜା ଓ ସୁଭଦ୍ରା ବଳିପତ୍ନୀ ବିନ୍ଧ୍ୟାବଳି ରୂପେ ପୂଜା ପାଇଥାନ୍ତି । ଶ୍ରୀଜଗନ୍ନାଥ ଶ୍ରୀବାମନ ସଦୃଶ ଦକ୍ଷିଣ ହସ୍ତରେ କମଣ୍ଡଳୁ ଓ ବାମହସ୍ତରେ ଛତ୍ର ଧାରଣ କରି ଅପୂର୍ବ ଶୋଭା ପ୍ରଦର୍ଶନ କରିଛନ୍ତି ।

କବି ଶ୍ରୀ ପ୍ରହରାଜ ସତ୍ୟ ନାରାୟଣ ନନ୍ଦଙ୍କ ନିମ୍ନୋକ୍ତ ପଦାବଳୀ ପ୍ରଣିଧାନ ଯୋଗ୍ୟ ।

"ବଳି କବଳିତ କଲେ ସ୍ୱର୍ଗ ରାଜ୍ୟ, ଇନ୍ଦ୍ରଙ୍କ ନଅର ।
ଅଦିତି ଡ଼ାକନ୍ତି ତୁହ, ଭାଦ୍ରବରେ ବାମନାବତାର ।।
ଅଶ୍ୱମେଧ ବେଳେ ଆସେ ଆଲୋକ ଉହ୍ନେଇ ।
ଆକାଶର ସୀମା ଡେଇଁ ସୂର୍ଯ୍ୟ ଅବା ଆସିଛି ଓହ୍ଲାଇ ।।
ଖର୍ବ ରୂପ ସ୍ୱର୍ଣ୍ଣକାନ୍ତି ଝଲେ ବାରବାର ।
ଛତ୍ର ତା ସୁନ୍ଦର ହାତେ କମଣ୍ଡଳୁ ଭାର ।।
ପଦ୍ମରେ ମୀଳିତ କରି ପଦ୍ମ ପାଦ ପ୍ରଶ୍ନ କରେ ବଳି ।
"ମାତଙ୍ଗ ନା ତୁରଙ୍ଗ, ପ୍ରାସାଦ, କିଶୋରୀ ।।
କି ଦେଇ ତୋଷିବି ଚିତ୍ତ ଆହେ ବ୍ରହ୍ମଚାରୀ ।"
"ମାତ୍ର ତିନିପାଦ ଭୂମି" କମଣ୍ଡଳୁ ଜଳେ ଅଙ୍ଗୀକାର ।।
ଗୁରୁ ଅଭିଶାପେ ବଳି ପ୍ରଭୁ ପାତାଳର ।
-'ଦଶାବତାର' (ଉତ୍କଳ ପ୍ରସଙ୍ଗ, ଜୁଲାଇ ୧୯୯୧)

## ଶ୍ରୀଜଗନ୍ନାଥ : ଶ୍ରୀରାମଚନ୍ଦ୍ର :

ପ୍ରବାଦ ଅଛି, ଭଗବାନ ମର୍ଯ୍ୟାଦା ପୁରୁଷୋତ୍ତମ ଭଗବାନ ଶ୍ରୀରାମଚନ୍ଦ୍ରଙ୍କ ପ୍ରିୟ ଭକ୍ତ ସନ୍ଥ ତୁଳସୀ ଭାରତର ସମସ୍ତ ବୈଷ୍ଣବ ତୀର୍ଥ ଓ ଧାମ ପର୍ଯ୍ୟଟନ କରି ଶ୍ରୀକ୍ଷେତ୍ରରେ ପଦାର୍ପଣ କଲେ । କିନ୍ତୁ ଏଠାରେ ଭଗବାନ ଅବାଙ୍ମାନସ ଗୋଚର ଅପ୍ରାକୃତ ଶ୍ରୀରୂପ ସନ୍ଦର୍ଶନରେ ପରାଙ୍ମୁଖ ହୋଇ ପ୍ରଣିପାତ ନକରି ପ୍ରତ୍ୟାବର୍ତ୍ତନ କଲେ । ଶ୍ରୀକ୍ଷେତ୍ରର ଅନତି ଦୂରରେ ଅବସ୍ଥିତ ତୁଳସୀ ଚଉରା ନାମକ ଗ୍ରାମର ପଥପ୍ରାନ୍ତରେ ବିଶ୍ରାମ ନେବାକୁ ଯାଇ ନିଦ୍ରାଗତ ହେଲେ । ସନ୍ଥ ମହାତ୍ମାଙ୍କ ଅନନ୍ୟ ଭକ୍ତିରେ ପ୍ରୀତ ହୋଇ ପରମ କାରୁଣିକ ରାଘବେନ୍ଦ୍ର ସ୍ୱପ୍ନରେ ଅବତୀର୍ଣ୍ଣ ହୋଇ କହିଲେ "ତୁମେ ଶ୍ରୀରାମ ଚରିତ ମାନସ'ର ବାଳକାଣ୍ଡରେ ଯେଉଁ ନିର୍ଗୁଣ ବ୍ରହ୍ମ କଥା ଅବତାରଣା କରିଛ, ସେ କିଏ ? ମୋର ତ' ହସ୍ତ ପଦାଦି ଅବୟବ ଅଛି ! ସେ ହେଉଛନ୍ତି ଅପ୍ରାକୃତ ଶରୀରଧାରୀ ନୀଳାଦ୍ରି କନ୍ଦରାନନ୍ଦ ପ୍ରଭୃତ ପୁରୁଷୋତ୍ତମ । ଆମେ ତାଙ୍କର ଅଂଶାବତାର ମାତ୍ର ।

ତା'ପରଦିନ ଏକାଦଶୀ, ଗୁରୁବାର । ସନ୍ଥ ତୁଳସୀ ଶ୍ରୀକ୍ଷେତ୍ର ପ୍ରତ୍ୟାବର୍ତ୍ତନ କରି ରନ୍ନ ସିଂହାସନରେ ଚତୁର୍ଦ୍ଧାମୂର୍ତ୍ତି ଶ୍ରୀରାମ, ଲକ୍ଷ୍ମଣ, ସୀତା ଓ ହନୁମାନଙ୍କୁ ଦର୍ଶନ କରି ଆତ୍ମ ବିଭୋର ହେଲେ ।

"ଦକ୍ଷିଣେ ଲକ୍ଷ୍ମଣଂ ଯସ୍ୟ ବାମେଚ ଜନକାତ୍ମଜା । ପୁରତୋମାରୁତିର୍ଯସ୍ୟ ତଂ ବନ୍ଦେ ରଘୁନନ୍ଦନମ୍" ।

ସନ୍ଥ ମହାତ୍ମାଙ୍କ ମୁଖାର ବିନ୍ଦରୁ ନିସୃତ ହେଲା ଅମୀୟ ପଦାବଳୀ । "ଜୟ ଶ୍ରୀଜଗନ୍ନାଥ , ଜଗଦେବା । ଶିବ ବିରଞ୍ଚି ନାରଦ କରେ ସେବା ।" ତଦବଧି ଗୁରୁବାର ଦିନ ଏକାଦଶୀ ସଂଯୋଗ ହେଲେ ଶ୍ରୀଜଗନ୍ନାଥ ଶ୍ରୀରାମ ରୂପେ ରନ୍ନ ସିଂହାସନରେ ପୂଜା ପାଇଥାଆନ୍ତି ।

ଅଦ୍ୟାବଧି ତୁଳସୀ ଦାସ ସମ୍ପ୍ରଦାୟୀ ବଡ଼ ଛତା ମଠ ସନ୍ଥ ମହାତ୍ମାଗଣ " ଯୋହି ରାମ ସୋହି ଜଗଦୀଶ" ଭାବରେ ଅନୁପ୍ରାଣିତ ହୋଇ ଶ୍ରୀଜଗନ୍ନାଥଙ୍କ ପ୍ରତ୍ୟହ "ରାଜ ପହୁଡ଼ ପୂର୍ବରୁ ଜୟବିଜୟ ଦ୍ୱାର ଦେଶରେ ଶ୍ରୀଜଗନ୍ନାଥଙ୍କୁ ଭଗବାନ ରାଘବେନ୍ଦ୍ର ରୂପରେ ସ୍ତବପାଠ କରିଥାଆନ୍ତି ।

"ଭାନ୍ତି ଭାନ୍ତି ପ୍ରଭୁ ବେଦ ପସୁରି ।
ପହୁଡ଼େ ହେ ପ୍ରଭୁ ଅବଧ ବିହାରୀ ।।
ଜୟ ଶ୍ରୀଜଗନ୍ନାଥ ଜଗଦେବା ।
ଶିବ ବିରଞ୍ଚି ନାରଦ କରେ ସେବା ।।"

ନୀଳାଦ୍ରିନାଥଙ୍କ ପହୁଡ଼ ପରେ, ଶ୍ରୀମନ୍ଦିରରୁ ନିଷ୍କ୍ରାନ୍ତ ହେବା ସମୟରେ, ସନ୍ଥ ମହାତ୍ମାଗଣ ଭକ୍ତିପୂତ କଣ୍ଠରେ ଅପୂର୍ବ ବାଦ୍ୟ ସହ ଗାଇଥାଆନ୍ତି "ଚଲି ସଖୀ ଶୋଏ ଅବଧ କିଶୋର । ଜନକ ଲଲିମା ଚରଣ ପଲଙ୍କେ ସେବାକରେ ନିରନ୍ତର । "ବଡ଼ ଛତା ମଠ ବ୍ୟତୀତ ସାନଛତା, ଛାଉଣୀ, ପାପୁଡ଼ିଆ, ବଳଗଣ୍ଡି ଛତା, ରେବାସ ଓ ସୁନ୍ଦରଦାସ ମଠର ସନ୍ଥ ମହାତ୍ମାଗଣ ଶ୍ରୀଜଗନ୍ନାଥଙ୍କୁ ଇଷ୍ଟ ଦେବ ଭଗବାନ ଶ୍ରୀରାମଚନ୍ଦ୍ର ରୂପେ ଗ୍ରହଣ କରିଥାଆନ୍ତି । ପ୍ରକାଶ ଥାଉଯେ, ବଡ଼ ଛତା ମଠରେ ଭଗବାନ ରାଘବେନ୍ଦ୍ରଙ୍କ ମୂର୍ତ୍ତି ପୂଜା ହେବା ସମୟରେ ସାନଛତାରେ ଶ୍ରୀଜଗନ୍ନାଥଙ୍କ ମୂର୍ତ୍ତି ପୂଜା ପାଇଥାଏ । ଏଥିରୁ ସାନଛତା ମଠ ସନ୍ଥ ମହାତ୍ମାଙ୍କର ଶ୍ରୀଜଗନ୍ନାଥଙ୍କୁ ସମ୍ପୂର୍ଣ୍ଣ ଭାବରେ ନିଜର ଇଷ୍ଟଦେବ ଶ୍ରୀରାମ ରୂପେ ଅଙ୍ଗୀକାର କରିବା ସୂଚିତ ହୁଏ ।

ବାଲ୍ମୀକି ରାମାୟଣର ଉତ୍ତରାକାଣ୍ଡରେ ଉଲ୍ଲେଖ ଅଛି, ଭଗବାନ ଅଯୋଧ୍ୟାପତି ଶ୍ରୀରାମଚନ୍ଦ୍ର ମର୍ତ୍ତ୍ୟଧାମ ପରିତ୍ୟାଗ କରି ବୈକୁଣ୍ଠ ପ୍ରତ୍ୟାବର୍ତ୍ତନ ସମୟରେ, ଲଙ୍କେଶ୍ୱର ବିଭୀଷଣ ସବିନୟ ପ୍ରାର୍ଥନା କରିଥିଲେ "ହେ ରାଘେବେନ୍ଦ୍ର ! ଆପଣଙ୍କ ଅନୁପସ୍ଥିତିରେ ଆମେ କାହାକୁ ଆରାଧନା କରିବୁ ?" କୃପାବତାର ଦଶରଥାତ୍ମଜ ଶ୍ରୀରାମଚନ୍ଦ୍ର ଉପଦେଶ ଛଳରେ କହିଥିଲେ "ହେ ଭକ୍ତ ଶ୍ରେଷ୍ଠ ଲଙ୍କେଶ୍ୱର ! ଇକ୍ଷ୍ୱାକୁ ବଂଶର କୁଳଦେବତା ଶ୍ରୀଜଗନ୍ନାଥଙ୍କୁ ଆରାଧନା କର ।" "ଆରାଧୟ ଜଗନ୍ନାଥଂ ଇକ୍ଷ୍ୱାକୁ କୁଳଦୈବତମ୍ ।" ଅଦ୍ୟାବଧି ଶ୍ରୀମନ୍ଦିରରେ ପ୍ରଚଳିତ 'ବିଭୀଷଣ ବନ୍ଦାପନା', ପ୍ରତ୍ୟହ ଧୂପରେ ଅଷ୍ଟ ସାତ୍ତ୍ୱିକ ବଳିରେ ବିଭୀଷଣଙ୍କୁ ଦିଆଯାଉଥିବା ବଳି ଓ ପାଟ ଯୋଷୀ ମହାପାତ୍ରଙ୍କ ଗୃହରେ ପୂଜା ବିଭୀଷଣ ପ୍ରଦତ୍ତ କଙ୍କଣ–କିମ୍ବଦନ୍ତୀ ଶ୍ରୀଜଗନ୍ନାଥଙ୍କଠାରୁ ଶ୍ରୀରାମଚନ୍ଦ୍ରଙ୍କ ସହ ପରମ ରାମଭକ୍ତ ବିଭୀଷଣଙ୍କ ସମ୍ପର୍କ ସୂଚିତ କରିଥାଏ । ବାମଦେବ ସଂହିତାରେ ଉଲ୍ଲେଖ ଅଛି, ଏଠାରେ ଭଗବତୀ ପାର୍ବତୀଙ୍କ ପ୍ରଶ୍ନୋତ୍ତର ଦେବାକୁ ଯାଇ ଶଙ୍କର ଭଗବାନ କହିଛନ୍ତି– " ହେ ପାର୍ବତୀ ! କେତେ ରାମ ଭୂଲିଗଲେଣି କିନ୍ତୁ ଶ୍ରୀଜଗନ୍ନାଥ ନୀଳାଚଳ ଧାମରେ ବିଦ୍ୟମାନ ।" ତେଣୁ ଅବତାର ପୁରୁଷଗଣ ତାଙ୍କର ଲୀଳା ପ୍ରଦର୍ଶନ ପରେ ତ୍ରୈଲୋକ୍ୟ ଚିନ୍ତାମଣି ଅବତାରୀ ଶ୍ରୀଜଗନ୍ନାଥଙ୍କ ନିକଟକୁ ପ୍ରତ୍ୟାବର୍ତ୍ତନ କରନ୍ତି ।

ପ୍ରତିବର୍ଷ ଚୈତ୍ର ଶୁକ୍ଳ ନବମୀ ଦିନ ଶ୍ରୀମନ୍ଦିରରେ ଶ୍ରୀରାମ ଜନ୍ମୋତ୍ସବ ପାଳିତ ହୁଏ । ପୂର୍ବ ଦିନ ଅର୍ଥାତ୍ ଅଷ୍ଟମୀ ଦିନ ଶ୍ରୀଜଗନ୍ନାଥଙ୍କୁ (ଗର୍ଭଧାରିଣୀ କୌଶଲ୍ୟା ମାତାଙ୍କ ପ୍ରୀତାର୍ଥେ) ଜେଉଡ଼ି ଭୋଗ ଓ ଗର୍ଭୋଦକ ବନ୍ଦାପନା କରାଯାଏ । ଶ୍ରୀଜଗନ୍ନାଥଙ୍କ ମଧ୍ୟାହ୍ନ ଧୂପ ସରିବା ପରେ ଜୟ ବିଜୟ ଦ୍ୱାର ବନ୍ଦ ହୁଏ । ସୁଡୁ ସୁଆର ଭିତର କାଠ ନିକଟରେ (ଭଣ୍ଡାର ଗୃହ ସମ୍ମୁଖରେ) ଚଟାଣ ପୋଛାମାରି ପରିଷ୍କାର କରନ୍ତି । ପୂଜାପଣ୍ଡା ପଞ୍ଚବର୍ଣ୍ଣ ଗୁଣ୍ଡରେ ଚଟାଣରେ ଜନ୍ମମଣ୍ଡଳ (ରାଘବ ମଣ୍ଡଳ) କାଟନ୍ତି । ଦକ୍ଷିଣ ଗୃହରେ ଶ୍ରୀରାମଚନ୍ଦ୍ରଙ୍କୁ ଭୋଗ ବନ୍ଦାପନା ହୁଏ । ଶ୍ରୀଜଗନ୍ନାଥଙ୍କ ମଧ୍ୟାହ୍ନ ଧୂପ ସରିବା ପରେ ମହାଜନ ସେବକଙ୍କ ହସ୍ତରେ ଶ୍ରୀରାମଙ୍କ ବିଗ୍ରହ ଦକ୍ଷିଣ ଗୃହରୁ ରତ୍ନ ସିଂହାସନକୁ ବିଜେ ହୁଅନ୍ତି । ଶ୍ରୀରାମ ଜନ୍ମୋତ୍ସବ ପାଳନ କରିବା ନିମିତ୍ତ ଶ୍ରୀଜଗନ୍ନାଥଙ୍କୁ ପ୍ରାର୍ଥନା କରାଯାଏ । ଶ୍ରୀରାମ ଶ୍ରୀଜଗନ୍ନାଥଙ୍କ ହସ୍ତରୁ ଆଜ୍ଞାମାଳ ପାଇବାପରେ ମହାଜନଙ୍କ ହସ୍ତରେ ଆସି ପୂର୍ବୋକ୍ତ ଜନ୍ମ ମଣ୍ଡଳରେ ବିଜେ ହୁଅନ୍ତି ।

"ଆଗତସ୍ୱ ମହାବାହୋ ରାମଜନ୍ମୋତ୍ସବାସ୍ଥ ବୈ ।
ରାମ ପ୍ରତିକୃତିଂ ତାବଦ୍ରାବଣାଦି ବିନାଶିନୀଂ ॥
ଗଦି ବିଧାୟ ଦେବେଶଂ ତଦଗ୍ରୀଦର୍ଶକଃ ସ୍ୱୟଂ ।
ମାଲ୍ୟମାନୀୟ ତଦଦ୍ୟାତ୍ ପ୍ରତ୍ୟଗ୍ରାଂ ପ୍ରତିରୂପତେ" ॥

(ନୀଳାଦ୍ରି ମହୋଦୟ, ୩୫ ଅଧ୍ୟାୟ)

ମହାଜନ ସେବକଙ୍କ ମଧ୍ୟରେ ଜଣେ ଦଶରଥ ଓ ଅନ୍ୟଜଣେ କୌଶଲ୍ୟାଙ୍କ ଅଭିନୟ କରିଥାଆନ୍ତି । ଖଣ୍ଡୁଆ ଉପରାଣ ଦେଇ (ଯୋଡ଼ାଇ ହୋଇ) ଜନ୍ମବିଧି ପାଳନ କରାଯାଏ । କର୍ପୂର ଆଳତି ବନ୍ଦାପନା ହେବାପରେ ମହାସୁଆର ଗଣ୍ଡୁପ ମସଲା ଓ କ୍ଷୀର ମଣୋହି କରନ୍ତି ।

"ସୁବର୍ଣ୍ଣ ଘଟିତା ରାମ ପ୍ରତିମାଂ ସୁମନୋରମାଂ ।
ପଞ୍ଚାମୃତେନ ସଂସ୍ନାପ୍ୟ କୌଶଲ୍ୟା ଉଦର ସଂସ୍ଥିତଂ ॥
ଅର୍ଚ୍ଚୟିତ୍ୱା ତୁ ତଂ ରାମଂ ଯଜେତ୍ ଗନ୍ଧଦିନା ନୃପ ।"

(ନୀଳାଦ୍ରି ମହୋଦୟ, ୩୫ ଅଧ୍ୟାୟ)

ଏହାପରେ ପୂଜାପଣ୍ଡା ଜନ୍ମବିଧି କର୍ମ ସମ୍ପାଦନ କରି ପଣତା ଲାଗି ଓ ମଣୋହି (ଶୀତଳ ଭୋଗ) କରନ୍ତି । ମହାସୁଆର ଜୟ ବିଜୟ ଦ୍ୱାର ନିକଟରେ ଚରୁ ମଣୋହି କରନ୍ତି । ଉତ୍ସବାନ୍ତେ ପାହୁଡ଼ା ବିଜେ ହୋଇ ଦକ୍ଷିଣ ଗୃହକୁ ପ୍ରତ୍ୟାବର୍ତ୍ତନ କରନ୍ତି ।

ଶ୍ରୀମନ୍ଦିରରେ ଚୈତ୍ର ଶୁକ୍ଳ ନବମୀଦିନ ଶ୍ରୀରାମ ଜନ୍ମୋତ୍ସବ ଦଶମୀଦିନ ଯଜ୍ଞରକ୍ଷା, ଏକାଦଶୀଦିନ ସୀତା ବିବାହ, ଦ୍ୱାଦଶୀଦିନ ବନବାସ, ଚତୁର୍ଦ୍ଦଶୀ ଦିନ ମାୟାମୃଗ, ଚୈତ୍ର ପୂର୍ଣ୍ଣିମାରେ ଲଙ୍କାପୋଡ଼ି, ବୈଶାଖ କୃଷ୍ଣ ପ୍ରତିପଦାରେ ସେତୁବନ୍ଧ ନିର୍ମାଣ, ଦ୍ୱିତୀୟାରେ ରାବଣ ବଧ, ବୈଶାଖ ମାସ ପୁଷ୍ୟା କର୍କଟ ସଂଯୁକ୍ତ ଦିବସରେ ଶ୍ରୀରାମଙ୍କ ଅଭିଷେକୋତ୍ସବ ଅନୁଷ୍ଠିତ । ଏତଦ୍ ବ୍ୟତୀତ ପୌଷ ପୂର୍ଣ୍ଣିମୀ ଦିନ ଶ୍ରୀ ଜଗନ୍ନାଥଙ୍କୁ ଶ୍ରୀରାମ ରୂପେ ପୁଷ୍ୟାଭିଷେକ ଉତ୍ସବ ଅନୁଷ୍ଠିତ ହୁଏ । ଚୈତ୍ର ଶୁକ୍ଳ ନବମୀଠାରୁ ବୈଶାଖ କୃଷ୍ଣ ଦ୍ୱିତୀୟା ପର୍ଯ୍ୟନ୍ତ ଶ୍ରୀରାମଙ୍କ ବିଭିନ୍ନ ଉତ୍ସବ ଶ୍ରୀମନ୍ଦିରରେ ଅନୁଷ୍ଠିତ ହେବା ସମୟରେ ବାଲିସାହୀ (ରାବଣ ପକ୍ଷ) ଓ ହରଚଣ୍ଡୀ ସାହୀ (ରାମ ପକ୍ଷ)ରେ ବିବିଧ ଚିତ୍ତାକର୍ଷକ ସମର କୌଶଳ (ସାହୀ ଯାତ) ପ୍ରଦର୍ଶିତ ହୁଏ । ଚୈତ୍ର ଶୁକ୍ଳ ଏକାଦଶୀ ଦିନ ହରଚଣ୍ଡୀ ସାହୀରୁ ପରଶୁରାମ ଲୀଳା, ଦ୍ୱାଦଶୀ ଦିନ ମାର୍କଣ୍ଡେଶ୍ୱର ସାହୀରୁ ବନବାସ ଲୀଳା, ଚତୁର୍ଦ୍ଦଶୀ ଦିନ କୁଣ୍ଡେଇବେଣ୍ଟ ସାହୀରୁ ମାୟାମୃଗ ଲୀଳା, ଚୈତ୍ର ପୂର୍ଣ୍ଣମୀ ଦିନ ଦୋଳମଣ୍ଡପ ସାହୀର ଲଙ୍କାପୋଡ଼ି ଲୀଳା ଓ ବୈଶାଖ କୃଷ୍ଣ ଦ୍ୱିତୀୟାରେ ବାଲିସାହୀରେ ରାବଣ ବଧ ଅନୁଷ୍ଠିତ ହୋଇଥାଏ ।

ରଘୁନାଥ ବେଶରେ ଶ୍ରୀରାମଚନ୍ଦ୍ର ପୁରୁଷୋତ୍ତମ ତତ୍ତ୍ୱ, ଲକ୍ଷ୍ମଣ ବଳଦେବ ବା ପୃଥିବୀ ତତ୍ତ୍ୱ, ସୀତା ସୁଭଦ୍ରା ବା ପ୍ରକୃତି ତତ୍ତ୍ୱ ଓ ହନୁମାନ ସୁଦର୍ଶନ ବା ତେଜତତ୍ତ୍ୱରେ ଉପାସିତ ହୋଇଥାଆନ୍ତି । ଶ୍ରୀରାମ ସର୍ବସ୍ୱ ବୈଷ୍ଣବଗଣ ଶ୍ରୀଜଗନ୍ନାଥଙ୍କୁ ନିଜର ଇଷ୍ଟଦେବ ରୂପେ ବନ୍ଦନା କରିଥାଆନ୍ତି ।

"ଜଗନ୍ନାଥ ମହାବାହୋ ପ୍ରତ୍ୟକ୍ଷ ରଘୁନନ୍ଦନଂ ।
ସୌମିତ୍ରୀ ବଳଦେବଶ୍ଚ ଭଦ୍ରା ମୈଥିଳୀ ମେବଚ ॥
ପୁରତୋ ତେଜ ରୂପଶ୍ଚାୟୁଧ ଭୀମ ମହାବଳଂ ।
ବାତଜାତ ସହ ବନ୍ଦାଂ ରେଫାରୂଢ଼ ଚତୁର୍ଭୁଜମ୍" ॥

(ନୀଳାଦ୍ରି ଅର୍ଚ୍ଚନ ଚନ୍ଦ୍ରିକା, ରାମ ନବମୀ କଣ୍ଡ)

"ଯୋହି ରାମ ସୋହି ଜଗଦୀଶା ।
ମୂରତି କେ ଅନ୍ତ ନ ପାବତ ଶେଷା ॥
ଶେଷ ଭଯେ ଲଛିମନ ଅନୁସ୍ୱରୀ ।
ଭଦ୍ରା ସୋ ସିୟ ରାଜକୁମାରୀ ॥"

(ସନ୍ଥ ତୁଳସୀ)

"ଶ୍ରୀରାମ ଜାଣିଲେ ମୁଁ ଯେ ଅଟେ ଜଗନ୍ନାଥ ।
ସୀତା ସୁଭଦ୍ରା ଯେ ବେନି ଅଟନ୍ତି ସଂଯାତ ॥
ଲକ୍ଷ୍ମଣ ଯେ ବଳରାମ ଏକ ସଙ୍ଗ ହୋନ୍ତି ।
ଏସନେକ ମତେ ତହୁଁ ଦେବ ଚଳିଯାନ୍ତି ॥"

–ଦାଣ୍ଡି ରାମାୟଣ ବା ଜଗମୋହନ ରାମାୟଣ
(ଜ୍ଞାନସିଦ୍ଧ ବଳରାମ ଦାସ)

"ଶ୍ରୀରଘୁନାଥ ବୋଲନ୍ତି ଜଗନ୍ନାଥ ମୁହିଁ ।
ସୀତା ସୁଭଦ୍ରା, ଲକ୍ଷ୍ମଣ ବଳଭଦ୍ର ହୋଇ ॥"

–ରାମଲୀଳା (ବୈଷ୍ଣବ ସଦାଶିବ)

## ଶ୍ରୀଜଗନ୍ନାଥ : ଶ୍ରୀକୃଷ୍ଣ :

ଏକଦା ରାୟ ରାମାନନ୍ଦ ଶିଷ୍ୟଗଣଙ୍କୁ ଜଗନ୍ନାଥ ତତ୍ତ୍ୱ ବୁଝାଇବାକୁ ଯାଇ କହିଲେ– ସଚ୍ଚିତ୍‌ର ବିଗ୍ରହ ଶ୍ରୀକୃଷ୍ଣ ଓ ଆନନ୍ଦର ବିଗ୍ରହ ଶ୍ରୀରାଧା । "ଚିନ୍ମୟ ଚିଦ୍‌ଘନ ରସମୟ କୃଷ୍ଣ, ଆନନ୍ଦ ରୂପିଣୀ ରାଧା ।" –(ଭକ୍ତକବି ଗୋପାଳକୃଷ୍ଣ) ସେହିପରି ବଳଭଦ୍ର ସତ୍, ଜଗନ୍ନାଥ ଚିତ୍ ଓ ସୁଭଦ୍ରା ହ୍ଲାଦିନୀ ଶକ୍ତି ବୃଷଭାନୁ କିଶୋରୀ ଶ୍ରୀରାଧା ।

"ଜ୍ୟେଷ୍ଠ ବଳରାମ ଯେ କନିଷ୍ଠ ଜଗନ୍ନାଥ ।
ଯେଉଁ ରାଧା ସୁଭଦ୍ରାଟି ନାମ ତା'ର ଖ୍ୟାତ ॥

କିଶୋର କିଶୋରୀ ରୂପ ସେହି ଅଙ୍ଗେ ଅଛି ।
କପଟରେ ଚତୁର୍ଦ୍ଧା ମୂରତି ସେ ହୋଇଛି ।।"

(ରାଧା ରସାମୃତ ସିନ୍ଧୁ–ଶିବ ଦାସ)

ପୁନଶ୍ଚ ଜୀବ ଗୋସ୍ୱାମୀ ପାଦଙ୍କ ମତରେ ରୋହିଣୀ ଗର୍ଭ ସମ୍ଭୂତ ବଳରାମ ବା ବଳଭଦ୍ର ଚନ୍ଦ୍ରାବଳୀ ନାମ୍ନୀ ଗୋପୀକା, ଜଗନ୍ନାଥ ସାକ୍ଷାତ୍ ଦେବକୀ ନନ୍ଦନ ଶ୍ରୀକୃଷ୍ଣ ଓ ଶ୍ରୀମନ୍ଦିର ରତ୍ନ ସିଂହାସନ ରାଧାମାଧବଙ୍କ ନିତ୍ୟ ରାସସ୍ଥଳୀ ।

"ନୀଳାଚଳେ ତ୍ରିଲୋକେଷୁ ଧାମ ବୈକୁଣ୍ଠ ମେବତ୍ ।
ରାଧା ଭଦ୍ରା ସ୍ୱରୂପାଚ ନିତ୍ୟଂ ତ୍ୟଜତି କ୍ଷଣମ୍ ।।
ରାମଶ୍ଚନ୍ଦ୍ରାବଳୀ ଗୋପୀ ତଦ୍ଦମେତତ୍ ସୁଦର୍ଶନଂ ।
ନିତ୍ୟଂ ଲୀଳାମମାପାଣ୍ଡି ନ ନାଶୋଽସ୍ୟ କଦାଚନ ।।"

(ସୁଧାଚନ୍ଦ୍ରମ–ଜୀବ ଗୋସ୍ୱାମୀ)

ମହାପ୍ରଭୁ ଗୌରସୁନ୍ଦରଙ୍କ ମତରେ ଶ୍ରୀଜଗନ୍ନାଥ ଶ୍ରୀମତୀ ରାଧା ଓ ବ୍ରଜେନ୍ଦ୍ର ନନ୍ଦନ ଶ୍ରୀକୃଷ୍ଣଙ୍କ ମିଳିତ ତନୁ । ଜଗତ ରୂପୀ ଶ୍ରୀରାଧା ବା ପ୍ରକୃତି ଓ ନାଥ ରୂପୀ ଶ୍ରୀକୃଷ୍ଣ ବା ପୁରୁଷର ଯୁଗଳାସକ ମିଳନରେ ଜଗନ୍ନାଥଙ୍କ ଏତାଦୃଶ ଆନନ୍ଦ ଘନ ବିଗ୍ରହ । ତେଣୁ ଜଗନ୍ନାଥ ହେଉଛନ୍ତି ପ୍ରକୃତି ଓ ପୁରୁଷର ସମନ୍ୱୟ ରୂପ । ଜଗନ୍ନାଥ ଶବ୍ଦ ପୁରୁଷ ବାଚକ ହେଲେ ମଧ୍ୟ ନାରୀ ସୁଲଭ ନଥାମଣି, ନାକଚଣା, ପାଟ ପଡନି, ଝୋବାଗଣ୍ଠି ଓ ଅଳଙ୍କାରଣରେ ଅନିନ୍ଦ୍ୟ ସୁନ୍ଦର ।

ଶ୍ରୀମନ୍ଦିରରେ ଅନୁଷ୍ଠିତ "ବାମନ ଜନ୍ମୋତ୍ସବ" ଓ " ରୁକ୍ମିଣୀ ପରିଣୟୋତ୍ସବ" ଲୀଳାରେ ଶ୍ରୀଜଗନ୍ନାଥଙ୍କ ଦକ୍ଷିଣ ଭୁଜରୁ ଆଜ୍ଞାମାଳ ବାମନ ଓ ଶ୍ରୀକୃଷ୍ଣ ଏବଂ ବାମଭୁଜରୁ ଦୁର୍ଗାଦେବୀ ଓ ରୁକ୍ମିଣୀ ଯଥାକ୍ରମେ ପ୍ରାପ୍ତ ହୋଇଥାଆନ୍ତି । ତେଣୁ ଶ୍ରୀଜଗନ୍ନାଥଙ୍କ ଦକ୍ଷିଣାଙ୍ଗରୁ ପୌରୁଷ ସୂଚିତ ହେବା ସମୟରେ ବାମାଙ୍ଗରୁ ନାରୀତ୍ୱ ସୂଚିତ ହୁଏ ।

ରାଗାନୁଗା ବା ଅଚିନ୍ତ୍ୟ ଭେଦାଭେଦ ମାର୍ଗରେ ବଳଭଦ୍ର ଆଧାର ତତ୍ତ୍ୱ ବା ନିତ୍ୟାନନ୍ଦ ତତ୍ତ୍ୱ, ସୁଭଦ୍ରା ଯୋଗମାୟା ପୌର୍ଣ୍ଣମାସୀ ତତ୍ତ୍ୱ, ସୁଦର୍ଶନ ଜ୍ୟୋତିର୍ତତ୍ତ୍ୱ, ଭୂଦେବୀ ଓ ଶ୍ରୀଦେବୀ ବହିରଙ୍ଗ ତତ୍ତ୍ୱ ଏବଂ ସର୍ବୋପରି ଶ୍ରୀଜଗନ୍ନାଥ ହେଉଛନ୍ତି ଯୁଗଳାସକ ଭାବ, ମହାଭାବ ରସରାଜର ସମନ୍ୱୟ । ସୁବଳୋପନିଷଦ୍‌ରେ ଶ୍ରୀକୃଷ୍ଣ ଅର୍ଦ୍ଧନାରୀଶ୍ୱର ରୂପେ ପରିକଳ୍ପିତ । " ଆତ୍ମାନଂ ଦ୍ୱିଧା କରୋଦର୍ଦ୍ଧେନ ସ୍ତ୍ରୀ ଅର୍ଦ୍ଧେନ ପୁରୁଷଃ ।"

ପ୍ରତିବର୍ଷ ଭାଦ୍ରବ କୃଷ୍ଣ ସପ୍ତମୀଦିନ ଦେବକୀ ମାତାଙ୍କ ପ୍ରୀତ୍ୟର୍ଥେ ଶ୍ରୀଜଗନ୍ନାଥଙ୍କର ବାଡ଼ରେ ଯେଉଁ ଭୋଗ ଓ ଗନ୍ଧୋଦକ ବନ୍ଦାପନା ହୁଏ । ଭାଦ୍ରବ କୃଷ୍ଣାଷ୍ଟମୀ ଦିନ ଶ୍ରୀକୃଷ୍ଣ ଜନ୍ମୋତ୍ସବ ପାଳନ କରାଯାଏ । ଉକ୍ତ ଦିନ ସନ୍ଧ୍ୟା ଧୂପ ବେଶରେ ତ୍ରିମୂର୍ତ୍ତି ଛଟି ଅଳଙ୍କାର ଲାଗି ହୁଅନ୍ତି । ସନ୍ଧ୍ୟାଧୂପ ପରେ ଜୟ ବିଜୟ ଦ୍ୱାର ବନ୍ଦ ହୁଏ । ସୁଦ୍ଧ ସୁଆର ଭିତରେ କାଠ ନିକଟରେ ଅର୍ଥାତ୍ ଭଣ୍ଡାର ଗୃହ ସମ୍ମୁଖରେ ପୋଛମାରି ଚଟାଣ ପରିଷ୍କାର କରନ୍ତି । ପୂଜାପଣ୍ଡା ପଞ୍ଚବର୍ଣ୍ଣ ଗୁଣ୍ଡରେ ସର୍ବତ ଭଦ୍ରମଣ୍ଡଳ ଲେଖନ୍ତି । ପଣ୍ଡା, ପତି ଓ ମୁଦିରସ୍ତ ଜନ୍ମ ଚକଡ଼ାରେ ବସି ସଙ୍କଳ୍ପ ବାକ୍ୟ ପାଠ କରନ୍ତି । କଳସରେ ବରୁଣ ପୂଜା ହୁଏ । ଚିତ୍ରକାର ପ୍ରଦତ୍ତ କୃଷ୍ଣ ଜନ୍ମପଟ ଓ ସ୍ୱର୍ଣ୍ଣକାର ପ୍ରଦତ୍ତ ରୌପ୍ୟ ପଦ୍ମପାଖୁଡ଼ା ମଣ୍ଡଳୋପରି ରଖାଯାଏ । ପାଖୁଡ଼ାରେ ୯ଟି ମୂର୍ତ୍ତି ଲେଖାଥାଏ ଯଥା ଦେବକୀ, ବସୁଦେବ, ନନ୍ଦ, ଯଶୋଦା, ଲକ୍ଷ୍ମୀ, ଉଗ୍ରସେନ, ବଳଭଦ୍ର,ଗର୍ଗଋଷି ଓ ଶ୍ରୀକୃଷ୍ଣ । ଏକ ସୁବର୍ଣ୍ଣ ନିର୍ମିତ କୃଷ୍ଣମୂର୍ତ୍ତି ମଣ୍ଡଳୋପରି ରଖାଯାଏ । ଉକ୍ତ 'ନ' ମୂର୍ତ୍ତିଙ୍କୁ ଫୁଲ, ଚନ୍ଦନ ଓ ପଞ୍ଚୋପଚାରରେ ପୂଜା ଭୋଗ ଲାଗି ହୁଏ । ଦକ୍ଷିଣ ଘରରୁ ମହାଜନ ସେବକଙ୍କ ହସ୍ତରେ ମଦନମୋହନ ରତ୍ନ ସିଂହାସନରେ ବିଜେ ହୁଅନ୍ତି । ଜଗନ୍ନାଥଙ୍କ ଦକ୍ଷିଣ ଭୁଜରୁ ଆଜ୍ଞାମାଳ ପ୍ରାପ୍ତିପରେ ମଦନମୋହନ ଜନ୍ମ ଚକଡ଼ାରେ ଉପବିଷ୍ଟ ହୁଅନ୍ତି । ପୂଜାପଣ୍ଡା ଗନ୍ଧୋଦକ ସ୍ନାନ ସମ୍ପାଦନ କରି ଶୀତଳ ଭୋଗ ଓ ଷୋଡ଼ଶୋପଚାର ମଣୋହି କରନ୍ତି । ଦୁଇଜଣ ମହାଜନ ସେବକ ବସୁଦେବ ଓ ଦେବକୀ ରୂପେ ଶ୍ରୀକୃଷ୍ଣ ଜନ୍ମାଭିନୟ ପରିବେଷଣ କରନ୍ତି । ଦୁଧ, କହୁଣି ଓ ଗାଣ୍ଡୁଷ ମସଲା ପଣ୍ଡା ସମର୍ପଣ କରି ମଣୋହି କରନ୍ତି । କର୍ପୂର ଆଳତି ହୁଏ । ଏହାପରେ ଶ୍ରୀକୃଷ୍ଣଙ୍କ ମଥୁରା କଟକ ଦେଇ ବ୍ରଜାଗମନ ଲୀଳା ପ୍ରଦର୍ଶିତ ହୁଏ । ଭଣ୍ଡାର ମେକାପ ପ୍ରଦତ୍ତ ରୌପ୍ୟ ଥାଳିରେ ଶ୍ରୀକୃଷ୍ଣ ବାସୁଦେବ ମହାଜନ ସେବକଙ୍କ ହସ୍ତରେ ବିଜେ ହୋଇ ଜଗମୋହନ ଦେଇ ଯମୁନା ନଦୀରେ (ସରସ୍ୱତୀ ମନ୍ଦିର ସମ୍ମୁଖସ୍ଥ ପ୍ରାଙ୍ଗଣ) ବିଜେ ହୁଅନ୍ତି । ପୂଜାପଣ୍ଡା ବଂଶରୁ ଜନୈକ ସେବକ ଉଗ୍ରସେନ ବେଶରେ ଶ୍ରୀକୃଷ୍ଣଙ୍କୁ ସାଷ୍ଟାଙ୍ଗ କରି ଦଣ୍ଡପ୍ରମାଣ କରନ୍ତି । ଏହି ସମୟରେ ବେହେରା ଖୁଣ୍ଟିଆ ଶ୍ରୀକୃଷ୍ଣ (ମଦନ ମୋହନ)ଙ୍କ ଶିରୋପରେ ସପ୍ତଫେଣା ବାସୁକି ଛତ୍ର ଖୋଲିଥାନ୍ତି । ମୁଦିରସ୍ତ ପ୍ରସାଦ ଲାଗି ଓ ବନ୍ଦାପନା କରନ୍ତି ।

ଏହାପରେ ମଦନମୋହନ ଘଣ୍ଟ, ଛତା ଓ କାହାଳୀ ସହ ତେଲେଙ୍ଗୀ ମେର୍ଦ୍ଧା ବା ନାଡ଼ିକଟା ମଣ୍ଡପରେ ଥିବା ପଲଙ୍କରେ ବିଜେ ହୁଅନ୍ତି । ଦକ୍ଷିଣ ଘରରୁ ରାମ, କୃଷ୍ଣ ମହାଜନଙ୍କ ହସ୍ତରେ ଆସି ଏଠାରେ ବିଜେ ହୁଅନ୍ତି । ପୂଜାପଣ୍ଡା ବସୁଧାରା ଦେଇ କୁଶରେ ନାଡ଼ିଚ୍ଛେଦନ କରନ୍ତି ଓ ପଞ୍ଚାମୃତରେ ମହାସ୍ନାନ ହୁଏ । ପରୋପଚାରରେ ଶୀତଳ ଭୋଗ (କୋରା ଓ ରାଶି ଲଡୁ) ମଣୋହି କରନ୍ତି ଓ ବନ୍ଦାପନା ହୁଏ । ଏହାପରେ ଜଗମୋହନରେ ଝୋଟ ସୁଆଁସିଆ ବାନ୍ଧିଥିବା ଦୋଳିରେ ରାମ, କୃଷ୍ଣ ଓ ମଦନମୋହନ ବିଜେ ହୁଅନ୍ତି । ମହାସୁଆର ପ୍ରଦତ୍ତ ରାଶିକୋରା ଓ ଲଡୁରେ ମୁଦିରସ୍ତ ପ୍ରସାଦ ଲାଗି କରନ୍ତି । ପୂଜାପଣ୍ଡା ଷୋଡ଼ଶ ଉପଚାରରେ ପୂଜା ମଣୋହି କରନ୍ତି ଓ ବନ୍ଦାପନା ହୁଏ । ବଡ଼ ସିଂହାର ଭୋଗ ପାଇଁ ରୋଷ ଘରରୁ ଛେକ ଆସିଲେ ରାମ, କୃଷ୍ଣ ସିଂହାସନକୁ ଓ ମଦନମୋହନ ଦକ୍ଷିଣ ଘରକୁ ବିଜେ କରନ୍ତି ।

ଶ୍ରୀମନ୍ଦିରରେ ଭାଦ୍ରବ କୃଷ୍ଣ ସପ୍ତମୀରେ ଶ୍ରୀକୃଷ୍ଣ ଜନ୍ମୋତ୍ସବ ଉପଲକ୍ଷେ ଶ୍ରୀଜଗନ୍ନାଥଙ୍କ ବାଡ଼ରେ ଗନ୍ଧୋଦକ ବନ୍ଦାପନା ହୁଏ । ଭାଦ୍ରବ କୃଷ୍ଣ ଅଷ୍ଟମୀରେ ଶ୍ରୀକୃଷ୍ଣ ଜନ୍ମୋତ୍ସବ, ନବମୀରେ ନନ୍ଦୋତ୍ସବ ଓ ବିଜୁଳିବତୀ କନ୍ୟାବଧ, ଦଶମୀରେ ବଣଭୋଜି, କୋଳିବିକା, ବକାସୁର ଓ ଅର୍ଘାସୁର ବଧ, ଏକାଦଶୀରେ ମାର୍କଣ୍ଡେୟ ପୁଷ୍କରିଣୀରେ କାଳୀୟ ଦଳନ, କୁଣ୍ଡାଗ ... ସାହିରେ ଧେନୁକାସୁର ବଧ, ଦ୍ୱାଦଶୀରେ ପ୍ରଳମ୍ବାସୁର ବଧ, ତ୍ରୟୋଦଶୀରେ କୃଷ୍ଣ ବଳରାମ ବେଶ, ଅମାବାସ୍ୟାରେ କାଳିଆ

ଗୋପୀ ସାହିର ବସ୍ତ୍ର ହରଣ, ଭାଦ୍ରବ ଶୁକ୍ଳ ପ୍ରତିପଦାରେ ଦାବାଗ୍ନି, ଦ୍ୱିତୀୟାରେ ନିକୁଞ୍ଜ ଲୀଳା, ତୃତୀୟାରେ ଅନ୍ଧ ମନ୍ଦିର ହାତୀ ଓ ଅଘାସୁର ଲୀଳା, ପଞ୍ଚମୀ ଦିନ ବାହୁ ଲୀଳା, ଷଷ୍ଠ ଦିନ ବିସାସୁର ବଧ, ଅଷ୍ଟମୀ ଦିନ କେଶୀ ବଧ, ଦଶମୀ ଦିନ ଲବଣୀଖିଆ, କୁବୁଜା ଉଦ୍ଧାର, କୁବଳୟା ଉଦ୍ଧାର, କଂସବଧ, ଉଗ୍ରସେନ ଶାଢ଼ୀ ପ୍ରଦାନ, ମଥୁରାହାଟ ଯୁଦ୍ଧ, ଦ୍ୱାଦଶୀ ଦିନ ଇନ୍ଦ୍ରଧ୍ୱଜ ପୂଜାଦି ଉତ୍ସବମାନ ଅନୁଷ୍ଠିତ ହୋଇଥାଏ । ଏତଦ୍ ବ୍ୟତୀତ ବୈଶାଖ ମାସର ଚନ୍ଦନ ଯାତ୍ରା, ଶ୍ରାବଣ ମାସର ଝୁଲଣ ଯାତ୍ରା ଓ ଫାଲଗୁନ ମାସର ଦୋଳଯାତ୍ରା ଶ୍ରୀମନ୍ଦିରରେ କୃଷ୍ଣ କୈନ୍ଦ୍ରିକ ଯାତ୍ରା ସମୂହ ରୂପେ ସୁପରିଚିତ ।

'ସ୍କନ୍ଦପୁରାଣ' ଓ 'ବ୍ରହ୍ମପୁରାଣରେ ଶ୍ରୀଜଗନ୍ନାଥ ଶ୍ରୀକୃଷ୍ଣ ରୂପେ ବର୍ଣ୍ଣିତ ।

"ପଦ୍ମାସନ ସ୍ଥିତଂ କୃଷ୍ଣ ଦିବ୍ୟାଳଂକାର ଭୂଷିତମ୍ ।
କୃଷ୍ଣଦେହୋ ପରିବୃତଂ ଦାରୁ ଦେହେଽପି ନିର୍ମଳମ୍ ॥

(ସ୍କନ୍ଦପୁରାଣ)

"ଏତେଷାଂ ଦର୍ଶନଂ ଚୈବ ବ୍ୟୁଷିତସ୍ୟ ଚ ଭୋଦ୍ୱିଜାଃ । ।
ଦର୍ଶନଂ ବଳଦେବସ୍ୟ କୃଷ୍ଣସ୍ୟ ଚ ବିଶେଷତଃ ॥

(ବ୍ରହ୍ମ ପୁରାଣ)

ଶାରଳା ଦାସଙ୍କ ମହାଭାରତ, ବଳରାମ ଦାସଙ୍କ ଦେଉଳତୋଳା ଓ ବେଦାନ୍ତ ସାର ଗୁପ୍ତ ଗୀତା, ମୁକୁନ୍ଦରାମଙ୍କ ରଚିତ ବଙ୍ଗଳାକାବ୍ୟ ଜଗନ୍ନାଥ ମଙ୍ଗଳ, ଯଶୋବନ୍ତ ଦାସଙ୍କ ପ୍ରେମ ଭକ୍ତି ଗୀତା, ଶିଶିର ଦାସଙ୍କ ନୀଳ ସୁନ୍ଦର ଗୀତା ଓ ଦିବାକର ଦାସଙ୍କ ଜଗନ୍ନାଥ ଚରିତାମୃତ ଶ୍ରୀକୃଷ୍ଣ ଓ ଜଗନ୍ନାଥଙ୍କର ଅଭିନ୍ନତ୍ୱ ପ୍ରତିପାଦନ କରେ ।

"ତୁ ଏ ଶବ ଦହନ ନ କର ଧନଞ୍ଜୟେ ।
କଳିଯୁଗେ ପାଇବେ ଏ ପୂଜା ଏହି ଦେହେ ॥
ଏଥୁ ଅନନ୍ତରେ ଶୁଣ ଆହେ ନରନାଥ ।
ନୀଳଗିରିକୁ ବିଜୟେ ହେବ ଜଗନ୍ନାଥ ॥"

(ସାରଳା ମହାଭାରତ)

ପୁନଶ୍ଚ ଶ୍ରୀମଦ୍ ଶଙ୍କରାଚାର୍ଯ୍ୟ ମେତାନ୍ତରେ ଚୈତନ୍ୟ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କୁ "ଶ୍ରୀଜଗନ୍ନାଥାଷ୍ଟକ"ରେ ବ୍ରଜେନ୍ଦ୍ର ନନ୍ଦନ ଶ୍ରୀକୃଷ୍ଣ ରୂପେ ବନ୍ଦନା କରିଛନ୍ତି ।

"ଭୁଜେ ସବ୍ୟେ ବେଣୁଂ ଶିରସି ଶିଖିପୁଚ୍ଛଂ କଟିତଟେ ।
ଦୁକୂଳଂ ନେତ୍ରାନ୍ତେ ସହଚର କଟାକ୍ଷଂ ବିଦଧତେ ।"।
ସଦା ଶ୍ରୀମଦ୍ ବୃନ୍ଦାବନ ବସତି ଲୀଳା ପରିଚୟୋ ।
ଜଗନ୍ନାଥଃ ସ୍ୱାମୀ ନୟନ ପଥଗାମୀ ଭବତୁମେ ॥"

ଗୌଡ଼ୀୟ ବୈଷ୍ଣବ ଆଖ୍ୟାୟିକାରେ ବଳଭଦ୍ର, ସୁଭଦ୍ରା, ଜଗନ୍ନାଥ ଓ ସୁଦର୍ଶନ ଯଥାକ୍ରମେ ବଳରାମ, ସୁଭଦ୍ରା, ଶ୍ରୀକୃଷ୍ଣ ଓ ସୁଦର୍ଶନ ଚକ୍ରର ପରବର୍ତ୍ତୀ ଭାବାତ୍ମକ ଆତ୍ମପ୍ରକାଶ । ଏକଦା ଶ୍ରୀକୃଷ୍ଣ ପାଟ ମହିଷୀ ରୁକ୍ମିଣୀ ଓ ସତ୍ୟଭାମା ରାସକ୍ରୀଡ଼ା ସମ୍ବନ୍ଧରେ ଜାଣିବା ପାଇଁ ରୋହିଣୀ ମାତାଙ୍କୁ ସବିନୟ ନିବେଦନ କଲେ । ରୋହିଣୀ ବଳରାମ ଓ ଶ୍ରୀକୃଷ୍ଣ ବେନିଭ୍ରାତାଙ୍କୁ ଜଗିବାକୁ ସୁଭଦ୍ରାଙ୍କୁ ନିର୍ଦ୍ଦେଶ ଦେଲେ । କିନ୍ତୁ ସମସ୍ତ ଚେଷ୍ଟା ପଣ୍ଡ ହେଲା । ସୁଭଦ୍ରା ଭ୍ରାତୃଦ୍ୱୟଙ୍କ ଗତିକୁ ପ୍ରତିରୋଧ କରିବାକୁ ଅସମର୍ଥା ହେବାରୁ ତିନିହେଁ ଆସି ରୋହିଣୀମାତାଙ୍କ ସମ୍ମୁଖରେ ଉପସ୍ଥିତ ହେଲେ । ମାତାଙ୍କ ଶ୍ରୀମୁଖରୁ ଦେବ ଦୁର୍ଲ୍ଲଭ ରାସ ପ୍ରସଙ୍ଗ ଶ୍ରବଣ କରି ଉଭୟ ଭ୍ରାତା ଓ ଭଗିନୀ ଅଗ୍ନି ସମୀପସ୍ଥ ଜତୁ (ଜଉ) ସଦୃଶ ବିଗଳିତ ରୂପ ଧାରଣ କଲେ । ଚକ୍ଷୁ ବିସ୍ଫାରିତ ଓ ଅଙ୍ଗ ପ୍ରତ୍ୟଙ୍ଗ ବିଗଳିତ ହୋଇ ଅଦ୍ଭୁତ ଇନ୍ଦ୍ରିୟାତିତ ଓ ଇନ୍ଦ୍ରିୟ ନିଗ୍ରହ ରୂପ ଧାରଣ କଲା ।ଶ୍ରୀକୃଷ୍ଣଙ୍କ ହସ୍ତଚକ୍ର ତରଳି ଯିବାରୁ ସ୍ତମ୍ଭାକୃତି ଧାରଣ କଲା । ଇତ୍ୟବସରେ ଦେବର୍ଷି ନାରଦ ସ୍ୱର୍ଗରୁ ଅବତରଣ କରି ଏତାଦୃଶ ରୂପ ସନ୍ଦର୍ଶନରେ ବିସ୍ମିତ ହେଲେ ଓ କଳିଯୁଗରେ ଏପରି ଚତୁର୍ଦ୍ଧା ମୂର୍ତ୍ତି ରୂପେ ପୂଜା ପାଇବାକୁ କାମନା କଲେ । ଉପରୋକ୍ତ ଆଖ୍ୟାୟିକାନୁଯାୟୀ ଶ୍ରୀମନ୍ଦିର ରତ୍ନ ସିଂହାସନସ୍ଥ ଚତୁର୍ଦ୍ଧା ମୂର୍ତ୍ତି ହିଁ ବଳରାମ, ସୁଭଦ୍ରା, ଶ୍ରୀକୃଷ୍ଣ ଓ ସୁଦର୍ଶନଙ୍କ ଭାବାବେଶ ରୂପ । ଗୌଡ଼ୀୟ ବୈଷ୍ଣବ ଚିନ୍ତନରେ ଶ୍ରୀଜଗନ୍ନାଥ ଶ୍ରୀକୃଷ୍ଣଙ୍କ ପରବର୍ତ୍ତୀକାଳୀନ ପରି ଅନୁମିତ ହେଲେ ମଧ୍ୟ ଉତ୍କଳୀୟ ବୈଷ୍ଣବ ଏହାକୁ ଅନୁମୋଦନ କରେ ନାହିଁ କାରଣ ଉତ୍କଳୀୟ ବୈଷ୍ଣବ ଧାରାରେ ନୀଳାଚଳ ଚନ୍ଦ୍ରମା ଶ୍ରୀଜଗନ୍ନାଥ ହେଉଛନ୍ତି ଆଦ୍ୟ ସନାତନ । ତାଙ୍କ ନିର୍ଦ୍ଦେଶରେ ଯୁଗ ଓ ଯୁଗାବତାରମାନଙ୍କର ସୃଷ୍ଟି, ସ୍ଥିତି ଓ ପ୍ରଳୟ ଘଟିଥାଏ । ଏକ ଦୀପାଲୋକରୁ ବହୁ ଦୀପ ପ୍ରଜ୍ୱଳିତ ହେବାପରି ଶ୍ରୀଜଗନ୍ନାଥଙ୍କଠାରୁ ସକଳ ଅବତାରବାଦର ସୃଷ୍ଟି ।

"ଦୀପରେ ଦୀପ ଲଗାଇଲେ ।
ତେଜ ଯେସନ ସମତୁଲେ ॥
କାର୍ଯ୍ୟ କାରଣ ଭିନ୍ନ ନୋହି ।
ଶ୍ରୀକୃଷ୍ଣ ଜଗନ୍ନାଥ ସେହି ॥

xxx xxx xxx

ଏଣୁ ଏ ଜଗନ୍ନାଥ କୃଷ୍ଣ ।
ଅଭିନ୍ନ ଅଟନ୍ତି ଅର୍ଜ୍ଜୁନ ॥"

(ବେଦାନ୍ତସାର ଗୁପ୍ତ ଗୀତା ବଳରାମ ଦାସ)

ପୁନଶ୍ଚ !

ଶ୍ରୀକୃଷ୍ଣ ଜଗନ୍ନାଥ ସେହି ।
ପରମାନନ୍ଦ ସେ ବୋଲାଇ ॥"

(ଛୟାଳିଶ ପଟଳ)

ଶ୍ରୀଜଗନ୍ନାଥ ଓ ଶ୍ରୀକୃଷ୍ଣ ଏକ ଓ ଅଭିନ୍ନ । ଶ୍ରୀଜଗନ୍ନାଥଙ୍କୁ ରତ୍ନ ସିଂହାସନରେ ଗୋପାଳମନ୍ତ୍ରରେ ଆରାଧନା କରାଯାଇଥାଏ । ଶ୍ରୀଜଗନ୍ନାଥଙ୍କୁ ଗୋଲକାଧିପତି ଶ୍ରୀକୃଷ୍ଣ ରୂପେ କଳ୍ପନା କଲେ ଶ୍ରୀଜଗନ୍ନାଥ ବ୍ରଜେନ୍ଦ୍ର ନନ୍ଦନ ଶ୍ରୀକୃଷ୍ଣ ତାଙ୍କର ଲୀଳାବତାର । (ଉତ୍କଳ ପ୍ରସଙ୍ଗ, ରଥ ସଂଖ୍ୟା ୧୯୮୨ ଓ ମହାପ୍ରଭୁ ପତ୍ରିକାର ଦ୍ୱିତୀୟ ବର୍ଷ ପ୍ରଥମ ସଂଖ୍ୟାରେ "ଶ୍ରୀଜଗନ୍ନାଥ : ଶ୍ରୀକୃଷ୍ଣ" ନିବନ୍ଧରେ ଉକ୍ତ ପ୍ରସଙ୍ଗ ଏ ଲେଖକ ଦ୍ୱାରା ବିଶଦ ଭାବେ ଆଲୋଚିତ ହୋଇଛି ।)

## ଶ୍ରୀଜଗନ୍ନାଥ : ଶ୍ରୀବଳଭଦ୍ର (ଶ୍ରୀବଳରାମ) :

ଜଗନ୍ନାଥ ବ୍ରହ୍ମ ଚୈତନ୍ୟ, ବଳଭଦ୍ର ଜୀବ ଚୈତନ୍ୟ ଓ ସୁଭଦ୍ରା ଚୈତନ୍ୟ ରୂପିଣୀ ମାୟାର ପ୍ରତିକ। ବଳଭଦ୍ର ସଗୁଣାତ୍ମକ ଓ ଜଗନ୍ନାଥ ନିର୍ଗୁଣାତ୍ମକ। ପୁରୁଷୋତ୍ତମ ତତ୍ତ୍ୱର ବଳଭଦ୍ର କ୍ଷେତ୍ର ବା ଆଧାର ତତ୍ତ୍ୱ ବା ପୃଥିବୀ ତତ୍ତ୍ୱ ଆଦି ଶେଷ "ଶେଷାଖ୍ୟଂ ଧାମ ମାମକମ୍" ଓ ଆଧେୟ ବା କ୍ଷେତ୍ରଜ୍ଞ ହେଉଛନ୍ତି ଶ୍ରୀଜଗନ୍ନାଥ। ଆଧାର ଓ ଆଧେୟ ମଧ୍ୟରେ ବିଭେଦ ଆସିଲା କେଉଁଠୁ... ଶ୍ରୀଜଗନ୍ନାଥ ଓ ଶ୍ରୀବଳଭଦ୍ର ଭିନ୍ନ ବିଗ୍ରହରେ ପ୍ରତିଭାତ ହେଲେ ମଧ୍ୟ ତତ୍ତ୍ୱତଃ ଏକ ଓ ଅଭିନ୍ନ। ବଳଭଦ୍ର ରାମାବତାରେ ଲକ୍ଷ୍ମଣ ଓ କୃଷ୍ଣାବତାରେ ବଳରାମ ରୂପେ ସର୍ବଦା ଜଗନ୍ନାଥଙ୍କ ପରିଚର୍ଯ୍ୟାନୁରକ୍ତ। ବଳଭଦ୍ର ଶ୍ରୀମାନ୍ ନାରାୟଣଙ୍କଠାରୁ ଭିନ୍ନ ରହି ଶ୍ରୀହରିଙ୍କ ସମସ୍ତ କାର୍ଯ୍ୟ ସମ୍ପାଦନା କରନ୍ତି।

"ହରେର ଭିନ୍ନ ସତ୍ତ୍ୱୋପି ଭାତିଭିନ୍ନସ୍ତୋ ନୃପ।
ସାଧତି ସର୍ବ କର୍ମାଣି ହରେଃ ପ୍ରିୟ ଚିକୀର୍ଷୟା ॥"

(ସ୍କନ୍ଦପୁରାଣ)

ବ୍ରହ୍ମଚୈତନ୍ୟ ଶ୍ରୀଜଗନ୍ନାଥଙ୍କ ମୁଖାରବିନ୍ଦ ଜୀବଚୈତନ୍ୟ ବଳଭଦ୍ର ଓ ମାୟାଚୈତନ୍ୟ ସୁଭଦ୍ରାଙ୍କଠାରୁ ପୃଥକ। ସନ୍ଥ ତୁଳସୀ ଶ୍ରୀରାମ ଚରିତ ମାନସରେ ଶ୍ରୀରାମ, ଲକ୍ଷ୍ମଣ ଓ ସୀତାଙ୍କୁ ଯଥାକ୍ରମେ ବ୍ରହ୍ମ, ଜୀବ ଓ ମାୟାରୂପେ ବର୍ଣ୍ଣନ କରିଛନ୍ତି। ବ୍ରହ୍ମ ଚୈତନ୍ୟ ଶ୍ରୀଜଗନ୍ନାଥଙ୍କ ଭ୍ରୁଲତା ରହିତ କେଶୀଛ ଯୁଗଳ ପ୍ରସ୍ଫୁଟିତ ପଦ୍ମାକୃତି (ଶଶୀ, ସୂର୍ଯ୍ୟ ନେତ୍ର) କିନ୍ତୁ ବଳଭଦ୍ର ଓ ସୁଭଦ୍ରାଙ୍କ ଭ୍ରୁଲତାଯୁକ୍ତ ନେତ୍ରଦ୍ୱୟ ପଦ୍ମ ପୁଷ୍ପାକୃତି। ବଳଭଦ୍ର ଓ ସୁଭଦ୍ରାଙ୍କ ବ୍ରହ୍ମ ବିନ୍ଦୁ ନାସାଗ୍ର ଓ ଅଧର ରେଖା ଥିବା ବେଳେ ଜଗନ୍ନାଥ ଅଙ୍ଗପ୍ରତ୍ୟଙ୍ଗ ରହିତ।

ଶ୍ରୀମଦ୍ ଶଙ୍କରାଚାର୍ଯ୍ୟଙ୍କ "ଜୀବଃ ବ୍ରହ୍ମୈବ ନାପରଃ।" ଅଦ୍ୱୈତବାଦ ରତ୍ନସିଂହାସନରେ ପ୍ରତିପାଦିତ ହୋଇଛି। ଅର୍ଥାତ୍ ବଳଭଦ୍ର ରୂପୀ ଜୀବ ଚୈତନ୍ୟ ଓ ଜଗନ୍ନାଥ ରୂପୀ ବ୍ରହ୍ମ ଚୈତନ୍ୟ ପାର୍ଥକ୍ୟ ରହିତ। ଜୀବ ବା ସାଧକ ଯୋଗ ବା ସାଧନ ବଳରେ ଇନ୍ଦ୍ରିୟାତୀତ ସମାଧି ଅବସ୍ଥା (ତୁରୀୟ ବା ନିର୍ବିକଳ୍ପ ଅବସ୍ଥା) ପ୍ରାପ୍ତ ହେଲେ ବ୍ରହ୍ମସମ ପୂଜା ପାଇଥାଏ। ରଥଯାତ୍ରା ସମୟରେ ବଳଭଦ୍ରଙ୍କ ରଥ ପଛରେ ଜଗନ୍ନାଥଙ୍କ ରଥ ଅନୁଗମନ କଲାପରି ଭକ୍ତ ବା ସାଧକ ଭକ୍ତିବା ସାଧନର ଚରମାବସ୍ଥା ପ୍ରାପ୍ତି ହେଲେ ଭଗବାନ ବା ସାଧ୍ୟ ତାହାର ଅନୁଗମନ କରନ୍ତି। ଯୋଗମାୟା ଜୀବ ଓ ବ୍ରହ୍ମ ମଧ୍ୟରେ ବିଭେଦ କାରିଣୀ ନହୋଇ କୁଣ୍ଡଳିନୀ ରୂପେ ସଂଯୋଗକାରିଣୀ ହୋଇଥାଆନ୍ତି। ବଳଭଦ୍ର ଓ ଜଗନ୍ନାଥଙ୍କ ମଧ୍ୟରେ ସୁଭଦ୍ରା ସଂଯୋଗକାରିଣୀ କୁଣ୍ଡଳିନୀ ଶକ୍ତି।

## ଶ୍ରୀଜଗନ୍ନାଥ : ଶ୍ରୀବୁଦ୍ଧ :

ଉତ୍କଳୀୟ ଭକ୍ତକବି ଜୟଦେବଙ୍କ ରଚିତ ବିଷ୍ଣୁଙ୍କର ଦଶାବତାର ଓ ଶ୍ରୀମଦ୍ ଭାଗବତର ପ୍ରଥମ ଖଣ୍ଡ, ତୃତୀୟ ଅଧ୍ୟାୟର ବିଷ୍ଣୁଙ୍କ ଏକ ବିଂଶତି ଅବତାର ମଧ୍ୟରେ ବୁଦ୍ଧାବତାର ଅନ୍ୟତମ। କେହି କେହି ଶ୍ରୀମନ୍ଦିର ସିଂହଦ୍ୱାର ତୋରଣୋପରି ଓ ଶ୍ରୀମନ୍ଦିର ଜଗମୋହନର ଗରୁଡ ସ୍ତମ୍ଭ ପାର୍ଶ୍ୱସ୍ଥିତ ଦଶବତାର ମୂର୍ତ୍ତିରେ ନବମ ଅବତାର ସ୍ଥାନରେ ଜଗନ୍ନାଥଙ୍କ ମୂର୍ତ୍ତି ଲକ୍ଷ୍ୟକରି କହିଥାଆନ୍ତି, ଶ୍ରୀଜଗନ୍ନାଥ ଗୌତମ ବୁଦ୍ଧଙ୍କ ପରବର୍ତ୍ତୀ ପର୍ଯ୍ୟାୟ ଅର୍ଥାତ୍ ଗୌତମ ବୁ... କାଳାନ୍ତରେ ଶ୍ରୀଜଗନ୍ନାଥ ରୂପେ ପୂଜିତ; ଆରାଧିତ। କିନ୍ତୁ ମୁ... ମନ୍ଦିରରୁ ଚୂନ ଛଡ଼ା ଯିବା ପରେ ମନ୍ଦିର ବାହର ପଶ୍ଚିମ ଦିଗରେ ଭୂପୃଷ୍ଠରୁ କିଛି ଉର୍ଦ୍ଧ୍ୱରେ ଅନ୍ୟବତାର ମୂର୍ତ୍ତିଙ୍କ ସହିତ ବୁଦ୍ଧାବତାର ଦୃଷ୍ଟିଗୋଚର ହୁଏ। ସେଥିରେ ନବମ ଅବତାର ସ୍ଥାନରେ ସେହି ଗୌତମ ବୁଦ୍ଧଙ୍କ ମନୁଷ୍ୟାକୃତି ମୂର୍ତ୍ତି ବିଦ୍ୟମାନ କିନ୍ତୁ ଜଗନ୍ନାଥଙ୍କ ରୂପରେଖ କିଛି ନାହିଁ। ପୁନଶ୍ଚ ସିଂହଦ୍ୱାର ଓ ଜଗମୋହନର ବୁଦ୍ଧାବତାର ମୂର୍ତ୍ତି ବହୁ ପରବର୍ତ୍ତୀ କାଳର। ତେଣୁ ଉକ୍ତ ମୂର୍ତ୍ତିକୁ ଦେଖି ଜଗନ୍ନାଥଙ୍କୁ ବୁଦ୍ଧଙ୍କର ପରବର୍ତ୍ତୀକାଳୀନ କିମ୍ବା ପରବର୍ତ୍ତୀ ପର୍ଯ୍ୟାୟ କହିବା ଭ୍ରମାତ୍ମକ।

ପୁନଶ୍ଚ ଐତିହାସିକମାନଙ୍କ ମତରେ ବୁଦ୍ଧଦେବ (ସିଦ୍ଧାର୍ଥ) ନେପାଳରୁ କପିଳବସ୍ତୁର ରାଜକୁମାର ତଥା ରାଜା ଶୁଦ୍ଧୋଦନ ଓ ରାଣୀ ମାୟାଦେବୀଙ୍କ ପୁତ୍ର କିନ୍ତୁ ଶ୍ରୀମଦ୍ ଭାଗବତ ବର୍ଣ୍ଣିତ ବୁଦ୍ଧଦେବ କୀକଟ (କେତେକଙ୍କ ମତରେ ମଗଧ ବା ବିହାରର ଆଧୁନିକ ଗୟା) ଦେଶର ରାଜକୁମାର ଓ ଅଜନା ସୁତ। ତେଣୁ ପୁରାଣ ବର୍ଣ୍ଣିତ ବୁଦ୍ଧଦେବଙ୍କ ସହିତ ଐତିହାସିକ ପୁରୁଷ ବୁଦ୍ଧ କୌଣସି ସାମଞ୍ଜସ୍ୟ ଥିବାପରି ମନେ ହେଉନାହିଁ।

ପୁନଶ୍ଚ ଭକ୍ତକବି ଜୟଦେବଙ୍କ ଦଶାବତାରର ବୁଦ୍ଧଦେବ ଯଜ୍ଞ ପଶୁଘାତ (ଯଜ୍ଞରେ ପଶୁବଳୀ) ବିରୋଧୀ କିନ୍ତୁ ଶ୍ରୀଜଗନ୍ନାଥଙ୍କ ନିକଟରେ ଅନୁଷ୍ଠିତ ସେବାପୂଜା ପରମ ବୈଦିକ ଓ ଯାଜ୍ଞିକ। ବାମାଗ୍ରର ବଳିପ୍ରଥା ଓ ପଞ୍ଚମକାର ଉପାସନା ଶ୍ରୀମନ୍ଦିରରେ ଅଦ୍ୟାବଧି ପ୍ରଚଳିତ। ତେଣୁ ଶ୍ରୀଜଗନ୍ନାଥଙ୍କୁ ଗୌତମ ବୁଦ୍ଧଙ୍କ ପରବର୍ତ୍ତୀ ପର୍ଯ୍ୟାୟ କିମ୍ବା ଗୌତମ ବୁଦ୍ଧଙ୍କ ସହ ସାମଞ୍ଜସ୍ୟ ସ୍ଥାପନ କରିବା ସମ୍ପୂର୍ଣ୍ଣ ଅହେତୁକ। ଶ୍ରୀମଦ୍ ଭାଗବତର ବୁଦ୍ଧାବତାର ଅନୁଧ୍ୟାନ କଲେ କୀକଟ ଶବ୍ଦର ଆଭିଧାନିକ ଅର୍ଥ ଦରିଦ୍ର ଓ କୀକଟେଷୁ ଅର୍ଥ ପତିତଜନଙ୍କଠାରେ ବା ପତିତ ପାବନ। ପୁନଶ୍ଚ ଅଜନ ବା ଅଞ୍ଜନ ଶବ୍ଦର ଅର୍ଥ କୃଷ୍ଣ ଓ ଅଜନ ସୁତ ଅର୍ଥ କୃଷ୍ଣ ପୁତ୍ର ବା କୃଷ୍ଣ। ଅତଏବ ଉପରୋକ୍ତ ଆଭିଧାନିକ ଅର୍ଥରୁ ବୁଦ୍ଧାବତାରରୁ କପିଳବସ୍ତୁ ବା ଗୟାର ଗୌତମ ବୁଦ୍ଧ ସୂଚିତ ନ ହୋଇ ଦାରୁବ୍ରହ୍ମ ଜଗନ୍ନାଥ ସୂଚିତ ହୋଇଥାଏ।

କେତେକ ଐତିହାସିକମାନଙ୍କ ମତରେ ଅର୍ହତ ଯାନ (ହୀନ ଯାନ)ରୁ ଯେପରି ମହାଯାନ ଓ ମହାଯାନରୁ ଯେପରି ବଜ୍ରଯାନର ଅଭ୍ୟୁଦୟ ହେଲା ସେହିପରି ବଜ୍ରଯାନରୁ କାଳକ୍ରମେ ପଦ୍ଧତି ପରସ୍ପରଠାରୁ ସୃଷ୍ଟି। ହୀନଯାନ, ମହାଯାନ ଓ ତନ୍ତ୍ର ଯାନର ମତ, ତତ୍ତ୍ୱ ଓ ବିଶ୍ୱାସ ଏବଂ ଆରାଧନା ପଦ୍ଧତି ପରସ୍ପରଠାରୁ ପୃଥକ ତେଣୁ କୌଣସି ବୌଦ୍ଧପୀଠରେ ତ୍ରିଯାନର ସମନ୍ୱୟ ଘଟେ ନାହିଁ। କିନ୍ତୁ ଏତାଦୃଶ ବିଚ୍ଛିନ୍ନତାବାଦର ମଧୁର ମିଳନ ବା ସମନ୍ୱୟ ହୋଇଛି ଶ୍ରୀଜଗନ୍ନାଥଙ୍କ ନିକଟରେ। ଶ୍ରୀଜଗନ୍ନାଥ ହେଉଛନ୍ତି ସର୍ବବୁଦ୍ଧମୟ ଆଦିବୁଦ୍ଧ। ସେ ଏକାଧାରରେ ହୀନଯାନର 'ଶାକ୍ୟ' ମହାଯାନର 'ଶୂନ୍ୟ' ଓ ତନ୍ତ୍ରଯାନର 'ବଜ୍ର'।

ଇନ୍ଦ୍ରିୟ ବିହୀନ ପ୍ରତୀକ ଶ୍ରୀଜଗନ୍ନାଥ ମୁଖ୍ୟତଃ ଦୁଇଭାଗରେ ବିଭକ୍ତ ଅଧଃ ଓ ଉର୍ଦ୍ଧ୍ୱ, ଅଧଃ ବା ନିମ୍ନଭାଗରେ ସ୍ତୂପାକୃତି ...

ବୁଦ୍ଧଦେବଙ୍କ ଦନ୍ତ ପୂଜା ପାଉଛି ବୋଲି କେତେକଙ୍କ ବିଶ୍ୱାସ ମଧ୍ୟରେ ବୁଦ୍ଧଦେବଙ୍କ ଦନ୍ତ ପୂଜା ... ଓ ଉପରି ଭାଗରେ ମହାଯାନର ଶୂନ୍ୟ ସଙ୍କେତ 'ଶ୍ୱେତ ମଣ୍ଡଳ ମଧ୍ୟରେ କୃଷ୍ଣ ବୃତ୍ତ' ଅଙ୍କିତ । ଆମେ ଯାହାକୁ ଚକାଡୋଳା ବୋଲି କହୁ ବୌଦ୍ଧ ଭିକ୍ଷୁମାନଙ୍କ ମତରେ ଗୋଟିଏ ପ୍ରଜ୍ଞା ଓ ଅପରଟି କରୁଣାର ଦ୍ୟୋତକ ।

ବୁଦ୍ଧଦେବଙ୍କ ଦନ୍ତ ଜଗନ୍ନାଥଙ୍କ ଗର୍ଭରେ ବ୍ରହ୍ମ ରୂପେ ପୂଜା ପାଇବା ଅସମୀଚୀନ ଓ ଭ୍ରମାତ୍ମକ । କାରଣ କଳିଙ୍ଗର ରାଜା ଗୁହଶିବ ତାଙ୍କର ଜାମାତା ତଥା ଉଜ୍ଜୟିନୀର ରାଜପୁତ୍ର "ଦନ୍ତକୁମାର" ଓ କନ୍ୟା "ହେମମାଳୀ"ଙ୍କ ହସ୍ତରେ ବୁଦ୍ଧଙ୍କ ଦନ୍ତ ସିଂହଳର ରାଜା ଶ୍ରୀମେଘବାନ (ଖ୍ରୀ:୩୧୦)ଙ୍କ ନିକଟକୁ ପ୍ରେରଣ କରିଥିଲେ ଯାହାକି ସିଂହଳ ଇତିହାସରୁ ମିଳିଥାଏ । ଅଦ୍ୟାବଧି ସିଂହଳରେ ବୁଦ୍ଧଦେବଙ୍କ ଦନ୍ତଯାତ୍ରା ପେରହେରା (PERHERA) ନାମରେ ଅନୁଷ୍ଠିତ ।

ପୁନଶ୍ଚ ବ୍ରାହ୍ମଣ୍ୟ ଧର୍ମ ଓ ବୈଷ୍ଣବ ଧର୍ମରେ ମୃତବ୍ୟକ୍ତିର ଅଂଶ ବିଶେଷ ଅପବିତ୍ର । ତେଣୁ ଉକ୍ତ ସମ୍ପ୍ରଦାୟର ଆଚାର୍ଯ୍ୟମାନଙ୍କ ଦ୍ୱାରା ବୁଦ୍ଧଙ୍କ ଦନ୍ତ ପବିତ୍ର ବସ୍ତୁ ରୂପେ ଗ୍ରହଣୀୟ ନୁହେଁ । ମିଷ୍ଟର ... ମଧ୍ୟ ଅନୁରୂପ ମତ ପୋଷଣ କରିଛନ୍ତି । "The rule of Vaishnavism is utterly opposed to the preservation of relics of the dead." -Things Indian.

ସେହିପରି କେତେକଙ୍କ ମତରେ ଶ୍ରୀଜଗନ୍ନାଥଙ୍କ ରଥଯାତ୍ରା ବୁଦ୍ଧଦେବଙ୍କ ପ୍ରବ୍ରଜ୍ୟା ଯାତ୍ରା, ଦନ୍ତ ଯାତ୍ରା ଓ ବିରଜା ଯାତ୍ରାର ଅନୁକରଣରେ ଅନୁଷ୍ଠିତ । ଏହା ସମ୍ପୂର୍ଣ୍ଣ ଭ୍ରମାତ୍ମକ । ବରଂ ନେପାଳର ବୌଦ୍ଧ ରଥୋତ୍ସବ ଶ୍ରୀଜଗନ୍ନାଥଙ୍କ ରଥୋତ୍ସବରେ ଅନୁକରଣରେ ଅନୁଷ୍ଠିତ ବୋଲି କେତେକ ମତ ବ୍ୟକ୍ତ କରିଛନ୍ତି । "The Buddhist festival is evidently adopted from the Hindu festival of Jagnnath, in honour of Jagannath and his brother Balaram and Kumari representing their sister Subhadra." (Old Field's Sketches from Nepal).

ପୁରୀ ଗେଜେଟିୟର୍‌ର ଲେଖକ Mr. Malley and Editor P.T. Mansfieldଙ୍କର ଶ୍ରୀଜଗନ୍ନାଥଙ୍କ ରଥୋତ୍ସବର ପ୍ରାଚୀନତା ସମ୍ପର୍କୀୟ ବିବରଣୀ ପ୍ରଶଂସାର୍ହ ଓ ପ୍ରଣିଧାନଯୋଗ୍ୟ ।

"As regards the Carfestival it is noticeable that cars are used not only in PURI for the Worship of Jagannath but also in Bhubaneswar for worship of Siva, in Jajpur for worship of Goddess Biraja and also in many temples to the South. Moreover. the procession of Cars of Gods x x is provably pre-Budhistic."

ସେହିପରି କେତେକଙ୍କ ମତରେ ବୌଦ୍ଧ ପ୍ରଭାବରୁ ଶ୍ରୀଜଗନ୍ନାଥଙ୍କ ମହାପ୍ରସାଦ ସେବନରେ ଜାତିଭେଦ ନାହିଁ । କିନ୍ତୁ ଏହା ଅସମୀଚୀନ କାରଣ ରତ୍ନ ସିଂହାସନରେ ଚତୁର୍ଦ୍ଧା ଦାରବ ମୂର୍ତ୍ତିଙ୍କ ଉପାସନାରେ ସ୍ମାର୍ତ୍ତ ମତାନୁଯାୟୀ ପଞ୍ଚଦେବ ଉପାସନା ଅନ୍ତର୍ନିହିତ ଥିବାରୁ ଏହା ସର୍ବ ସମ୍ପ୍ରଦାୟ ଦ୍ୱାରା ସ୍ୱୀକୃତ ଓ ଗ୍ରହଣୀୟ ହୋଇଛି । ଏପରିକି ପ୍ରସାଦ ନହୋଇ ମହାପ୍ରସାଦ ହୋଇଛି ।

ଅତଏବ ଶ୍ରୀଜଗନ୍ନାଥଙ୍କ ବୁଦ୍ଧାବତାର କହିଲେ ଗୌତମ ବୁଦ୍ଧ ସୂଚିତ ହୁଏ ନାହିଁ । ଏହା ଶ୍ରୀଜଗନ୍ନାଥଙ୍କ ଇନ୍ଦ୍ରିୟ ନିଗ୍ରହ ସମାଧି ଅବସ୍ଥା ବା ବୁଦ୍ଧାବସ୍ଥାର ପରିଚାୟକ ।

"ଦେଖିଲେ ପ୍ରତ୍ୟକ୍ଷେ ବିଷ୍ଣୁ ପ୍ରତିମା ତିନିମୂର୍ତ୍ତି ।
କର ଚରଣ ନାହିଁ ମହା ବଉଦ ଜ୍ୟୋତି ॥
ନାଶାକର୍ଣ୍ଣ ନୟନ ଲୀନ ଆଖି ।
କଳିକାଳ ଜନେ ହୁଅନ୍ତି ବଡ଼ ସୁଖୀ ।"

(ସାରଳା ମହାଭାରତ ବନପର୍ବ)

ଅନ୍ୟାନ୍ୟ ଅବତାର ପୁରୁଷଙ୍କ ପରି ଗୌତମ ବୁଦ୍ଧ ଅବତାରୀ ଶ୍ରୀଜଗନ୍ନାଥଙ୍କ ଏକ ଅବତାର ବିଶେଷ । ଶ୍ରୀଜଗନ୍ନାଥ ଅଂଶୀ ହେଲେ ଗୌତମ ବୁଦ୍ଧ ଅଂଶ ବିଶେଷ । ରାମ, କୃଷ୍ଣ, ବାମନ, ନୃସିଂହଙ୍କ ଉପାସକ ପରି ବୁଦ୍ଧୋପାସକଗଣ ଶ୍ରୀଜଗନ୍ନାଥଙ୍କୁ ତାଙ୍କର ଇଷ୍ଟଦେବ ବୁଦ୍ଧରୂପେ ଗ୍ରହଣ କରିଛନ୍ତି ।

"ପ୍ରଣିପତ୍ୟ ଜଗନ୍ନାଥଂ ସର୍ବ ଜୀନ ବରାର୍ଚ୍ଚିତଂ ।
ସର୍ବ ବୁଦ୍ଧମୟଂ ସିଦ୍ଧି ବ୍ୟାପିନଂ ଗଗନୋପମଂ ।"

—ଜ୍ଞାନସିଦ୍ଧି (ବଜ୍ରଯାନୀ ବୌଦ୍ଧ)

ଏହାହିଁ ଜଗନ୍ନାଥ ଧର୍ମର ସାର୍ବଜନୀନତାର ପରିଚୟ ପ୍ରଦାନ କରେ । ତେବେ ଶ୍ରୀଜଗନ୍ନାଥଙ୍କୁ ଗୌତମ ବୁଦ୍ଧ ରୂପେ ଗ୍ରହଣ ନକରି ଆଦି ବୁଦ୍ଧ ରୂପେ ଗ୍ରହଣ କରିବା ପ୍ରଶଂସାର୍ହ ।

[ଏ ଲେଖକଙ୍କ ଦ୍ୱାରା ବହୁ ପୂର୍ବରୁ ବିଶଦ ଭାବେ ଆଲୋଚିତ ନିମ୍ନୋକ୍ତ ନିବନ୍ଧ ଦ୍ରଷ୍ଟବ୍ୟ ।

(୧) "ଶ୍ରୀଜଗନ୍ନାଥଙ୍କ ବୁଦ୍ଧାବତାର" ('ମହାପ୍ରଭୁ' ୩ୟ ବର୍ଷ ୪ର୍ଥ ସଂଖ୍ୟା, 'ଫାଲ୍‌ଗୁନି' ରଥ ସଂଖ୍ୟା ୧୯୮୫) ।

(୨) "ରଥ, ରଥୀ ଓ ବୌଦ୍ଧବାଦ" ('ମହାପ୍ରଭୁ' ୩ୟ ବର୍ଷ ୩ୟ ସଂଖ୍ୟା, 'ଝଙ୍କାର' ରଥ ସଂଖ୍ୟା ୧୯୮୬) ।

(୩) "Buddhavatar of Lord Jagannath" (Orissa Review June 1985).

(୪) The Origin of Carfestival of Lord Jagannath"–Orissa Review July 1984.

(୫) "Car festival and the Buddhist fallacy" –Orissa Review July 1991]

ଜ୍ଞାନ ଅଜ୍ଞାନ, ଆଲୋକଅନ୍ଧାର, ଦିବସ ଯାମିନୀ ପରି ପରଂବ୍ରହ୍ମଙ୍କର ନିର୍ଗୁଣ ସଗୁଣବାଦ ଓ ଅଭିନ୍ନ । ନିର୍ଗୁଣ ଓ ସଗୁଣବାଦ ବ୍ରହ୍ମପକ୍ଷୀର ଦୁଇଟି ପକ୍ଷ ବା ଚକ୍ଷୁ ସଦୃଶ । ଏକ ପକ୍ଷରେ ପକ୍ଷୀର ଗତି ଅସମ୍ଭବ । ଏକ ଚକ୍ଷୁ ନଷ୍ଟ ହେଲେ ପକ୍ଷୀଟି କଣା ଓ ଦୁଇଟି ଚକ୍ଷୁ ନଷ୍ଟ ହେଲେ ଅନ୍ଧ । ସ୍ୱାଭାବିକ ବା ପ୍ରାକୃତ ଅର୍ଥରେ ନିର୍ଗୁଣକୁ ବାଷ୍ପ ରୂପେ କଳ୍ପନା କଲେ ହିମ ବା ବରଫ ସଗୁଣର ପରିପ୍ରକାଶ ମାତ୍ର ।

ଶ୍ରୀଜଗନ୍ନାଥ ବାଷ୍ପ ଓ ହିମର ମଧ୍ୟବର୍ତ୍ତୀକାଳୀନ ଜଳ ସଦୃଶ । ଜଳ ଯେଉଁ ପାତ୍ରରେ ରହେ ସେ ପାତ୍ରର ଆକାର ଧାରଣ କରେ । ସେହିପରି ଶ୍ରୀଜଗନ୍ନାଥ ଭକ୍ତ ରୁଚି ଓ ଉପଲବ୍ଧିର ବୈଷମ୍ୟରେ ବିଭିନ୍ନ ରୂପରେ ବିଭାସିତ । ସେ ନିର୍ଗୁଣ ଓ ସଗୁଣବାଦର ମଧ୍ୟବର୍ତ୍ତୀ ସେତୁ । ଶ୍ରୀଜଗନ୍ନାଥ ପ୍ରତିମା ନୁହନ୍ତି, ପ୍ରତୀକ । ନିର୍ଗୁଣ ବ୍ରହ୍ମର ଏକ ସାଙ୍କେତିକ ତଥା ପରିପୂର୍ଣ୍ଣତମ ତାତ୍ତ୍ୱିକ କଳେବର । ନିରାକାର ବ୍ରହ୍ମର ସର୍ବଶ୍ରେଷ୍ଠ ସାକାର ଅଭିବ୍ୟକ୍ତି । ସେ ନିର୍ଗୁଣ ହୋଇ ବହୁ ସଗୁଣବାଦରେ ବିଭାସିତ । ସୁବର୍ଣ୍ଣରୁ ବିବିଧ ଅଳଙ୍କାର ନିର୍ମିତ ହେବାପରି ଶ୍ରୀଜଗନ୍ନାଥଙ୍କ ଶ୍ରୀଅଙ୍ଗରୁ ଆଜ୍ଞାମାଳ ପ୍ରାପ୍ତି ପରେ ସମସ୍ତ ଅବତାରଙ୍କର ଜନ୍ମୋତ୍ସବ ଓ ଲୀଳା ବିଳାସ ଶ୍ରୀମନ୍ଦିରରେ ଅନୁଷ୍ଠିତ ହୋଇଥାଏ ।

ସେ କେତେବେଳେ ଶଙ୍ଖ, ଚକ୍ର ଧାରଣ କରି ଐଶ୍ୱର୍ଯ୍ୟ ପୁରୁଷୋତ୍ତମ ବୈକୁଣ୍ଠାଧିପତି ଶ୍ରୀମାନ୍ ନାରାୟଣ ତ' କେତେବେଳେ ସୁବର୍ଣ୍ଣ ମକର କୁଣ୍ଡଳ ଓ ଚନ୍ଦ୍ରିକା ଧାରଣ କରି ପ୍ରେମ ପୁରୁଷୋତ୍ତମ ବ୍ରଜେନ୍ଦ୍ର ନନ୍ଦନ ରାଧାଧବ । ଶିରୋପରେ ଶ୍ୱେତଛତ୍ର ଓ ପଦପ୍ରାନ୍ତେ ସେବାରତ ହନୁମାନ ସହିତ ସ୍ୱୟଂ ମର୍ଯ୍ୟାଦା ପୁରୁଷୋତ୍ତମ ଜାନକୀବଲ୍ଲଭ ଶ୍ରୀରାମଚନ୍ଦ୍ର ତ', କମଣ୍ଡଳୁ ଓ ଛତ୍ର ଧାରଣ କରି ବଳିଦ୍ୱାରରେ ବାମନ ବ୍ରାହ୍ମଣ । ଦେବସ୍ନାନ ପୂର୍ଣ୍ଣମୀରେ ହସ୍ତୀ ବେଶ ଧାରଣ କରି ପ୍ରଣବ ରୂପୀ ଗଣେଶ ଭଗବାନ । ଅରୂପ ଅଲେଖ ପରଂବ୍ରହ୍ମଙ୍କର ଏତାଦୃଶ ବିବିଧ ଲୀଳା ବିଳାସ ଭକ୍ତ ଚିତ୍ତ ବିନୋଦନ ପାଇଁ ଉଦ୍ଦିଷ୍ଟ । ଅବତାରଗଣ ଶ୍ରୀଜଗନ୍ନାଥଙ୍କ ଶ୍ରୀଅଙ୍ଗରୁ ଜନ୍ମଲାଭ କରି ଧର୍ମ ସଂସ୍ଥାପନା ଓ ଲୀଳା ବିଳାସାନ୍ତେ ପୁନର୍ବାର ତାଙ୍କ ଦିବ୍ୟାତିଦିବ୍ୟ କଳେବରକୁ ପ୍ରତ୍ୟାବର୍ତ୍ତନ କରନ୍ତି । ସୃଷ୍ଟି, ସ୍ଥିତି ଓ ଲୟ ତ୍ରୈଲୋକ୍ୟ ଚିନ୍ତାମଣି ନିଳାଦ୍ରିନାଥଙ୍କ ନିତ୍ୟ ରାସୋତ୍ସବ ।

(କ)

ନିର୍ଗୁଣ ସଗୁଣବାଦ୍ ଅଭେଦ ଅଭିନ୍ନ ।
ଜ୍ଞାନାଜ୍ଞାନ, ତମଜ୍ୟୋତି ଯଥା ରାତ୍ରିଦିନ ॥
ବେନି ଚକ୍ଷୁ ଅବା ପକ୍ଷ ବ୍ରହ୍ମ ବିହଙ୍ଗର ।
ସଦା ସହଯୋଗ ଲୋଡ଼େ ଏକ ଆନେକର ॥
ଏକପକ୍ଷେ ବିହଙ୍ଗମ ଜୀବନ ନିବନ୍ଧ ।
ଏକ ଚକ୍ଷୁ ଗଲେ କଣା, ଦୁଇ ଗଲେ ଅନ୍ଧ ॥
ବାଷ୍ପରୂପ ନିର୍ଗୁଣ, ସଗୁଣ ହିମ ରୂପ ।
ଜଳରୁ ଉତ୍ପତ୍ତି ସର୍ବ ଅରୂପ ସରୂପ ॥
ଯେଉଁ ପାତ୍ରେ ରହେ ଜଳ ସେ ପାତ୍ର ଆକୃତି ।
ନୀଳାଦ୍ରି କନ୍ଦରାନନ୍ଦ ଧରେ ନାନା ମୂର୍ତ୍ତି ॥

(ଖ)

ନିର୍ଗୁଣ ସଗୁଣବାଦ ସେତୁ ଜଗନ୍ନାଥ ।
ନିର୍ଗୁଣ ବ୍ରହ୍ମ ସଗୁଣ ରୂପେ ରୂପାୟିତ ॥
ସୁବର୍ଣ୍ଣରୁ ହୁଏ ଯଥା ନାନା ଅଳଙ୍କାର ।
ନୀଳାଦ୍ରି ଚନ୍ଦ୍ରମା ଅଙ୍ଗୁ ସର୍ବ ଅବତାର ॥
ଦକ୍ଷିଣ ଭୁଜରୁ ଆଜ୍ଞାମାଳ ହେଲେ ପ୍ରାପ୍ତି ।
ଅବତାର ପୁରୁଷ ସକଳ ସମ୍ଭବନ୍ତି ॥
ରାମ, କୃଷ୍ଣ, ବାମନ, ନୃସିଂହ, ବଳରାମ ।
ଅବତାରୀ ଜଗନ୍ନାଥ ଶ୍ରୀଅଙ୍ଗୁ ଜନମ ॥

(ଗ)

ଶଙ୍ଖ ଚକ୍ର ଧରି ହସ୍ତେ ବୈକୁଣ୍ଠାଧିପତି ।
ସ୍ୱର୍ଣ୍ଣ ଚନ୍ଦ୍ରିକା କୁଣ୍ଡଳେ ଶୋହେ ରାଧାପତି ॥
ଶିରେ ଶ୍ୱେତଛତ୍ର, ପଦ ପ୍ରାନ୍ତେ ହନୁମାନ ।
ଅଯୋଧ୍ୟାପତି ବିଜୟେ ରତ୍ନ ସିଂହାସନ ॥
ଖର୍ବାକାର ବିପ୍ର କମଣ୍ଡଳୁ ଛତ୍ର କରେ ।
ବାମନ ରୂପେ ବିଜୟେ ବଳିରାଜା ଦ୍ୱାରେ ॥
ହସ୍ତୀ ବେଶେ ଶୋହେ ସ୍ନାନ ମଣ୍ଡପେ ଗଣେଶ ।
ଅରୂପ ବ୍ରହ୍ମର ବହୁ ସ୍ୱରୂପ ପ୍ରକାଶ ॥
ଧର୍ମ ସଂସ୍ଥାପନା କରି ଲୀଳା ବିଳାସରେ ।
ବାହୁଡ଼ନ୍ତି ଅବତାର ନୀଳାଦ୍ରି କନ୍ଦରେ ॥
ଭକ୍ତ ବାଞ୍ଛା କଳ୍ପତରୁ ତ୍ରୈଲୋକ୍ୟ ମୋହନ ।
ଅବତରେ ବହୁ ରୂପେ ଭକ୍ତ–ବିନୋଦନ ॥
ସୃଷ୍ଟି ସ୍ଥିତି ବିଲୟର ନିତ୍ୟ ରାସୋତ୍ସବ ।
ନୀଳାଦ୍ରି କନ୍ଦରାନନ୍ଦ ନିର୍ଦ୍ଦେଶେ ସମ୍ଭବ ॥

–('ଅବତାରୀ ନୀଳାଦ୍ରି ଚନ୍ଦ୍ରମା'
–ଇଞ୍ଜିନିୟର ରଘୁନାଥ ପାତ୍ର
ଅପ୍ରକାଶିତ ପାଣ୍ଡୁଲିପିରୁ)

"ପ୍ରଳୟ ଶେଷରେକଲ୍ପ, ତୁମରି ସଙ୍କଳ୍ପ ।
ନୂତନ ସୃଷ୍ଟିର ସ୍ୱପ୍ନ, ନୁହେଁ ମିଛ-ଗଳ୍ପ ।।"

–('ଦଶାବତାର'–ପ୍ରହରାଜ ସତ୍ୟନାରାୟଣ ନନ୍ଦ)

"ଦଶଅବତାର ଲୀଳା ଯାତ୍ରା ବିରଚନ ।
ଜନଙ୍କୁ ଦେଖାନ୍ତି ଯୁଗାନ୍ତର କଥାମାନ ।"
–(କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ–ଉପେନ୍ଦ୍ରଭଞ୍ଜ)

ସମ୍ପାଦକ 'ମହାପ୍ରଭୁ',
ବୃନ୍ଦାବନ ଧାମ ।,
ଲୋକନାଥ ରୋଡ୍,
ପୁରୀ–୭୫୨୦୦୧ ।



ଡକ୍ଟର ସୂର୍ଯ୍ୟନାରାୟଣ ଦାସ

ଶ୍ରୀ ମନ୍ଦିରରେ ଠାକୁରମାନଙ୍କୁ ସମର୍ପିତ ଭୋଗକୁ ମହାପ୍ରସାଦ କୁହାଯାଏ । ଅଥଚ ଅନ୍ୟ ସାଧାରଣ ମନ୍ଦିରମାନଙ୍କର ଭୋଗକୁ କେବଳ ପ୍ରସାଦ କୁହାଯାଇଥାଏ । ଏହି 'ମହାପ୍ରସାଦ' ଶବ୍ଦର ତାତ୍ପର୍ଯ୍ୟ ଅତି ଗୁରୁତ୍ୱପୂର୍ଣ୍ଣ । ଶ୍ରୀଜଗନ୍ନାଥଙ୍କୁ ଯେଉଁ ଅନ୍ନ ଭୋଗ ଅର୍ପଣ କରାଯାଏ ତାହା ସାଧାରଣ ଅନ୍ନ ନୁହେଁ, 'ଅନ୍ନ-ବ୍ରହ୍ମ' ବା 'ବ୍ରହ୍ମାନ୍ନ' । ଏହା ଏକ ତାନ୍ତ୍ରିକ ପରମ୍ପରା ସଂଶ୍ଳିଷ୍ଟ ଉପଶ୍ୱର ବିଶେଷ । 'ମହାନିର୍ବାଣ ତନ୍ତ୍ର'ରେ ଉଲ୍ଲେଖ ଅଛି–

"ଏବଂ ସଂପୂଜ୍ୟ ମତିମାନ୍ ପୂଜନୈଃ ବାନ୍ଧବୈଃ ସହ
ମହାପ୍ରସାଦଂ ସ୍ୱୀକୁର୍ଯ୍ୟାଦ୍ ବ୍ରାହ୍ମଣଃ ପରମାସନଃ ।"

ଶ୍ରୀମନ୍ଦିରର ପ୍ରସାଦ ତିନିବ୍ରହ୍ମଙ୍କର ମିଳନାବସ୍ଥାରେ (ଅର୍ଥାତ୍ ସ୍ୱତନ୍ତ୍ର ଭାବରେ ରନ୍ଧା ଯାଇଥିବା 'ଅନ୍ନବ୍ରହ୍ମ' 'ଦାରୁବ୍ରହ୍ମ' ଜଗନ୍ନାଥଙ୍କୁ ଭୋଗ ଲାଗିଲା ପରେ ବ୍ରହ୍ମରୂପିଣୀ ବିମଳାଙ୍କୁ ଅର୍ପଣ କରାଯାଉଥିବାରୁ) ମହାପ୍ରସାଦ ରୂପେ ପରିଗଣିତ ହୁଏ । 'ମହାପ୍ରସାଦ'ର ପ୍ରସ୍ତୁତ ପ୍ରଣାଳୀ ଓ ଏହାର ମହାନ୍ ତାତ୍ତ୍ୱିକ ବିଧିବିଧାନ ଆମର ପ୍ରାଚୀନ ପରମ୍ପରା ଓ ସଂସ୍କାରକୁ ଭିତ୍ତି କରି ଗଢ଼ିଉଠିଛି । ତେବେ, ମହାନିର୍ବାଣ ତନ୍ତ୍ରୋକ୍ତ ବ୍ରହ୍ମାନ୍ନଠାରୁ ଶ୍ରୀମନ୍ଦିରର ମହାପ୍ରସାଦ ଅଧିକ ପବିତ୍ର, ଅଧିକ ମହିମାନ୍ୱିତ । ଏଠାରେ ଷଡ଼ଙ୍ଗ ସଂସ୍କାର ଦ୍ୱାରା ଅନ୍ନତ୍ୱର ବିଲୋପ ସାଧନ କରାଯାଉଛି ଏବଂ ବ୍ରହ୍ମତ୍ୱ ଆରୋପିତ ହେଉଛି । ଏହି ଷଡ଼ଙ୍ଗ ସଂସ୍କାର ହେଉଛି (୧) ଏହା ସ୍ୱୟଂ ମହାଲକ୍ଷ୍ମୀଙ୍କ ଦ୍ୱାରା ବୈଷ୍ଣବାଗ୍ନିରେ ରନ୍ଧନ କରାଯାଏ, (୨) ଶ୍ରୀ ଯନ୍ତ୍ର ଅଙ୍କିତ ସ୍ୱର୍ଣ୍ଣ ପାତ୍ରରେ ପରିବେଷିତ ହୁଏ, (୩) ଏହାକୁ ଦ୍ୱାତ୍ରିଂଶାକ୍ଷରୀ ପାତାଳ ନୃସିଂହ ମନ୍ତ୍ରରେ ପ୍ରୋକ୍ଷଣ କରାଯାଏ, (୪) ଅଷ୍ଟାଦଶାକ୍ଷରୀ ଗୋପାଳ ମନ୍ତ୍ରରେ ଅର୍ପିତ କରାଯାଏ, (୫) ଭୈରବୀ ଚକ୍ର ଉପରେ ଜଗନ୍ନାଥଙ୍କୁ ପ୍ରଦତ୍ତ ହୁଏ ଏବଂ (୬) ଉଚ୍ଛିଷ୍ଟ ଭୈରବୀ ରୂପିଣୀ ବିମଳାଙ୍କୁ ସମର୍ପିତ ହୋଇ ତାପରେ ବିଶ୍ୱକୁ ସନ, ଶୁକ, ପ୍ରହ୍ଲାଦ, ନାରଦ, ହନୁମାନ, ବୈନତେୟ, ଦେବଳ ଓ ଇନ୍ଦ୍ରଦ୍ୟୁମ୍ନାଦି ପଞ୍ଚ ବୈଷ୍ଣବଙ୍କୁ ପ୍ରଦାନ କରାଯାଏ ।

ଏଠାରେ ଯେଉଁ ବୈଷ୍ଣବାଗ୍ନି ସଂସ୍କାର କରାଯାଏ ତାହା ମଧ୍ୟ ପ୍ରାଚୀନ ତାନ୍ତ୍ରିକ ପଦ୍ଧତି ଅନୁସାରେ ଅନୁଷ୍ଠିତ ହୁଏ । ନବଚଣ୍ଡି ଯନ୍ତ୍ର ଉପରେ ଅଗ୍ନି ସଂସ୍କାର କରାଯାଏ । ଷଟ୍‌କୋଣାତ୍ମକ ଅଗ୍ନିଯନ୍ତ୍ର ସ୍ଥାପିତ ହୁଏ । ଶ୍ରୀ ମନ୍ଦିରର ଅଗ୍ନିକୁଣ୍ଡ (ଚୁଲି) ମାନଙ୍କରେ ଛଅ ଗୋଟି ଝିଙ୍କା ଥାଏ ଏବଂ ଥରକେ ନଅ ଗୋଟି ହାଣ୍ଡି (କୁଡୁଆ) ବସାଯାଏ । ଏହାଦ୍ୱାରା 'ଶାରଦାତିଳକ' ଗ୍ରନ୍ଥର "ମହତ୍ତ୍ୱ ନବ ଗୁଣିତକମ୍" ଉକ୍ତିର ସାର୍ଥକତା ପ୍ରତିପାଦିତ ହୁଏ ।

'ଭୈରବୀ ଚକ୍ର'ରେ ଜଗନ୍ନାଥଙ୍କୁ ଯାହା ପ୍ରଦତ୍ତ ହୁଏ ସେ ସମ୍ପର୍କରେ 'କୁଳାର୍ଣ୍ଣବ ତନ୍ତ୍ର' କହେ–"ପ୍ରବୃତ୍ତେ ଭୈରବୀ ଚକ୍ରେ ସର୍ବେ ବର୍ଣ୍ଣା ଦ୍ୱିଜାତୟଃ ।" ଅର୍ଥାତ୍ ସମସ୍ତ ଜାତିବର୍ଣ୍ଣ ଏକାକାର ହୋଇ ଯାଆନ୍ତି । ଏଣୁ ଜଗନ୍ନାଥଙ୍କ ସିଂହାସନରେ ଗୋଟାଏ ଭୈରବ ଖୋଳା ହୋଇଛି ଏବଂ ଯେଉଁଠି ଭୋଗ ବଢ଼ାଯାଏ ସେ ସ୍ଥାନକୁ ଭୈରବୀ ଚକ୍ର କୁହାଯାଉଛି ।

ସର୍ବୋପରି, ମହାଲକ୍ଷ୍ମୀ ଏହାକୁ ପାକ କରିବା ବିଷୟରେ ବିଭିନ୍ନ ପ୍ରାଚୀନ ପୁରାଣରେ ଶାସ୍ତ୍ରୋକ୍ତିମାନ ରହିଛି । ତନ୍ମଧ୍ୟରୁ କେତୋଟି ହେଉଛି–

"ବୈଷ୍ଣବୀ ଶକ୍ତିରତୁଳା ବିଷ୍ଣୁଦେହାର୍ଦ୍ଧ ଧାରିଣୀ
ସୁଧୋପମ ପଚତ୍ୟନ୍ନଂ ଭୁଙ୍‌କ୍ତେ ନାରାୟଣ ପ୍ରଭୁଃ ।"
(ସ୍କନ୍ଦପୁରାଣ–ଉତ୍କଳ ଖଣ୍ଡ)

"ତଦାନ୍ନ ପାଚିକା ଲକ୍ଷ୍ମୀଃ ସ୍ୱୟଂ ଭୋକ୍ତା ଜନାର୍ଦ୍ଦନଃ
ତସ୍ମାତ୍ତଦନ୍ନଂ ବିପ୍ରର୍ଷେ ଦୈବତୈରପି ଦୁର୍ଲ୍ଲଭମ୍ ।"
(ପଦ୍ମପୁରାଣ)

"ଯଦନ୍ନଂ ପାଚୟେ ଲକ୍ଷ୍ମୀର୍ହରୟେ ପରିବେଶନମ୍
ତଦୁଚ୍ଛିଷ୍ଟଂ ହାରେର୍ଭୁକ୍ତ୍ୱା କଃ ସଂସରତି ପାର୍ବତୀ ।"
(ରୁଦ୍ରଯାମଳ)

ମଧ୍ୟଯୁଗର ସନ୍ଧିକ୍ଷଣରେ ଯେତେବେଳେ ଜାତିଭେଦ ପ୍ରଥା ଉତ୍କଟ ଆକାର ଧାରଣ କରି ସେହି ସମୟରେ ହିନ୍ଦୁଧର୍ମର ସୁରକ୍ଷା ନିମିତ୍ତ ନବଜାଗ୍ରତ ହିନ୍ଦୁସମାଜର ପ୍ରଥମ ପଦକ୍ଷେପ ଥିଲା– ବ୍ରହ୍ମୋପାସନା ଏବଂ ଦ୍ୱିତୀୟ ପଦକ୍ଷେପ– ବ୍ରହ୍ମାନ୍ନ ବା ମହାପ୍ରସାଦ । ଜଗନ୍ନାଥ ମନ୍ଦିରରେ 'ମହାପ୍ରସାଦ' (ଅନ୍ନଭୋଗ)

ପ୍ରଚଳନ ସମ୍ବନ୍ଧରେ ଜଣାଯାଏ ଯେ ସର୍ବପ୍ରଥମେ ଯଯାତି କେଶରୀ (୯୨୨-୯୫୫) ପ୍ରାଚୀନ ପରମ୍ପରା ପ୍ରତି ସମ୍ମାନ ପ୍ରଦର୍ଶନ ପୂର୍ବକ ଏହା ବ୍ୟାପକ ଭାବେ ପ୍ରଚଳନ କରିଥିଲେ । ଅନଙ୍ଗଭୀମ ଦେବ (୧୧୯୦-୯୮) ଭୋଗ ପରିମାଣ ବଢ଼ାଇ ଥିଲେ । କଳାପାହାଡ଼ ଆକ୍ରମଣ ବେଳେ ଶ୍ରୀ ମନ୍ଦିରରେ ନିପର୍ଖୁଡ଼ି ଭୋଗ ଲାଗୁଥିଲା । ଭୋଇବଂଶ ରାଜା ରାମଚନ୍ଦ୍ର ଦେବ ଓ ନରସିଂହ ଦେବଙ୍କ ସମୟରେ ଛଗିତ ରହିଥିବା ଅନ୍ନଭୋଗ ପୁନଃପ୍ରବର୍ତ୍ତିତ ହୋଇଥିଲା । ବିମଳ କୃଷ୍ଣ ପାଲ୍‌ଙ୍କ ଭାଷାରେ, "ମହାନିର୍ବାଣ ତନ୍ତ୍ର ଶ୍ରେଷ୍ଠ କୀର୍ତ୍ତିସ୍ଥାପନ କଲେ ବ୍ରହ୍ମୋପାସନା ଓ ବ୍ରହ୍ମଅନ୍ନ ବା ମହାପ୍ରସାଦ ପ୍ରତିଷ୍ଠାରେ । ଏହି ମହାପ୍ରସାଦ ହିଁ ନବଜାଗ୍ରତ ହିନ୍ଦୁସମାଜର ପ୍ରାଣଶକ୍ତି ରୂପରେ କାର୍ଯ୍ୟକଲା । କହିବା ବାହୁଲ୍ୟ, ମହାନିର୍ବାଣ ତନ୍ତ୍ରର ବ୍ରହ୍ମ ମହାପ୍ରସାଦ ଅପେକ୍ଷା ସ୍କନ୍ଦପୁରାଣ ଉତ୍କଳଖଣ୍ଡରେ ବର୍ଣ୍ଣିତ ପୁରୁଷୋତ୍ତମ କ୍ଷେତ୍ରରେ ଶ୍ରୀ ଜଗନ୍ନାଥଙ୍କର ମହାପ୍ରସାଦ ଜୀବନର ସବୁ କ୍ଷେତ୍ରରେ ଅଧିକତର ଆକର୍ଷଣକାରୀ । ଆକର୍ଷଣ ଶକ୍ତିରେ ଶ୍ରୀ ଜଗନ୍ନାଥଙ୍କର ମହାପ୍ରସାଦ ବ୍ରହ୍ମଅନ୍ନକୁ ସର୍ବତୋ ଭାବରେ ପରାସ୍ତ କରି ତାହାର ଏକଛତ୍ରାଧିପତ୍ୟ ସାରାଭାରତରେ ସ୍ଥାପନ କରିଅଛି ।"

ମହାପ୍ରସାଦ ମୁଖ୍ୟତଃ ସଖୁଡ଼ି ଭୋଗ ଓ ନିପର୍ଖୁଡ଼ି ଭୋଗ ଭେଦରେ ଦ୍ୱିବିଧ । ଅନ୍ନ, କାନିକା, ଡ଼ାଲମା, ଖଟା, ବେସର, ମହୁର, ଶାଗ ପ୍ରଭୃତି ସଖୁଡ଼ି ମହାପ୍ରସାଦ । ବିଭିନ୍ନ ପ୍ରକାର ଛପନ ଭୋଗକୁ 'ଛପନ ପଉଟି' ଭୋଗ କୁହାଯାଏ । ଦେବତାଙ୍କୁ ଅର୍ପିତ ଅନ୍ନ ବିସର୍ଜନ ପରେ ଅର୍ଥାତ୍ ଶୁଷ୍କ ଅନ୍ନକୁ 'ନିର୍ମାଲ୍ୟ' କୁହାଯାଏ । ଅତି ଭକ୍ତି ଭାବର ସହ ଦୁଇ ଆଙ୍ଗୁଠିରେ ଯାହା କଣିକାଏ ମାତ୍ର ସେବନ କରାଯାଏ, ତାହା 'କୈବଲ୍ୟ' । ମହାପ୍ରସାଦ (ଅନ୍ନଭୋଗ) ଭୁରି ଭୋଜନ କରାଯାଏ, 'କୈବଲ୍ୟ' କଣିକାଏ ମାତ୍ର ଯଥେଷ୍ଟ । କୈବଲ୍ୟ ଶରୀରରେ ଲୀନ ହୋଇଯାଏ ଓ ମଳମୂତ୍ର ଆକାରରେ ବାହାରକୁ ନିର୍ଗତ ହୁଏ ନାହିଁ ବୋଲି ବିଶ୍ୱାସ କରାଯାଏ ।

ପୂର୍ବେ 'ନିର୍ମାଲ୍ୟ' କହିଲେ, ମହାପ୍ରସାଦ, ଶୁଷ୍କ ମହାପ୍ରସାଦ, ମହାଲକ୍ଷ୍ମୀ ଫୁଲ, ଶିରିକା ପତ୍ର, ସଉରୀ ବେତ, ଜଗନ୍ନାଥ ପଟି ଓ ଖାଡ଼ୀଶିରିପା– ଏହି ସାତୋଟି ପଦାର୍ଥକୁ ବୁଝାଉଥିଲା । କିନ୍ତୁ ଏବେ କେବଳ 'ଶୁଷ୍କ ମହାପ୍ରସାଦ'କୁ ସାଧାରଣତଃ 'ନିର୍ମାଲ୍ୟ' ରୂପେ ଗ୍ରହଣ କରାଯାଏ । ଆଗେ ଏ ସମସ୍ତ ପଦାର୍ଥ ଆନନ୍ଦ ବଜାରରେ ବିକ୍ରି କରାଯାଉଥିଲା । ଏହି ବିକ୍ରି ବ୍ୟବସ୍ଥା ଅଦ୍ୟାବଧି ପ୍ରଚଳିତ ଅଛି ।

ଜଗନ୍ନାଥ ଦର୍ଶନରେ କୈବଲ୍ୟ ଚେତନା ସମ୍ପ୍ରତି ଅଧିକ ସମ୍ପ୍ରସାରିତ ହୋଇଯାଇଛି । ସ୍ୱୟଂ ଜଗନ୍ନାଥ 'କୈବଲ୍ୟ ପତି' ରୂପେ ମଧ୍ୟ ଗୃହୀତ । ଶ୍ରୀମଦ୍ ଭାଗବତରେ କୁହାଯାଇଛି–

"ନମୋଽକିଞ୍ଚନ ବିତ୍ତାୟ ନିବୃତ୍ତ ଗୁଣବୃତ୍ତୟେ
ଆତ୍ମାରାମାୟ ଶାନ୍ତାୟ କୈବଲ୍ୟ ପତୟେ ନମଃ ।"

ଉତ୍କଳ ବ୍ୟାସ ଜଗନ୍ନାଥ ଦାସ ଏହି 'କୈବଲ୍ୟ ଭାବ'ର ଶ୍ରେଷ୍ଠ ଦ୍ୟୋତକ ଥିଲେ । 'ହରେର୍ନାମୈବ କେବଳଂ' ତଥା ଭଗବାନଙ୍କ ନାମକୁ ସର୍ବଶ୍ରେଷ୍ଠ କୈବଲ୍ୟ ରୂପେ ଗ୍ରହଣ କରାଯାଇଛି । ଏଣୁ 'ପ୍ରସାଦ କୈବଲ୍ୟ' ପରେ 'ଭକ୍ତି କୈବଲ୍ୟ' ଓ 'ନାମ-କୈବଲ୍ୟ' କୈବଲ୍ୟ ଚେତନାର ସଂପ୍ରସାରିତ ରୂପ । ସଂପ୍ରତି 'ପ୍ରୀତି କୈବଲ୍ୟ', 'କୈବଲ୍ୟ – ବୈକୁଣ୍ଠ' (କୋଇଲି ବୈକୁଣ୍ଠ', 'ଛାଇ କୈବଲ୍ୟ' ଆଦି ଭାବରେ ଏହି ଚେତନା ବହୁଧା ପ୍ରସାରିତ । (୨)

'ନୀଳାଚଳ ମାହାତ୍ମ୍ୟ'ରେ ଉଲ୍ଲେଖ ଅଛି ଯେ ସ୍ୱୟଂ ଲକ୍ଷ୍ମୀ ନାରୀ ବେଶରେ ମହାପ୍ରସାଦ ପ୍ରାପ୍ତି ଆଶାରେ ବୈକୁଣ୍ଠପୁରିକୁ ପ୍ରତ୍ୟୁଷରୁ ଓଳାଉଥିଲେ ଏବଂ ଲକ୍ଷ୍ମୀ ତାଙ୍କୁ ଦେଖିପାରି ତାଙ୍କ ଅଭିଳାଷ ପୂରଣ କରିଥିଲେ । ଅନ୍ୟ ଏକ ପୌରାଣିକ ଆଖ୍ୟାୟିକା ଅନୁଯାୟୀ ବ୍ରଜପୁରରେ ଶ୍ରୀ ରାଧାଙ୍କ ସ୍ୱହସ୍ତ ବ୍ୟଞ୍ଜନ ଶ୍ରୀକୃଷ୍ଣ ଭୋଜନ କରୁଥିଲେ । ଦିନେ' ନାରଦ ଏଠାରୁ ଶ୍ରୀକୃଷ୍ଣଙ୍କ ଉଚ୍ଛିଷ୍ଟରୁ କିଛି ପାଇ କୈଳାସକୁ ଫେରି ଯାଉଥିଲେ । ସେଠାରେ ଶିବ ନାରଦଙ୍କ ଦାଢ଼ିରେ ଲାଗିଥିବା କଣିକାଏ ପ୍ରସାଦ ପାଇ ତୃପ୍ତି ହୋଇଥିଲେ, କିନ୍ତୁ ସେଥିରୁ ଗୌରୀଙ୍କୁ ମାଗିବାରୁ ଦେଲେନାହିଁ । ତେଣୁ ଗୌରୀ ଶ୍ରୀକୃଷ୍ଣଙ୍କୁ ଧ୍ୟାନକରି କଳିଯୁଗରେ ବିମଳା ରୂପରେ ସର୍ବଦା ଏହି ପ୍ରସାଦ ପାଇବେ ବୋଲି ବରଲାଭ କରିଥିଲେ ।

ମୂକ ବ୍ୟକ୍ତି କିପରି ମହାପ୍ରସାଦ ବଳରେ କଥା କହିବାକୁ ସମର୍ଥ ହୁଏ, ଦୁରାରୋଗ୍ୟ ରୋଗୀ କିପରି ମହାପ୍ରସାଦ ପାଇ ଆରୋଗ୍ୟ ହୁଏ, ମହାପ୍ରସାଦର ନିନ୍ଦୁକମାନେ କିପରି ଦୈବଦଣ୍ଡ ଭୋଗ କରନ୍ତି ଇତ୍ୟାଦି ଅନେକ ଆଖ୍ୟାୟିକା ଓ କିମ୍ବଦନ୍ତୀ 'ଜଗନ୍ନାଥ ବୈଚିତ୍ର୍ୟ', ଦାର୍ଢ୍ୟତାଭକ୍ତି', 'ଶ୍ରୀଜଗନ୍ନାଥ ଓ ଶ୍ରୀଗୌରାଙ୍ଗ' ପ୍ରଭୃତି ପୁସ୍ତକରେ ବର୍ଣ୍ଣିତ ହୋଇଛି ।

ମହାପ୍ରସାଦ ସେବନରେ ସ୍ଥାନ, କାଳ, ବିଚାର ନଥାଏ ; ଏହା ଦୂରଦୂରାନ୍ତକୁ ନିଆଯାଇ ପାରେ ; ଜାତିଧର୍ମ ନିର୍ବିଶେଷରେ ଆବ୍ରାହ୍ମଣ ଚଣ୍ଡାଳ ଏକତ୍ର ସେବନ କରିଥାନ୍ତି ; ଉଚ୍ଛିଷ୍ଟ ଅନୁଚ୍ଛିଷ୍ଟ ଭେଦ ଏଥିରେ ନଥାଏ ; ଶୁଷ୍କ, ପରିତ୍ୟକ୍ତ, ପକ୍ୱ, ସଡ଼ା ଇତ୍ୟାଦି ବିଚାର ମଧ୍ୟ କରାଯାଏ ନାହିଁ ; ଅଶୁଚି, ପାପଗ୍ରସ୍ତ, ଅନାଗ୍ରହୀ ସମସ୍ତେ ଏହାକୁ ପାଇବା ମାତ୍ରେ ବିନା ବିଚାରରେ ଭୋଜନ କରିବା ବିଧେୟ । ବିଧବା, ବ୍ରତ ପାଳନକାରୀ, ମନ୍ତ୍ରାଦି ଦୀକ୍ଷିତ ବ୍ୟକ୍ତି, ଅଗ୍ନିହୋତ୍ରୀ ସମସ୍ତେ ମହାପ୍ରସାଦ ସେବନ ଦ୍ୱାରା ପବିତ୍ର ହୋଇଥାଆନ୍ତି ।

ମହାପ୍ରସାଦର ଏବଂବିଧ ପବିତ୍ରତା ସମ୍ପର୍କରେ ମହାନିର୍ବାଣ ତନ୍ତ୍ର, ରୁଦ୍ରଯାମାଳ, ତନ୍ତ୍ରଚୂଡ଼ାମଣି ଆଦି ତନ୍ତ୍ରଶାସ୍ତ୍ର ସମେତ ବ୍ରହ୍ମ ପୁରାଣ, ବ୍ରହ୍ମବୈବର୍ତ୍ତ ପୁରାଣ, ପଦ୍ମପୁରାଣ, ଗରୁଡ଼ ପୁରାଣ, ବିଷ୍ଣୁ ପୁରାଣ, କୂର୍ମ ପୁରାଣ, ଭବିଷ୍ୟ ପୁରାଣ, ବାୟୁ ପୁରାଣ, କପିଳ ସଂହିତା, ବ୍ରହ୍ମ ସଂହିତା ଆଦି ସମସ୍ତ ପ୍ରାଚୀନ ଶାସ୍ତ୍ରରେ ପର୍ଯ୍ୟାପ୍ତ ବର୍ଣ୍ଣନା ଦେଖିବାକୁ ମିଳେ । 'ସ୍କନ୍ଦ ପୁରାଣ' ଉତ୍କଳ ଖଣ୍ଡ ୧୦ମ ଅଧ୍ୟାୟରେ ଉଲ୍ଲେଖ ରହିଛି–

"ସର୍ବଭୋଗ ପ୍ରଶମନଂ ପୁତ୍ରପୌତ୍ର ପ୍ରବର୍ଦ୍ଧକଃ
ଦାରିଦ୍ର୍ୟହରଣଂ ଶ୍ରେଷ୍ଠଂ ଦୀର୍ଘାୟୁ ଶ୍ରୀ ପଦଂ ଶୁଭଂ ।
ଚିରସ୍ଥଂ ଅପି ସଂଶୁଷ୍କଂ ନୀତଂ ବା ଦୂରଦେଶତଃ
ଯଥାତଥୋପଯୁକ୍ତଂ ତତ୍ ସର୍ବ ପାପା ପନୋଦନମ୍ ।
ଅଶୁଚିର୍ବା ସ୍ୟନାଗ୍ରରୋ ମନସା ପାପ୍ୟଚରନ୍
ପ୍ରାପ୍ତିମାତ୍ରେଣ ଭୋକ୍ତବ୍ୟଂ ନାତ୍ର କାର୍ଯ୍ୟ ବିଚାରଣା ।"

"କେଶୋଳସ୍ୟଂ ଗତଂ ତଦ୍ଧି ନିର୍ମାଲ୍ୟ ପତିତାଦସ୍ତୁଃ
ଛିଷ୍ୟନ୍ତଂ ନ ଦୁଷ୍ଟଂ ତଦ୍ ଯଥା ବିଷ୍ଣୁତଥୈବ ଚ ।"

ବୃହତ୍ପୁରାଣ'ରେ କୁହାଯାଇଛି—

"କୁକୁରସ୍ୟ ମୁଖାଦ୍‌ଭ୍ରଷ୍ଟଂମଦନ୍ନଂ ଯଦି ବାପ୍ୟତେ
ବ୍ରାହ୍ମଣୀନାଂ ତୁ ତଦ୍ ଭକ୍ଷ୍ୟଂ ଭାଗ୍ୟ ତୋ ଯଦି
ଲଭ୍ୟତେ ।"

ପୁନଶ୍ଚ, ମହାପ୍ରସାଦ ଜନ୍ମ ବିବାହ ଉଭୟ ପାଇଁ ପ୍ରଶସ୍ତ ବୋଲି ମଧ 'ସ୍କନ୍ଦ ପୁରାଣ' ପ୍ରଭୃତିରେ ଉଲ୍ଲେଖ ରହିଛି ।

"ବିବାହେଷୁ ଜନ୍ମୋ ବାପି ପ୍ରଶସ୍ତ ସ୍ୟ ଭୋ ଦ୍ୱିଜାଃ ।"

ଏଥିପାଇଁ ରାଗାନୁଗା ଭାବରେ ଭକ୍ତିପ୍ରବର ଦାମୋଦର ଗୋସ୍ୱାମୀ ଭାବ ବିହ୍ୱଳ ହୋଇ ଗାଇଥିଲେ—

"କୃତାର୍ଥୋହଂ କୃତାର୍ଥୋହଂ କୃତାର୍ଥୋହଂ ନ ସଂଶୟଃ
ଦେବ ଦେବ ଜଗନ୍ନାଥ ତବ ନିର୍ମାଲ୍ୟ ଭକ୍ଷଣାତ୍ ।"

(୧) ସମାଜ ଗୋପବନ୍ଧୁ ଶ୍ରାଦ୍ଧସଂଖ୍ୟା–୧୯୭୧ରେ 'ହିନ୍ଦୁଧର୍ମର ପ୍ରାଣଶକ୍ତି ମହାପ୍ରସାଦ' ଶୀର୍ଷକ ପ୍ରବନ୍ଧ ଦ୍ରଷ୍ଟବ୍ୟ ।

(୨) 'କୈବଲ୍ୟ' ୧୯୭୯ ଶ୍ରୀଗୁଣ୍ଡିଚା ବିଶେଷାଙ୍କରେ ଶ୍ରୀ ନିତ୍ୟାପର ନନ୍ଦଙ୍କ ପ୍ରବନ୍ଧ ଦ୍ରଷ୍ଟବ୍ୟ ।

---

*ଅତିରିକ୍ତ ସହକାରୀ ବାଣିଜ୍ୟ କର କମିଶନର,*
*ପୁରୀ ।*



*ରାଉରକେଲାସ୍ଥିତ ସେକ୍ଟର–୩ରୁ ଶ୍ରୀଶ୍ରୀଜଗନ୍ନାଥ ମନ୍ଦିରରୁ ତିନି ଦିଅଁ ଶ୍ରୀଗୁଣ୍ଡିଚା ମନ୍ଦିର ଅଭିମୁଖେ ତିନି ରଥରେ ଯାତ୍ରା କରୁଛନ୍ତି ।*



ସ୍ମରଣ ବସନ୍ତ ପଣ୍ଡା

ଗୁରୁଦେବ୍ୟ ଶାଳିନୀ ତୀର୍ଥ କରିଟିନୀ ଆର୍ଯ୍ୟ ଭୂମି ଭାରତ ବର୍ଷରେ ପ୍ରତିଷ୍ଠିତ ଧର୍ମକ୍ଷେତ୍ର (ପୀଠ)ମାନଙ୍କ ମଧ୍ୟରୁ ଚାରି ଗୋଟି ପ୍ରଧାନ ପୀଠ ଏହାର ଚତୁର୍ଦ୍ଦିଗରେ ଅବସ୍ଥିତ ।

ପୂର୍ବରେ:–ସଂକୀର୍ତ୍ତନ ପ୍ରଧାନ ବା ଶ୍ରୀ ପୁରୁଷୋତ୍ତମକ୍ଷେତ୍ର ଶ୍ରୀଜଗନ୍ନାଥ ।

ପଶ୍ଚିମରେ:–ଲିଳା ପୁରୁଷୋତ୍ତମ କୃଷ୍ଣଲିଳା ଭୂମି ଦ୍ୱାରକାଧାମ ।

ଉତ୍ତରରେ:–ବଦ୍ରିନାଥ ଧାମ ।

ଦକ୍ଷିଣରେ:– ମହିବା ପୁରୁଷୋତ୍ତମ ରାମନାଥ ଧାମ ।

ଉକ୍ତ କ୍ଷେତ୍ରମାନଙ୍କ ମଧ୍ୟରୁ ଶ୍ରୀ ପୁରୁଷୋତ୍ତମ କ୍ଷେତ୍ର (ଶ୍ରୀଜଗନ୍ନାଥ ଧାମ) ପୁରୀରେ ଶ୍ରୀ ଚୈତନ୍ୟଙ୍କ ଉକ୍ତି:–

"ଛାଡ଼ି ସକଳ ତୀର୍ଥ କ୍ଷେତ୍ର ॥
ନୀଳକନ୍ଦରେ ଜଗନ୍ନାଥ ।"

ଯେଉଁ ଅନାଦିକାଳରୁ ଷୋଡ଼ଶ କଳାର ଅବ୍ୟକ୍ତ, ବିରାଟ, ବ୍ରହ୍ମମୟ ପୁରୁଷ ସାଯୁଜ୍ୟ ମୁକ୍ତିପ୍ରଦ, ମନ୍ଦାକିନୀ ପରି ପବିତ୍ର ପାପ ବିକ୍ଷାଳକ "ଅଲୌକିକୀୟା ପ୍ରତିମା ଲୌକିକିତ ପ୍ରକାଶିତା" ହୋଇ ଦାରୁବ୍ରହ୍ମ ସ୍ୱରୂପରେ ସ୍ୱ ପ୍ରତିପାଦ ଇଷ୍ଟଭାବେ ପ୍ରତ୍ୟେକ, ଭାଷ୍ୟକାର, ଟିକାକାର, ସାଧୁ, ସନ୍ଥ, ଜ୍ଞାନୀ, ସମ୍ପ୍ରଦାୟ, ଦର୍ଶନ–ଶାଖା, ଆଧ୍ୟାତ୍ମିକ ମତବାଦୀଗଣଙ୍କୁ ଯେ କ୍ଷର ହେଲେ ମଧ୍ୟ ମୋ ପାଇଁ ଅକ୍ଷର, ଯାହାଙ୍କ ପ୍ରେରଣା ମୋତେ କରିଛି ଜଗନ୍ନାଥ ସର୍ବସ୍ୱ ସେହି ପୂଜ୍ୟପାଦ ଚରଣ ଶ୍ରୀମନ୍ଦିର ଗବେଷକ ପଣ୍ଡିତ ପ୍ରବର ସଦାଶିବ ରଥ ଶର୍ମା, ସ୍ମରଣ ମୁଖ୍ୟ କୁହନ୍ତି:–

ବୈଦିକ ବ୍ରହ୍ମ :–ଅନନ୍ତ, ଜ୍ଞାନ, ସତ୍ୟ
ବେଦାନ୍ତ ମାର୍ଗ :–ସାଧ୍ୟ, ସାଧନା, ସାଧକ
ଗୀତାତତ୍ତ୍ୱ :–ପୁରୁଷୋତ୍ତମ, ଅକ୍ଷର, କ୍ଷର
ପ୍ରଣବ ରହସ୍ୟ :–ମକାର, ଉକାର, ଅକାର, ଓଁ
ଯୋଗ ପୁରୁଷ :–ଅମାନବ ପୁରୁଷ, ବିଶ୍ୱର୍ଣ ପୁରୁଷ, ସର୍ବାଙ୍ଗସୁନ୍ଦ ପୁରୁଷ, ପୁରୁଷଃ ।
କୃଷ୍ଣ ପରମ ବ୍ରହ୍ମ :–କୃଷ୍ଣ, ଯୋଗମାୟା, ବଳରାମ ।
ବିଷ୍ଣୁ ଚତୁର୍ବ୍ୟୁହ :–ନାରାୟଣ, ପ୍ରଦ୍ୟୁମ୍ନ, ଚକ୍ର, ଅନିରୁଦ୍ଧ, ବାସୁଦେବ ।
ରାମ ବ୍ରହ୍ମ :–ଶ୍ରୀରାମ, ଜାନକୀ, ଲକ୍ଷ୍ମଣ ।
ଅଦ୍ୱୈତ ମତ :–ବ୍ରହ୍ମ ସତ୍ୟଂ, ମକାର ଜୀବ, ସୋଅହଂଜୀବ ।
ଶାକ୍ତ ରହସ୍ୟ :–ଶ୍ରୀଂ ଜ୍ଞାନଶକ୍ତି, ହ୍ରୀଂ କ୍ରିୟାଶକ୍ତି, କ୍ଲୀଂ ଇଚ୍ଛାଶକ୍ତି,
ବିଶିଷ୍ଟ ଦ୍ୱୈତ ମତ :–ଶେଷଶାୟୀ ନାରାୟଣ, ମହାଲକ୍ଷ୍ମୀ, ରାମ, ରାମାନୁଜ ଶେଷ
ରାଗାନୁଗା ତତ୍ତ୍ୱ :–ଯୁଗଳବିଗ୍ରହ, ପ୍ରେମଶକ୍ତି, ନିତ୍ୟାନନ୍ଦ ବଳରାମ,
ସୌଗତ ରହସ୍ୟ :–ବୁଦ୍ଧଂ, ସଙ୍ଘଂ, ଧର୍ମଂ
ଅବଧୂତ ମତ :– ଜ୍ୟୋତି, ନିରଞ୍ଜନ, ଶୂନ୍ୟ
ପୁରୁଷୋତ୍ତମ :–ଶ୍ରୀଜଗନ୍ନାଥ, ସୁଭଦ୍ରିକା, ବଳାରାମ

"ମୋତେ ସେହି ରୂପ ଦେଖାଅ ହରି" ନ୍ୟାୟେଣ "ଦର୍ଶନେ ହରେ ଦୁଃଖ" ପୂର୍ବକ ସର୍ବବିଧ ମତବାଦର ଏକମାତ୍ର ପ୍ରତୀକ ରୂପେ ମାନ୍ୟତା ପ୍ରାପ୍ତ ହୋଇ ତ୍ରୈଲୋକ୍ୟରେ ସ୍ୱ ପରି କ୍ଷେତ୍ରକୁ ମୌକ୍ତିଭୂମୀ ନାମରେ ପ୍ରସିଦ୍ଧି କରାଉଛନ୍ତି । ବିଶେଷତଃ ସ୍ୱୟଂ ହରିଜନ୍ମ ବାସରେ ଦେବକୀନନ୍ଦନ ଲୀଳା ପୁରୁଷୋତ୍ତମ ଶ୍ରୀକୃଷ୍ଣ ଶ୍ରୀରାମ ନବମୀରେ କୈବଲ୍ୟ ନନ୍ଦନ ମହିବା ପୁରୁଷୋତ୍ତମ ଶ୍ରୀରାମ, ପର୍ଶୁରାମାଷ୍ଟମୀରେ ଭାର୍ଗବ, ନୃସିଂହ ଜନ୍ମରେ ନୃସିଂହ । ଏହା ହିଁ ଶ୍ରୀପୁରୁଷୋତ୍ତମ ଧାମର ଅନ୍ୟ ଏକ ବିଶେଷତ୍ୱ ।

"ସର୍ବଦା ନୀଳାଦ୍ରୀରେ ସ୍ଥିତି ॥
ଏଥି ସକଳ ଜାତ ହୋନ୍ତି ॥
ସମସ୍ତ ଅବତାର ମାନ ॥
ଜାତ ହୋଇଣ ପଶେ ପୁଣ ॥

ବେଦାନ୍ତ ସାର ବ୍ରହ୍ମ ଏହି ॥
ବେଦ ହିଁ ବର୍ଣ୍ଣି ନ ପାରଇ ॥

(କୃପାସିନ୍ଧୁ ବଳରାମ ଦାସ)

ସ୍ୱୟଂ ଶରଣ ମେରୁ କଳ୍ପତରୁ ବିଶ୍ୱେଶ୍ୱର ବିଶ୍ୱମୂର୍ତ୍ତି ତ୍ରିଲୋଚନ ଦାରୁ ଅବତାରୀ ହେତୁ ଅବତାର ବୋଧର ଲୀଳା ସମୂହକୁ "ଏମନ୍ତ ଦେଖାନ୍ତି ଅବତାର କଥା ମାନ" (ଭକ୍ତକବି ତିଳକ କବି ଉପେନ୍ଦ୍ର) ଶୃଙ୍ଗାର ମାଧ୍ୟମରେ ପରିପ୍ରକାଶ କରାଇ ଆନ୍ତି ।

ପଣ୍ଡିତ ସଦାଶିବ ରଥ ଶର୍ମା ସ୍ମରଣ ପୂର୍ବକ କୁହନ୍ତି:—"ସମନ୍ୱୟ ସେହିଠାରେ ସମ୍ଭବ ଯେ କି ମୌଳିକ ଓ ଗୂଢ଼ ସିଦ୍ଧାନ୍ତର ପ୍ରତିକ ହୋଇଥିବେ" ।

ଶୃଙ୍ଗାରର ଅନ୍ୟନାମ ବେଶ । ପ୍ରଭୁ ନୀଳାଦ୍ରୀ ଚନ୍ଦ୍ରମା ଋତୁ ଚନ୍ଦ୍ରର ଆବର୍ତ୍ତନାନୁସାରେ ପଦ୍ମ, କର, ପଲ୍ଲବ, ଇତ୍ୟାଦିମାନ ଯୁକ୍ତ ହୋଇ ଭିନ୍ନ ଭିନ୍ନ ବେଶ ହୋଇଥାନ୍ତି ।

ଶୃଙ୍ଗାର ବେଶାକୁ ସାଧାରଣତଃ ୩ ଭାଗରେ ବିଭକ୍ତ କରାଯାଇ ପାରେ । (୧) ବସ୍ତ୍ର ଶୃଙ୍ଗାର, (୨) ଭୂଷଣ ଶୃଙ୍ଗାର, (୩) ପୁଷ୍ପ ଶୃଙ୍ଗାର ।

**ବସ୍ତ୍ର ଶୃଙ୍ଗାର**—ପ୍ରଭୁ ବିଭିନ୍ନ ବାରାନୁଯାୟୀ ରଙ୍ଗ ଓ ବର୍ଣ୍ଣ ଭେଦରେ ଭିନ୍ନ ଭିନ୍ନ ବସ୍ତ୍ର ପରିଧାନ କରନ୍ତି । ବସ୍ତ୍ରଗୁଡ଼ିକର ମୁଖ୍ୟ ରଙ୍ଗ ପ୍ରାୟତଃ ଏହିପରି ।

ରବିବାର—ଲାଲ ବସ୍ତ୍ର ।
ସୋମବାର—କଳାଛିଟ ମିଶା ଧଳା ବସ୍ତ୍ର ।
ମଙ୍ଗଳବାର—ବାରପଟିଆ (ପଞ୍ଚରଙ୍ଗୀ) ବସ୍ତ୍ର ।
ବୁଧବାର—ନୀଳ ବସ୍ତ୍ର ।
ଗୁରୁବାର—ବସନ୍ତ (ପୀତ) ବସ୍ତ୍ର ।
ଶୁକ୍ରବାର —ଶୁକ୍ଳ ବସ୍ତ୍ର ।
ଶନିବାର—କୃଷ୍ଣ ବସ୍ତ୍ର ।

ଭୂଷଣ ଶୃଙ୍ଗାର—ରତ୍ନ, ମଣିମାଣିକ୍ୟାଦି, ସୁବର୍ଣ୍ଣରେ ନିର୍ମିତ ହେମପଲ୍ଲବ, ପଦ୍ମର ନାନା ଅଳଙ୍କାରରେ ଭୂଷିତ ହେବା ।

ପୁଷ୍ପ ଶୃଙ୍ଗାର— ବିବିଧ ସୁଗନ୍ଧିତ ପୁଷ୍ପ ତଥା ତୁଳସୀଦଳରେ ଚିତା, ପଦକ, ମାଳା ଇତ୍ୟାଦି ଲାଗିହେବା ।

ବେଶଗୁଡ଼ିକୁ ଶ୍ରୀମନ୍ଦିରର ବିଶ୍ୱକର୍ମା ନିଯୋଗ, ରୂପକାର, ଦଇତା, ପାଟରା, ପାଳିଆଖୁଣ୍ଟିଆ, ସିଂହାରୀ, ଭଣ୍ଡାର ମେକାପ ଆଦି ସେବକମାନଙ୍କ ସହଯୋଗରେ କରାଯାଏ ।

ପ୍ରଭୁ ପ୍ରତିଦିନ ନାନା ବେଶ ହେବା ସଙ୍ଗେ ସଙ୍ଗେ କେତେକ ମୁଖ୍ୟ ବେଶ ହୋଇଥାନ୍ତି । ଉକ୍ତ ବେଶଗୁଡ଼ିକ କେବେ ଓ କାହାଙ୍କ ସମୟରେ ଆରମ୍ଭ ହୋଇଥିଲା ତା'ର ବିବରଣୀ ପ୍ରଦାନ କରାଗଲା ।

**ବେଶ ପ୍ରବେଶ :**

**(୧) ଉଡ଼ପ ଉଚୁରି ଅବକାଶ ବେଶ :**—ସପ୍ତାବରଣ ଦର୍ଶନ ।

ପ୍ରବର୍ତ୍ତକ:—ଜଗଦ୍‌ଗୁରୁ ଆଚାର୍ଯ୍ୟ ଶଙ୍କର, (୯ମ ଶତାବ୍ଦୀ) ।

**(୨) ବଡ଼ ସିଂହାର ବା ପଦ୍ମଭୂତ ବେଶ :**

ପ୍ରବର୍ତ୍ତକ:—ପ୍ରସିଦ୍ଧ ଗୀତ ଗୋବିନ୍ଦକାର ପଣ୍ଡିତ ପ୍ରବର ଜୟଦେବ ଗୋସ୍ୱାମୀ, (୧୨ଶ ଶତାବ୍ଦୀ) ।

**(୩) ଚନ୍ଦନ ଲାଗି ବେଶ :**

(ଚନ୍ଦନ ଚର୍ଚ୍ଚିତ ନୀଳକଳେବର ପୀତ ବସନେ ବନମାଳୀ) । ସ୍କନ୍ଦ ପୁରାଣ ଅନୁଯାୟୀ ଏହା ସର୍ବ ପ୍ରାଚୀନ ବେଶ । ଏଠାରେ ସ୍ମରଣ ଯୋଗ୍ୟ ଯେ, ଉକ୍ତ ବେଶ ପ୍ରତ୍ୟେହ ହୁଏ । ସ୍ୱୟଂ ଜୟଦେବ ଗୋସ୍ୱାମୀ ପ୍ରତ୍ୟହ ପତ୍ନୀ ପଦ୍ମାବତୀଙ୍କ ସହିତ ଉପସ୍ଥିତ ହୋଇ ବେଶ ସମୟେ ହରି ରସ ଗର୍ଭା ଗୀତ ଗୋବିନ୍ଦ ଗାନ କରନ୍ତି । ଏତଦ୍ ବ୍ୟତୀତ ବୈଶାଖ ଅକ୍ଷୟ ତୃତୀୟାଠାରୁ ଆରମ୍ଭ ହୋଇ କ୍ରମାଗତ ଭାବେ ଜ୍ୟେଷ୍ଠ ଶୁକ୍ଳ ଚତୁର୍ଦ୍ଦଶୀ ପର୍ଯ୍ୟନ୍ତ ଚାଲେ ।

**(୪) ହାତୀ ବେଶ ବା ଗଣପତି ବେଶ :**

(ଶ୍ରୀ ଗଣେଶ ଜଗନ୍ନାଥ ସର୍ବବିଘ୍ନ ବିନାୟକ) ।

ପ୍ରବର୍ତ୍ତକ:—ମହାରାଷ୍ଟ୍ରର ସନ୍ଥ ଭକ୍ତ ମୁକୁଟ ମଣୀ ଗଣପତି ଭଟ୍ଟ : ଜ୍ୟେଷ୍ଠ ପୂର୍ଣ୍ଣିମା ଦିନ ଦେବ ସ୍ନାନ ବେଦୀରେ ଦେବକୀ ନନ୍ଦନ କୃଷ୍ଣ ହେମବତୀ ନନ୍ଦନ ରୂପରେ ପ୍ରତିଭାତ ହୁଅନ୍ତି ।

**(୫) ବଡ଼ ତଢ଼ାଉ ବା ସୁନା ବେଶ ।:**

(ରାଜ ରାଜେଶ୍ୱର ଦେବ ଦ୍ୱାରକାଧିପତି ହରିଃ) ସୁନ୍ଦରାଞ୍ଚଳର ଅବସରରେ ପବିତ୍ର ଭୁବନ ବିଖ୍ୟାତ ଘୋଷ ଯାତ୍ରାରେ ରଥ ଉପରେ ହୁଏ ।

ଏତଦ୍ ବ୍ୟତୀତ:—ପୁନିଆଁ, ପୁଷ୍ୟାଭିଷେକ, ଦୋଳ ପୂର୍ଣ୍ଣିମା, ଦଶହରା, କାର୍ତ୍ତିକ ପୂର୍ଣ୍ଣିମା ଦିନ ରତ୍ନ ସିଂହାସନ ଉପରେ ହୁଏ ।

**(୬) ବନ ଭୋଜି ବେଶ :**

(ଗୋଗୋଷ୍ଠ ଚନ୍ଦ୍ରମା କୃଷ୍ଣ ଗୋପୀଜନ ମନୋହର) ।

ପ୍ରବର୍ତ୍ତକ:—ଶ୍ରୀଶ୍ରୀ ଚୈତନ୍ୟ ମହାପ୍ରଭୁ ଗଜପତି ପ୍ରତାପରୁଦ୍ରଙ୍କ ସମୟେ (ଷୋଡ଼ଶ ଶତାବ୍ଦୀ) ଭାଦ୍ରବ କୃଷ୍ଣ ଦଶମୀ ଦିନ ଅନୁଷ୍ଠିତ ହୁଏ ।

**(୭) କାଳୀୟ ଦଳନ ବେଶ :**

(କାଳୀୟ ଦମନଃ କୃଷ୍ଣ ସଂସାର ବିଷ ନାଶନଃ) ।

ପ୍ରବର୍ତ୍ତକ :—ଗଜପତି ପ୍ରତାପରୁଦ୍ର ଦେବ, (ଷୋଡ଼ଶ ଶତାବ୍ଦୀ) ।

ଭାଦ୍ରବ କୃଷ୍ଣପକ୍ଷ ଏକାଦଶୀ ତିଥିରେ ମାର୍କଣ୍ଡେୟ ପୁଷ୍କରିଣୀରେ ଲୀଳା ଶେଷ ହେବା ପରେ ।

**(୮) ପ୍ରଳମ୍ବାସୁର ବଧ ବେଶ :**

(ପ୍ରଳମ୍ବାରୀ ମହାବଳଃ)

(ପ୍ରବର୍ତ୍ତକ) :ବଳରାମ ଦାସ ଗୋସ୍ୱାମୀ, (ତାଳବନରେ କାଦମ୍ବରୀ ପ୍ରମତ୍ତ ବଳଦେବ ପ୍ରଳମ୍ବାସୁରଙ୍କୁ ବଧ କରିଥିଲେ । (ଷୋଡ଼ଶ ଶତାବ୍ଦୀ) ।

(୯) ରାମକୃଷ୍ଣ ବେଶ :
ପ୍ରବର୍ତ୍ତକ:–ଶ୍ରୀ ବଲ୍ଲଭା ଚାର୍ଯ୍ୟ । ଭାଦ୍ର କୃଷ୍ଣ ତ୍ରୟୋଦଶୀ, (ଷୋଡ଼ଶ ଶତାବ୍ଦୀ) ।

(୧୦) ବଳୀ ବାମନ ବେଶ :
ପ୍ରବର୍ତ୍ତକ:–କଳିଙ୍ଗ ବ୍ରାହ୍ମଣ ସମାଜ । ଭାଦ୍ର ଶୁକ୍ଳ ଦ୍ୱାଦଶୀରେ ହୁଏ । (ଏକାଦଶ ଶତାବ୍ଦୀ) ।

(୧୧) ରାଧା ଦାମୋଦର ବେଶ :
ପ୍ରବର୍ତ୍ତକ :–ଗୌଡ଼ ମାଧ୍ୱ ବୈଷ୍ଣବ ଗୋଷ୍ଠୀ, (୧୬ଶ ଶତାବ୍ଦୀ) ।

ଆଶ୍ୱିନ ଶୁକ୍ଳ ଏକାଦଶୀଠାରୁ କାର୍ତ୍ତିକ କୃଷ୍ଣ ଦଶମୀ ପର୍ଯ୍ୟନ୍ତ ଅନୁଷ୍ଠିତ ହୁଏ ।

ଉକ୍ତ ସମୟରେ ଶ୍ରବଣ ଗୋଷ୍ଠୀଦ୍ୱାରା ପଦ୍ମ ପୁରାଣୋକ୍ତ ସତ୍ୟବ୍ରତ ମୁନିକୃତ ଦାମୋଦରାଷ୍ଟକ ପାଠ କରାଯାଏ) ।

(୧୨) ଲକ୍ଷ୍ମୀ ନାରାୟଣ ବେଶ : ବା (ଠିଆକିଆ) ।
ପ୍ରବର୍ତ୍ତକ :–ଜଗଦ୍‌ଗୁରୁ ରାମାନୁଜା ଚାର୍ଯ୍ୟ, (୧୨ଶ ଶତାବ୍ଦୀ) ।

କାର୍ତ୍ତିକ ଶୁକ୍ଳ ପକ୍ଷ ଏକାଦଶୀ ଦିନ ହୁଏ ।

(୧୩) ବାଙ୍କ ଚୂଡ଼ା ବେଶ :
(ଗୋପବେଶ ମନୋହର) । ଯେଉଁ ସମୟରେ ଭକ୍ତ ଅକ୍ରୁର ପ୍ରଭୁଙ୍କୁ ମଥୁରା ନେବା ପାଇଁ ଗୋପ ଆସିଥିଲେ, ଏହି ବେଶରେ ଦର୍ଶନ କରିଥିଲେ । କାର୍ତ୍ତିକ ଦ୍ୱାଦଶୀ ଦିନ ହୁଅନ୍ତି ।

(୧୪) ନାଗାର୍ଜ୍ଜୁନ ବେଶ :
ପ୍ରବର୍ତ୍ତକ :–ହିମାଚଳ ପ୍ରଦେଶର ପର୍ଶୁରାମ ଭକ୍ତ ଓ ସନାତନ ବ୍ରାହ୍ମଣ ସମାଜ । କାର୍ତ୍ତିକ ମାସର ଅଧିକ ତିଥି ପଡ଼ିଲେ ହୁଏ ।

(୧୫) ଆଡ଼କିଆ ବେଶ :–(ମଦନମୋହନ) ଉତ୍କଳ ଅବିବେଦୀ ସମ୍ପ୍ରଦାୟର ମନ ସାମନା ପୂରଣ କରିଥାନ୍ତି । କାର୍ତ୍ତିକ ତ୍ରୟୋଦଶୀ ତିଥି ।

(୧୬) ଡାଳକିଆ ବେଶ :–(ରାଧାରମଣ ସୁନ୍ଦର), ଉକ୍ତ ବେଶରେ ନେପାଳର ରାଜାଧିରାଜ, ଶ୍ରୀ ରାମ ଦାସ ମଠ ତଥା ବଡ଼ଛତା ମଠର ମଠାଧିଶ ସ୍ୱୀୟ ସାହାଯ୍ୟ ଅନୁଦାନ ଭେଟି ଦିଅନ୍ତି ।

କାର୍ତ୍ତିକ ଶୁକ୍ଳ ଚତୁର୍ଦ୍ଦଶୀ ତିଥିରେ ହୁଏ ।

(୧୭) ଘୋଡ଼ ଲାଗି ବେଶ :–ମାର୍ଗଶିର ମାସ ଶୁକ୍ଳ ପକ୍ଷ ଷଷ୍ଠୀଠାରୁ ବସନ୍ତ ପଞ୍ଚମୀ ପର୍ଯ୍ୟନ୍ତ । ବିଭିନ୍ନ ବାର ଅନୁଯାୟୀ ବିଭିନ୍ନ ରଙ୍ଗର ଘୋଡ଼ ଲାଗି ହୁଅନ୍ତି ।

ବିଶେଷତଃ :–ମକର ସଂକ୍ରାନ୍ତି ଦିନ ମକର ଚୂଳ ଲାଗି ଅଧିକ ସୁନ୍ଦର ଦେଖାଯାନ୍ତି ।

ପ୍ରବର୍ତ୍ତକ :–ସନ୍ଥ କବୀର ଦାସ, ସଦ୍‌ଗୁରୁ ନାନକ ଦେବ । (୧୬ଶ ଶତାବ୍ଦୀ) ।

ପଦ୍ମମୁଖ ବେଶ :
(ପଦ୍ମାନନ ପଦ୍ମପ୍ରିୟ କୃଷ୍ଣ କମଳ ଲୋଚନ)

ପ୍ରବର୍ତ୍ତକ–ମହାତ୍ମା ସନ୍ଥ ରଘୁବର ଦାସ, ବଡ଼ଛତା ମଠ

(୧୬ଶ ଶତାବ୍ଦୀ)

ମାଘ ମାସ ଅମାବାସ୍ୟାପରେ ବସନ୍ତ ପଞ୍ଚମୀ ଦିନ ମଧ୍ୟ ପଡ଼ୁଥିବା ଶନିବାର ବା ବୁଧବାରେ ଅନୁଷ୍ଠିତ ହୁଏ ।

ଗଜେନ୍ଦ୍ର ମୋକ୍ଷ ବେଶ :
ପ୍ରବର୍ତ୍ତକ–ଭାଷ୍ୟକାର ରାମାନୁଜାଚାର୍ଯ୍ୟ

(୧୨ଶ ଶତାବ୍ଦୀ)

ମାଘ ପୂର୍ଣ୍ଣିମା ତିଥିରେ ଅନୁଷ୍ଠିତ ହୁଏ ।

ରଘୁନାଥ ବେଶ :
(ରାମ ରାଜା ଦରବାର)
ପ୍ରବର୍ତ୍ତକ– ରାମାନୁଜାଚାର୍ଯ୍ୟ

(୧୨ଶ ଶତାବ୍ଦୀ)

୧୦୦ ଶହ ବର୍ଷ ବ୍ୟବଧାନରେ ଅନୁଷ୍ଠିତ ହୁଏ ।

ପ୍ରଭୁଙ୍କର ବେଶ ଥାଉ ବା ନଥାଉ, ହୁଅନ୍ତୁ ବା ନହୁଅନ୍ତୁ କାଳିଆ କଳାଶ୍ରୀମୁଖ ସଦା ସକଳ ସୌନ୍ଦର୍ଯ୍ୟର ଆଧାର । ଯାହାଙ୍କ ଦର୍ଶନରେ ଭକ୍ତ ଆତ୍ମହରା ହୋଇଉଠେ । ଭକତ ଭାଷାରେ–

"ତୋର ବିବିଧ ବେଶ ଦେଖି ।
ନିର୍ମଳ ହେଲା ବେନିଆଖି
ଧନ୍ୟ ତୋ ନୀଳାଦ୍ରି ମଣ୍ଡଳ ।
ଭକତ ଭାବେ ହେଲୁ ଭୋଳ "

(ପୁରୁଷୋତ୍ତମ ଗୀତା)

ଯଥାର୍ଥରେ ଶ୍ରୀ ଜଗନ୍ନାଥଙ୍କ ଧର୍ମୀୟ ଚେତନା, ଏକ ସମନ୍ୱୟାତ୍ମକ ତଥା ପ୍ରତିକାତ୍ମକ ଓ ଭାବ ଦ୍ୟୋତକ ଚେତନା ଏହା ମୁକ୍ତ କଣ୍ଠରେ ସ୍ୱୀକାର୍ଯ୍ୟ।
ଜୟ ଜଗନ୍ନାଥ, ଜୟ ଉତ୍କଳ ।

---

*ସାଂସ୍କୃତିକ ସମ୍ପାଦକ,*
*ଓଡ଼ିଶା ଶ୍ରବଣ ଗୋଷ୍ଠୀ,*
*ନୟାଗଡ଼ ଶାଖା (ପେଜିହଡ଼ା ମାନପୁର),*
*ପୁରୀ ।*




"ମୋକ୍ଷଦଂ ସର୍ବପାପାନାଂ ଦାରଣଂ ସକଳାପଦାମ୍
ବିଭୂତିନାଂ ଦି ସରଣଂ ବରଣଂ ସର୍ବ
ଯୋଗିନାମ୍ ॥
କ୍ଷଣ ସର୍ବ ଜନ୍ତୁନା ଧରଣଂ ଜଗତାମପି ।
ଭୂଷଣଂ ସର୍ବଭାଷାଣାଂ ଦୁଷଣ ସର୍ବ ଦୁଷ୍କୃତାମ୍ ॥
ଶୋଷଣଂ ସର୍ବ ପଙ୍କାନାଂ ନୀଳାଦ୍ରୀ ଶରଣଂ–ହରିମ୍ ॥"

ଭଗବାନ ସଚ୍ଚିଦାନନ୍ଦ ଆନନ୍ଦ କନ୍ଦ କରୁଣା ବରୁଣାଳୟ ଅନନ୍ତ କୋଟି ବ୍ରହ୍ମାଣ୍ଡର ନାୟକ ପ୍ରଭୁ ପରମେଶ୍ୱର ପୁରୁଷୋତ୍ତମ ଜଗନ୍ନାଥ, ଯେକି ଏହି ସଚରାଚର ଜଗତର ସମସ୍ତ ପ୍ରାଣୀଙ୍କର ଆଦି ଛନ୍ତି, ପୃଥିବୀକୁ ଧାରଣ କରିବା ବାଲା ଅନେକ ରୂପଧାରୀ ଏବଂ ସମର୍ଥ ଭଗବାନ ବିଷ୍ଣୁଙ୍କୁ ନମସ୍କାର ।

ନମସ୍ତ ସମସ୍ତ ଭୂତାନା ମାଦି ଭୂତାୟ ଭୂଭୃତେ
ଅନେକ ରୂପ ରୂପାୟ ବିଷ୍ଣବେ ପ୍ରଭ ବିଷ୍ଣବେ ॥

ଯାହାର ନାମକୁ ଜୀବ ଜଦି ଜ୍ଞାତ ସାରରେ ହେଉ ବା ଅଜ୍ଞାତ ସାରରେ ହେଉ, ଥରେ ମାତ୍ର ସ୍ମରଣ କରେ ତେବେ ଜୀବ ଜନ୍ମ ଓ ମୃତ୍ୟୁ ରୂପୀ ବନ୍ଧନରୁ ମୁକ୍ତି ପାଇଥାଏ ।

"ଓଁ ଯସ୍ୟ ସ୍ମରଣ ମାତ୍ରେଣ ଜନ୍ମ ସଂସାର ବନ୍ଧନାତ୍"

ସେହି ପରମ କାରୁଣିକ ସଚ୍ଚିଦାନନ୍ଦ ଭଗବାନଙ୍କର ମହିମା ଜାଣିବା ପାଇଁ ଶିବ, ବିରଞ୍ଚି, ନାରଦ ଯାହାର ଦ୍ୱାର ଦେଶରେ କରପତ୍ର ଯୋଡ଼ିଣ, ନତମସ୍ତକ ହୋଇଣ, ପାଦ ବନ୍ଦନା କରୁଥାନ୍ତି ଯେପରି କଳ୍ପ କଳ୍ପ ବିତିଯାଇଥିଲେ ମଧ୍ୟ ତାଙ୍କର ମହିମା ଜାଣିପାରି ନାହାନ୍ତି । ଏହି ଛାର ମନୁଷ୍ୟ ତାଙ୍କର କଥା ବା କଣ ଜାଣି ପାରେ ?

ସର୍ବ ରହସ୍ୟ ପୁରୁଷୋତ୍ତମସ୍ୟ
ଦେବେ ନଜାନାତି କୁତଃ ମନୁଷ୍ୟ ॥

ପିତାମହ ଭୀଷ୍ମ ଶର ଶଯ୍ୟାରେ ପଡ଼ିଛନ୍ତି କୁରୁ ପାଣ୍ଡବ ଯୁଦ୍ଧ ଶେଷ ହୋଇ ଗଲାଣି ଧର୍ମରାଜ ଯୁଧିଷ୍ଠିର ପିତାମହଙ୍କୁ ପଗ୍ଭରୁଛନ୍ତି–

କିମେକଂ ଦୈବତଂ ଲୋକେ କି ବାପ୍ୟେକଂ ପରାୟଣମ୍
ସ୍ତୁବନ୍ତଃ କଂ କମର୍ଚ୍ଚନ୍ତଃ ପ୍ରାପ୍ନୁୟୁର୍ମାନବାଃ ଶୁଭମ୍ ॥

ସମସ୍ତ ଜଗତରେ ଏକ ଦେବତା କିଏ ? ଏହି ସଂସାରର ଏକ ପରମ ଆଶ୍ରୟ ସ୍ଥଳ କିଏ ? ଯାହାଙ୍କୁ ଦର୍ଶନରେ ଜୀବର ଅବିଦ୍ୟାରୂପ ହୃଦୟ ଗ୍ରନ୍ଥି ଛିନ୍ନ ହୋଇ ଯାଏ ? କେଉଁ ଦେବତା ସ୍ତବ ସ୍ତୁତି ପାଠ କରିଲେ ମନୁଷ୍ୟର ମଙ୍ଗଳଦାୟକ ହୁଏ ? ॥ ଭୀଷ୍ମ ପିତାମହ କହୁଛନ୍ତି ।

ଜଗତ୍ ପ୍ରଭୁଂ ଦେବ ଦେବଂ ଅନନ୍ତଂ ପୁରୁଷୋତ୍ତମମ୍
ସ୍ତବନ୍ ନାମ ସହସ୍ରେଣ ପୁରୁଷଃ ସତତୋତ୍ଥିତଃ ॥

ସ୍ଥାବର ଜଙ୍ଗମ ରୂପ ସଂସାରର ସ୍ୱାମୀ, ଦେବତାମାନଙ୍କର ଦେବତା, ଦେଶ କାଳ ଓ ବସ୍ତୁରୁ ଅପରିଚ୍ଛିନ୍ନ କ୍ଷର ଓ ଅକ୍ଷରଠାରୁ ଶ୍ରେଷ୍ଠ, ସେହି ପୁରୁଷୋତ୍ତମ ତୁମେ ତାଙ୍କରି ଆଶ୍ରୟ ନିଅ, ତାଙ୍କରି ଚରଣାର ବିନ୍ଦୁକୁ ବନ୍ଦନା କର ଓ ପୁରୁଷୋତ୍ତମ ସହସ୍ରନାମ ନିରନ୍ତର ତଦ୍‌ଗତ୍ ପ୍ରାଣ ହୋଇ ପାଠ କରିଲେ ଜୀବ ସବୁ ଦୁଃଖରୁ ପାର ହୋଇ ଯିବ ।

ଯାହାଙ୍କଠାରୁ ଜୀବ ଗଣଙ୍କର ଉତ୍ପତି ଏବଂ ଯୁଗକ୍ଷୟରେ ପୁଣି ଯାହାଙ୍କଠାରେ ଜୀବଗଣ ବିଲୀନ ହୁଅନ୍ତି ।

"ଯସ୍ମିଂଶ୍ଚ ପ୍ରଳୟଂ ଯାନ୍ତି ପୁନରେବ ଯୁଗ କ୍ଷୟେ ॥"

ଏହି ପବିତ୍ର ସ୍ଥାନର କେନ୍ଦ୍ର ବିନ୍ଦୁ କିଏ ?

ଆର୍ଯ୍ୟ ଭୂମି ଭାରତ ବର୍ଷରେ ପରମ ପାବନ ଶାସ୍ୱତ ପୀଠ ଯାହାକୁ ଉଡ଼ିୟାନ ପୀଠ, ଶଙ୍ଖ କ୍ଷେତ୍ର, ପୁରୀ, ନିଳାଦ୍ରୀ ନାମରେ ଭୁବନ ବନ୍ଦିତ ସେହିଠାରେ ଏହି ସଂସାରର ପବିତ୍ର କଳ୍ପବୃକ୍ଷ ନାମକ ବଟ ଓ ନୀଳଗିରି ନାମକ ପର୍ବତ ରୋହିଣୀ ନାମକ କାରଣ । ସୋଧ୍ୟ ପୂର୍ଣ୍ଣ କୁଣ୍ଡର ସମୀପରେ ଭଗବାନ ପୁରୁଷୋତ୍ତମ ଜଗନ୍ନାଥ ସ୍ୱୟଂ ପ୍ରକାଶବାନ ବିଗ୍ରହ ରୂପରେ ବିରାଜମାନ କରୁଛନ୍ତି ।

ଅପୌରୁଷେୟ ଭଗବାନ ବିଶ୍ବରମତମାଶ୍ରିତଂ
ପ୍ରୁଗ୍ରପ୍ରାପ୍ୟା ମହାବେଦ୍ୟାଂ ସ୍ୱୟଂ ସେ । ଅବତରିଷ୍ୟତି ॥

ସ୍ମରଣାତୀତ କାଳରୁ ଅବଧି ପ୍ରତ୍ୟେକ ସମ୍ପ୍ରଦାୟ, ଦର୍ଶନ, ବେଦ, ଉପନିଷଦ୍, ଅଷ୍ଟାଦଶ ପୁରାଣ, ନବ ବ୍ୟାକରଣ ଓ ଆଧ୍ୟାତ୍ମିକବାଦୀମାନେ ପ୍ରତ୍ୟେକ ଜଗନ୍ନାଥଙ୍କୁ ଭଗବାନ ପୁରୁଷୋତ୍ତମଙ୍କୁ ନିଜର ଇଷ୍ଟ ରୂପରେ ଗ୍ରହଣ କରିଛନ୍ତି ଓ ପ୍ରତ୍ୟେକ ଧର୍ମଶାଖାର ଆଚାର୍ଯ୍ୟ ଓ ସଂସ୍ଥାପକମାନେ ପୁରୁଷୋତ୍ତମରେ ଆପଣାର ଧର୍ମପୀଠ 'ମଠ' ଆଶ୍ରମ, ସ୍ଥାପନ କରି ଯୁଗକୁ ଯୁଗ ଏହି ମହାନ ଉଦାର ପୀଠର ମହାନତାକୁ ସ୍ୱୀକାରକରି ଯାଇଛନ୍ତି ସେହି କାରଣରୁ ପୁରୁଷୋତ୍ତମ କ୍ଷେତ୍ର ପାବନ ଭୂମି ବିଶ୍ୱଦରବାରର ଏ ମିଳନଭୂମି ବା ମୈତ୍ରିଭୂମି ନାମରେ ପରିଚିତ—

ଯେପରି ମହୋଦଧି ପବିତ୍ର ସମୁଦ୍ର ସାଗରରେ ସମସ୍ତ ନଦୀ ଆସି ମିଶନ୍ତି "ଯଥା ନଦୀନା ବହବମ୍ବୁବେଗା ସମୁଦ୍ରମେବା ଭିମୁଖା ଦ୍ରବନ୍ତି" ନ୍ୟାୟରେ ସେହି ପରି ଏହି ପାବନ ଭୂମିରେ ସମସ୍ତେ ମିଶି ଯାଇଛନ୍ତି । କାହାର ସ୍ୱତନ୍ତ୍ରତା ନାହିଁ । ସମସ୍ତେ ଏକ ହୋଇ ତାଙ୍କର ହୃଦୟରେ ସ୍ଥାନ ପାଇଚନ୍ତି ।

କାହାର କଣ ମତ :—

(୧) ବେଦବାଦୀମାନେ ତାଙ୍କର ମତ :

ସତ୍ୟଂ ଶୁଦ୍ଧମୟଂ ନିତ୍ୟଂ ଜ୍ଞାନାଗୁଣ—ସମପ୍ରଭଂ
ଅନନ୍ତ ନୀଳବର୍ଣ୍ଣାଢ୍ୟ ତସ୍ମୀ ତ୍ରୈଲୋକ୍ୟ ଦୁର୍ଲଭମ୍
ଋକ୍ ବେଦରୂପୀ ହଲଧୃକ ସାମ ବେଦୋନୃକେଶରୀ ।
ଯଜୁ ମୂର୍ତ୍ତି ସ୍ୱୟଂ ଭଦ୍ରାଚନ୍ଦ୍ର ଆଥର୍ବଣା ସ୍ତୁତମ୍ ॥

ସେହି ଆଚାର୍ଯ୍ୟମାନେ ହେଲେ ଆର୍ଯ୍ୟ ଯୁଗର ଅଙ୍ଗୀର ଭୃଗୁ, କଣ୍ଡୁ ଓ ମାର୍କଣ୍ଡେୟ ଯେଉଁମାନଙ୍କର ଆଶ୍ରମ ଏହି ଭୂମିରେ ପ୍ରତିଷ୍ଠିତ ହୋଇଛନ୍ତି ।

ପ୍ରାଚ୍ୟାଙ୍ଗୀରମ୍ ପୀଠସ୍ଥ ଦକ୍ଷିଣେ କଣ୍ଡୁ ମନ୍ଦିରମ୍
ମାର୍କଣ୍ଡେୟ ଚେତଚେଷ୍ଟ ଭୃଗୁ ଭାର୍ଗବୀ ସନ୍ନିଧୌ ॥

ଯେଉଁଠାକୁ ଚତୁର୍ଦ୍ଧା ମୂର୍ତ୍ତି ମଧ୍ୟରୁ ଚକ୍ର ସୁଦର୍ଶନ ବର୍ଷକୁ ଦୁଇଥର ଏହି ଆଚାର୍ଯ୍ୟ ସଂସ୍ଥାପକ ଋଷିଙ୍କର ଆଶ୍ରମକୁ ଯାଆନ୍ତି ।

(୨) ବେଦାନ୍ତ ବାଦୀମାନେ :

ସୋହଂ ଜୀବ ତଦା ଜ୍ଞାନ ମାୟା ବନ୍ଧସ୍ୟ ଗେହିନୀ
ବ୍ରହ୍ମୈବ ସତ୍ୟମ୍ ସାକ୍ଷାତ୍ ପୁରାଣ ପୁରୁଷୋତ୍ତମଃ
ଓଁ ତତ୍ୱମସି ପ୍ରଜ୍ଞାନ ବ୍ରହ୍ମ, ଅୟମାତ୍ମା ବ୍ରହ୍ମ, ଅହଂ ବ୍ରହ୍ମାସ୍ମି
ଯହି ମହାବାକ୍ୟ ଚତୁଷ୍ଟୟଃ ଚତୁର୍ଦ୍ଧା ମୂର୍ତ୍ତିୟେ ॥

(୩) ଶୈବବାଦୀମାନେ ଆସିଛନ୍ତି ଏବଂ ମତ ପ୍ରଦାନ କରି କହିଛନ୍ତି :

ଶିବ ଶିବତରଂ ଶମ୍ଭୁଶଙ୍କର ଭବାଦୀଶ୍ୱରଃ
ପତି, ପଶୁ ତଥା ପାଶଃ ତ୍ରିତତ୍ତ୍ୱାୟ ନମୋ ନମଃ ॥

ଏହିପରି, ମହାପିପ୍ପଲ ମତବାଦୀମାନେ ଆସିଛନ୍ତି ପିପ୍ପଲାୟନ୍ ମଠ ସ୍ଥାପନ କରିଛନ୍ତି ।

(୪) ଯୋଗବାଦୀମାନେ ଆସି ମଧ୍ୟ ଶିଶୁମଂ, ଗନ୍ଧର୍ବ ମଠ ସ୍ଥାପନ କରି ଯୌଗିକ ତତ୍ତ୍ୱର ଅନୁ... ପ୍ରତୀକ ରୂପେ ଗ୍ରହଣ କରିଛନ୍ତି ।

ସାକ୍ଷାତ୍ ଯୋଗମାୟ ମୂର୍ତ୍ତିଂ ଚକ୍ର ତସ୍ମୀ ବିହାରିଣ
କେବଳାନନ୍ଦ ରୂପାୟ ଦାରୁ ରୂପାୟ ତେ ନମଃ ॥

(୫) ଶୂନ୍ୟବାଦୀମାନେ ଆସି ଏହି ପବିତ୍ର ଭୂମିରେ ଅଲେଖ ସମ୍ପ୍ରଦାୟର ଗୋରକ୍ଷ ଗାଦି, ଲକ୍ଷ୍ମୀଭଦ୍ରମଠ ସ୍ଥାପନ କରି ମଠରେ ଯାଇଛନ୍ତି ।

ଶୂନ୍ୟ ଶୂନ୍ୟ ମହାଶୂନ୍ୟ ଶୂନ୍ୟ ମଧ୍ୟେ ନିରଞ୍ଜନ
ନିରଞ୍ଜନ ପରେ କୋଶେ ସ ଜ୍ୟୋତି ପୁରୁଷୋତ୍ତମଃ ॥

(୭) ବ୍ରହ୍ମବାଦୀମାନେ ଆସିଛନ୍ତି :—

ପ୍ରଭୁ ପୁରୁଷୋତ୍ତମଙ୍କୁ ବାଞ୍ଛାକ୍ଷର ଜଗନ୍ନାଥ ପୂର୍ଣ୍ଣ ବ୍ରହ୍ମ ରୂପେ ଗୁହାଣଂ ଜ୍ଞାନ ଦୀପୋୟଃ ନୀଳାଦ୍ରି ଈଶ୍ୱର ବିଭୁମ୍ । ଏହିପରି ଆର୍ଯ୍ୟ ଭୂମିର (୮) ଶାକ୍ତ ମତବାଦୀ (୯) କୃଷ୍ଣ ପର ବ୍ରହ୍ମବାଦୀ (୧୦) ରାମ ତାରକ ବ୍ରହ୍ମବାଦୀ (୧୧) ଶ୍ରୀ ଚତୁର୍ବ୍ୟୂହବାଦୀ (୧୨) ବିରାଟ ତତ୍ତ୍ୱବାଦୀ (୧୩) ପୂର୍ଣ୍ଣ ବ୍ରହ୍ମବାଦୀ (୧୪) ବିଶିଷ୍ଟା ଦ୍ୱୈତ ମତବାଦୀମାନେ ନିଜର ମତ ପ୍ରଦାନ କରି ପ୍ରଭୁଙ୍କୁ ନିଜର ଇଷ୍ଟ ବିଗ୍ରହ ରୂପରେ ଗ୍ରହଣ କରି ମଠ ଓ ମତ ସ୍ଥାପନ କରିଛନ୍ତି ଯାହା ଏହି ମୈତ୍ରୀ ଭୂମିରେ ଆଜି ପର୍ଯ୍ୟନ୍ତ ସାକ୍ଷୀ ରୂପେ ଦଣ୍ଡାୟମାନ ହୋଇ ରହିଛନ୍ତି ।

ସେହିପରି ରାଗାନୁଗାବାଦର ପ୍ରବର୍ତ୍ତକ—

ମହାପ୍ରଭୁ ଚୈତନ୍ୟ ଆସି ଭାବ ବିହ୍ୱଳ ହୋଇ ଜଗନ୍ନାଥଙ୍କୁ ଦର୍ଶନ କରି ଆତ୍ମହରା ହୋଇ ନାଚି ଉଠିଥିଲେ ଆନନ୍ଦରେ ଗଦ୍ ଗଦ୍ ହୋଇ କହିଗଲେ

ମହାଭାବ ରସରାଜ ନିତ୍ୟ ଖେଳେ ଧୂଳେ ।
ବୃନ୍ଦାବନେ ଛିଲେନ୍ କୃଷ୍ଣ ଆଛେନ୍ ନୀଳାଚଳେ ॥

କବୀର ଆସି ମଧ୍ୟ ଏଠାରେ ତାଙ୍କର ମତ ଦେଇ କହିଲେ ।

କ୍ଷାର ସମୁଦର ଜାହଜ ରୂପା
ଇହ ଜଗମେ ଜଗଦୀଶ ଅରୂପା
ନିରଗୁନ ଅଲଖ ସାଈରୂପ ହୀରା
କହହିଁ ଭେଦ ଉପଦେଶ କବୀରା ॥

ଏବଂ ଭଗବାନ ପୁରୁଷୋତ୍ତମ ଜଗନ୍ନାଥ କବୀରଙ୍କୁ ଆଜ୍ଞାଦେଲେ ତୁମର ଛଡା ତୁମେ ଯେଉଁଠାରେ ପୋତିଦେବ ତାକୁ ଲଙ୍ଘନ କରି ସମୁଦ୍ର ଆସି ପାରିବ ନାହିଁ । କବୀର ସ୍ୱର୍ଗଦ୍ୱାରଠାରେ ଆପଣାର ଛଡା ପୋତି ବସିଲେ । ତାହା କବୀରଛଡା ଅଦ୍ୟାବଧି ପର୍ଯ୍ୟନ୍ତ ପାବନ ଭୂମିରେ ବିରାଜମାନ ଅଛନ୍ତି ।

ସେହିପରି ଶିଖ୍ ଧର୍ମର ପ୍ରବର୍ତ୍ତକ, ଆଚାର୍ଯ୍ୟ ନାନକ ଏହି ମୈତ୍ରୀପୀଠରେ ଆସି ନିଜର ଗାଦି ସ୍ଥାପନ କରିଛନ୍ତି ଯାହା ମଙ୍ଗୁମଠ, ନାମରେ ବିଦିତ— ଯେଉଁଠାରେ ଗୁରୁନାନକଙ୍କର ଗାଦି ବିଦ୍ୟମାନ ।

ଶମ ମହିମ କହିବିନ କେଶୋ
ସୁଝୁନେହି ବୁଝୁନେହି ଥା ସୋ
କହହି ସଦଗୁରୁ ଭାବ ଦିଖାନି
ଅଲଖ ଅଗମ ଜଗଦୀଶ ହଜାନି ॥

ଗୁରୁ ନାନକ ଗାଦୀ 'ଓ ଗୁରୁ ଗ୍ରନ୍ଥ ସାହେବ ଓ ଦାରୁବ୍ରହ୍ମଙ୍କର ମଧ୍ୟ ଭଜନରେ ଭଜନ ବୋଲାଯାଏ । ଏହି ପରି, ବୌଦ୍ଧମାନେ ଆସି ବୁଦ୍ଧି, ଜୈନ ଆସିଛନ୍ତି– ସମସ୍ତେ ପ୍ରଭୁଙ୍କୁ ଆପଣାର କରି ନେଇଚନ୍ତି ପ୍ରଭୁ ମଧ୍ୟ ସମସ୍ତଙ୍କୁ ଆପଣାର କରିଛନ୍ତି ।

ତଦ୍ ଦାରୁ ବ୍ରହ୍ମ ମୂର୍ତ୍ତି । ପ୍ରଣବ ତନୁଧରଂ
ସର୍ବ ବେଦାନ୍ତ ସାରଂ ।
ଭକ୍ତାନାଂ କଳ୍ପବୃକ୍ଷ ଭବ ଜଳ ତରଣୀ
ସର୍ବ ତତ୍ତ୍ୱାନୁ ତତ୍ତ୍ୱଂ
ଯୋଗୀନା ହଂସ ତତ୍ତ୍ୱ ହରିହର ନିମିତ
ଶ୍ରୀପତି ବୈଷ୍ଣବାନା
ବୌଦ୍ଧାନାଂ ବୁଦ୍ଧରୂପ ଋଷଭ ଜତିବର
ଜୈନ ସିଦ୍ଧାନ୍ତ ସାରଂ

ଶ୍ରୀ ଦେବଃ ପାତୁ ନିତ୍ୟ କଳି କୁଳ ଗ୍ରହର ନୀଳଶୈଳାଧିନାଥ ଏହା ଦ୍ୱାରା ପ୍ରମାଣିତ ହେଉ ଅଛି । ଏହି ପରି ସର୍ବମତ ସମନ୍ୱୟର ପବିତ୍ର ପାବନ ପୁରୁଷୋତ୍ତମ କ୍ଷେତ୍ର ଏବଂ ଏହାର ଆରାଧ୍ୟ ଦେବତା ପ୍ରଭୁ କରୁଣାମୟ ତତ୍ତ୍ୱମୟ, ପ୍ରଭୁ ଜଗନ୍ନାଥ ଯେ ସଂସାରର ଅଦ୍ୱିତୀୟ ଅଟନ୍ତି ।

"ଅଦ୍ୱିତୀୟ ଜଗତ୍‌ତ୍ରାମ୍ ସ୍ୱପ୍ରକାଶ ନମୋସ୍ତୁତେ"

ଏହାର ଏକମାତ୍ର କାରଣ ଜଗନ୍ନାଥ ବ୍ରହ୍ମ ଚିନ୍ତାର ରୂପ କଳ୍ପନାର ଏକ ମାତ୍ର ପ୍ରତୀକ ।

"ବପୁଶ୍ଚନ୍ତ ଜଗନ୍ନାଥ ପ୍ରତ୍ୟସ୍ୟ ବ୍ରହ୍ମରୂପିଣ"

ନଚେତ୍ ପ୍ରତ୍ୟେକ ମତର ମୂଳତତ୍ତ୍ୱ ସ୍କନ୍ଦପୁରାଣ ପ୍ରଭୁଙ୍କର ଶରୀରରେ ମିଳିବା ସହଜ ହୁଅନ୍ତା ନାହିଁ–ତେଣୁ ପ୍ରଭୁ ପୁରୁଷୋତ୍ତମ ଜଗନ୍ନାଥ ସମସ୍ତ ସମ୍ପ୍ରଦାୟର ମାନ୍ୟ ଓ ବରେଣ୍ୟ ଅଟନ୍ତି ।

ଆଜି ପବିତ୍ର ଆଷାଢ଼ ମାସ ଶୁକ୍ଳ ପକ୍ଷ ଦ୍ୱିତୀୟା ତିଥିରେ ଜଗନ୍ନାଥ ସ୍ୱୟଂ ପତୀତ ଜନଙ୍କୁ ଉଦ୍ଧାର କରିବା ପାଇଁ, ସମସ୍ତଙ୍କୁ ଆନନ୍ଦ ଦେବା ନିମନ୍ତେ ନୀଳ କନ୍ଦରରୁ ବାହାରି ଆସିଛନ୍ତି । ତ୍ରିଭୁବନ କମ୍ପି ଉଠୁଅଛି । ସ୍ୱର୍ଗରେ ଅପସରାମାନେ, ଦେବୀମାନେ ନାଚି ନାଚି ଜୀବନକୁ ଅହୋ ଭାଗ୍ୟ ମନେକରୁ ଅଛନ୍ତି, ସମସ୍ତ ଦେବତାମାନେ କୁସୁମ ବୃଷ୍ଟି କରୁ ଅଛନ୍ତି, ଇନ୍ଦ୍ରାଦି ଦଶଦିଗପାଳ କର ପତ୍ର ଯୋଡ଼ି ଦଣ୍ଡାୟମାନ, ଭକ୍ତମାନଙ୍କର ହରି ବୋଲ ହୁଳ ହୁଳି ଚର୍ତୁଦିଗ ଉଚ୍ଛୁଳି ପଡୁଅଛି । ଘଣ୍ଟ, ମୃଦଙ୍ଗ, ବୀର କାହଳୀ ଶବ୍ଦରେ ସଚରାଚର ଜଗତର କର୍ତ୍ତା ପ୍ରଭୁ ପୁରୁଷୋତ୍ତମ ଜଗନ୍ନାଥ ହଲି ହଲି, ଝୁଲି ଝୁଲି ମହା ଆନନ୍ଦରେ ଆସୁଛନ୍ତି ।

ପ୍ରଭୁ ଡାକୁ ଛନ୍ତି ହେ ଭକ୍ତମାନେ, ଯୋଗୀମାନେ ଚରାଚର ଜଗତର ପ୍ରାଣୀମାନେ ପଳାଇଆସ, ମୋର ନିକଟକୁ ତୁମେ ବ୍ୟକ୍ତ ହୁଅ ନାହିଁ, ମୁଁ ତୁମର ଅଛି । ମୁଁ ତୁମକୁ ମୁକ୍ତି ଆନନ୍ଦ ଓ ପ୍ରେମ ଦେବାକୁ ଦୁଇ ବାହୁ କୁ ମୁକ୍ତ କରି ଦେଇଛି । ମୋର କିଛି ଦରକାର ନାହିଁ । ଭୋଗ, ନୈବେଦ୍ୟ, ଫୁଲ, ମାଳ, ଧୂପ, ଦୀପ କିଛିର ପ୍ରୟୋଜନ ନାହିଁ । କେବଳ ପ୍ରେମରେ ଆସ ଆନନ୍ଦରେ ଆସ ମୋର ବକ୍ଷରେ ତୁମ ବକ୍ଷକୁ ମିଳାଇ ଦିଅ, ମୋର ବିରାଟ ଶରୀରରେ ତୁମର ଶରୀରକୁ ମିଳାଇ ଦିଅ । ମୋର ହୃଦୟରେ ତୁମ ହୃଦୟ ମିଶାଇ ଦିଅ ମୋତେ ଆଲିଙ୍ଗନ କର ମୁଁ ଏହି ଜଗତର ଏକ, ମୋ'ଛଡା ଏ ସଂସାରରେ ଆଉ ତୁମକୁ ଉଦ୍ଧାର କରିବାର ସାମର୍ଥ୍ୟ କାହାର ନାହିଁ । ମୁଁ ଏଥି ନିମନ୍ତେ ଏହି ପାବନ କ୍ଷେତ୍ରରେ ଘୋଷଯାତ୍ରା ସୃଷ୍ଟି କରିଛି । ବିଳମ୍ବ କରନାହିଁ । କାହାକୁ ଅପେକ୍ଷା କର ନାହିଁ । ଆସ, ଭକ୍ତ ସମାଜ ଆସ ମୋତେ ଦର୍ଶନ କର ଆନନ୍ଦ ଲାଭ କର ଆନନ୍ଦରେ ଯାଅ ।

ଭୂଭାରା ହରଣେ ପ୍ରବୋଧି ପତିତଂ
ସଂଶୋଚ ଭୃତ୍ୟା ବନେ ।
ନୂନଂ ନୀଳ ମହୀଧରେ ବିଦ୍ୟେତେ
ଶଙ୍କରି କୁଞ୍ଜଃ କରେ ॥

ଏହି ପବିତ୍ର ଉତ୍ସବରେ ଏହି ପବିତ୍ର ଦିବସର ପାବନ ପୁରୁଷୋତ୍ତମ କ୍ଷେତ୍ରର ଏହାହିଁ ମୌଳିକ ଚିନ୍ତାଧାରା । ଏହାହିଁ ଆମର ପରମ୍ପରା, ସଂସ୍କୃତି, ଯେଉଁ ମହାନତାକୁ ନେଇ ସାରା ବିଶ୍ୱ ଦରବାରରେ ଏହି ଉତ୍କଳ ଭୂମି ଓ ପାବନ ପୁରୁଷୋତ୍ତମ କ୍ଷେତ୍ର ସାରା ତ୍ରିଭୁବନରେ ବନ୍ଦିତ ।

ଉତ୍କଳସ୍ୟ ସମୋ ଦେଶ
ଦେଶ ନାସ୍ତି ମହୀ ତଳେ ॥
ଜୟ ଜଗନ୍ନାଥ

*ନୀଳାଦ୍ରି ଶତ୍ପଥି*
*ଜଗନ୍ନାଥ ମନ୍ଦିର, ପୁରୀ ।*






ଜୟ ଶଙ୍କର ନାୟକ

ଜଗନ୍ନାଥ ଜଗତର ନାଥ । ଜଗତର ନାଥ ଜଗନ୍ନାଥଙ୍କର ନବକଳେବର ଓ ରଥଯାତ୍ରା ପୃଥିବୀ ପ୍ରସିଦ୍ଧ ଅଟେ । ଶ୍ରୀଜଗନ୍ନାଥ କରୁଣାମୟ । ସେ ପତିତପାବନ କ୍ଷମାନୁକମ୍ପାଧାର । ସେ ପରମବ୍ରହ୍ମ । ସେ ଅବ୍ୟକ୍ତ ଓ ଅସୀମ । ଦାରୁ ମଧ୍ୟରେ ସେ ଆବିର୍ଭୂତ ହୁଅନ୍ତି । ଯେଉଁ ବର୍ଷ ଦୁଇଟି ଆଷାଢ଼ ପଡ଼େ ସେହି ବର୍ଷ ଜଗନ୍ନାଥଙ୍କର ନବକଳେବର ହୁଏ । ଶ୍ରୀଜଗନ୍ନାଥଙ୍କର ପୁରୁଣା ଶରୀରକୁ ନଷ୍ଟ କରି ଶ୍ରୀଅଙ୍ଗରୁ ବସ୍ତ୍ର, ରଙ୍ଗ ଇତ୍ୟାଦି ବଦଳାଇ ନୂଆ ରଙ୍ଗ ଓ ବସ୍ତ୍ର ଦିଆଗଲେ ତାକୁ ଶ୍ରୀଅଙ୍ଗଫିଟା କୁହାଯାଏ । ଏଥିରେ ଜଗନ୍ନାଥଙ୍କ କଳେବର ମଧ୍ୟରେ ଥିବା ବ୍ରହ୍ମକୁ ସ୍ପର୍ଶ କରାଯାଏ ନାହିଁ । ପ୍ରକୃତି ନବକଳେବର ହେଉଛି ନୂତନ ଦାରୁରେ ପୁରୁଣା ଦାରୁର ବ୍ରହ୍ମକୁ ସ୍ଥାପନ କରିବା ।

ଯେଉଁ ସମୟରେ ନବକଳେବର ପଡ଼େ ତା'ର ପୂର୍ବରୁ ପ୍ରସ୍ତୁତି ପର୍ବ ଆରମ୍ଭ ହୁଏ । ଚୈତ୍ର ଶୁକ୍ଳ ଦଶମୀ ତିଥିରେ ଦାରୁ ଅନ୍ୱେଷଣ କରିବାକୁ ଶୁଭ ଅନୁକୂଳ ହୁଏ । ଯାତ୍ରା ପୂର୍ବରୁ ଶ୍ରୀମନ୍ଦିରରୁ ଆଜ୍ଞାମାଳ ଓ ଶାଢ଼ୀ ବନ୍ଧାଇ ଗଜପତି ରାଜାଙ୍କ ନଅରକୁ ଯାଆନ୍ତି । ସେଠାରେ ରାଜା ସେମାନଙ୍କୁ ଗୁଆଟେକି ଦିଅନ୍ତି । ତା'ପରେ ସେମାନେ ଶ୍ରୀଜଗନ୍ନାଥ ବଲ୍ଲଭ ମଠକୁ ଯାଇ ସେଠାରେ ତିନି ରାତି ରହି ପୁରୀ ଜିଲ୍ଲାର କାକଟପୁରକୁ ଯାତ୍ରାକରନ୍ତି । ସେଠାରେ ଦେଉଳିମଠରେ ଦାରୁ ଅନ୍ୱେଷଣକାରୀ ସେବକମାନେ ଥାଆନ୍ତି । ପାଞ୍ଚଜଣ ବ୍ରାହ୍ମଣ, ଅଠାଇଶ ଜଣ ଦଇତା, ଚାରି ଜଣ ବିଶ୍ୱକର୍ମା, ପତିମହାପାତ୍ର, ଲେଙ୍କା, ଦେଉଳକରଣ ଓ ଶ୍ରୀମନ୍ଦିର ଜଗୁଆଳି । ପ୍ରାଚୀ ନଦୀରେ ସ୍ନାନ କରି ମା'ମଙ୍ଗଳାଙ୍କୁ ମାର୍ଜନା କରନ୍ତି । ସେଠାରେ ମା'ମଙ୍ଗଳାଙ୍କର ସ୍ୱପ୍ନାଦେଶ ପାଇଁ ସେବକମାନେ ଦାରୁର ସନ୍ଧାନରେ ବାହାରନ୍ତି ।

ମଙ୍ଗଳାଙ୍କର ସ୍ୱପ୍ନାଦେଶ ଅନୁଯାୟୀ ସେବକମାନେ ଠିକ୍ ଦାରୁ ପାଖରେ ପହଁଚନ୍ତି । ଦାରୁର ଲକ୍ଷଣ ଦେଖିସାରିଲା ପରେ ବନଯାଗ ଆରମ୍ଭ ହୁଏ । ଶବରପଲ୍ଲୀ ଓ ହୋମ ମଣ୍ଡପ ନିର୍ମାଣ କରାଯାଇ ବିଧିବଦ୍ଧ ଭାବରେ ଯଜ୍ଞ ହୁଏ । ହୋମ ସରିବା ପରେ ଅସ୍ତ୍ର ପୂଜା ଆରମ୍ଭ ହୁଏ । ସେହି ଅସ୍ତ୍ରଗୁଡ଼ିକ ହେଲା ସୁନା, ରୁପା ଓ ଲୁହାର କୁରାଢ଼ି । ପ୍ରଥମେ ସୁନା ଓ ତା'ପରେ ରୁପା କୁରାଢ଼ୀକୁ ଦାରୁରେ ଛୁଆଁଇ ଦିଅନ୍ତି । ତା'ପରେ ଲୁହା କୁରାଢ଼ିରେ ଦାରୁ ଛେଦନ କରାଯାଏ । ଦାରୁ ଭୂମିରେ ପଡ଼ିବା ପରେ ଗଣ୍ଠି କରାଯାଏ । ସେଠାରେ ପରମ୍ପରା ଅନୁସାରେ ବେଲ, ଡେଙ୍ଗୁଳି ଓ କେନ୍ଦୁ କାଠରେ ଛୋଟ ରଥ ନିର୍ମାଣ କରାଯାଇ ପ୍ରତିଷ୍ଠା କରାଯାଏ । ତିମୂର୍ତ୍ତିର ଦାରୁକୁ ଶଗଡ଼ରେ ଲଦି ପାଟ କନାରେ ଆବୃତ କରିଦିଆଯାଏ । ସେହି ଶଗଡ଼କୁ ଲୋକେ ଟାଣି ଟାଣି ଶ୍ରୀକ୍ଷେତ୍ରରେ ପହଞ୍ଚନ୍ତି । ବାଟରେ ଲୋକେ ଦାରୁକୁ ପୂଜା କରନ୍ତି । ବାଟଯାକ ଘଣ୍ଟା ମାଦଳ ବାଜୁଥାଏ । କୀର୍ତ୍ତନ ହେଉଥାଏ । ଚାରି ଗୋଟି ଶଗଡ଼ରେ ଦାରୁ ରଖାଯାଇଥାଏ । ପ୍ରଥମ ଶଗଡ଼ରେ ସୁଦର୍ଶନ, ଦ୍ୱିତୀୟ ଶଗଡ଼ରେ, ବଳଭଦ୍ର ତୃତୀୟ ଶଗଡ଼ରେ ସୁଭଦ୍ରା ଓ ଶେଷ ଚତୁର୍ଥ ଶଗଡ଼ରେ ଜଗନ୍ନାଥଙ୍କ ଦାରୁ ରଖାଯାଇଥାଏ । ଦାରୁ ଶ୍ରୀକ୍ଷେତ୍ରରେ ଅଠର ନଳା ପାଖରେ ପହଞ୍ଚିଲେ ଗଜପତି ପ୍ରଣତି ଜଣାଇ ଶ୍ରୀମନ୍ଦିରକୁ କଢ଼ାଇ ନିଅନ୍ତି । ଶ୍ରୀମନ୍ଦିରକୁ ଉତ୍ତର ଦ୍ୱାର ଦେଇ ଦାରୁକୁ ମନ୍ଦିର ଭିତରକୁ ନିଆଯାଏ । କୋଇଲି ବୈକୁଣ୍ଠରେ ନିର୍ମିତ ହୋଇଥିବା ଦାରୁ ଘରେ ରଖାଯାଏ । ଦେବସ୍ନାନ ପୂର୍ଣ୍ଣିମା ପୂର୍ବରୁ ଦାରୁ ଶ୍ରୀମନ୍ଦିରରେ ପହଞ୍ଚେ ଓ ସ୍ନାନ ପୂର୍ଣ୍ଣିମା ଦିନ ଶ୍ରୀଜଗନ୍ନାଥାଦି ବିଗ୍ରହମାନଙ୍କ ସ୍ନାନ ହେବା ସଙ୍ଗେ ସଙ୍ଗେ ନୂତନ ଦାରୁକୁ ମଧ୍ୟ ସ୍ନାନ କରାଯାଏ । ତତ୍‌ପର ଦିନଠାରୁ ଶ୍ରୀବିଗ୍ରହ ନିର୍ମାଣ କାର୍ଯ୍ୟ ଆରମ୍ଭ ହୁଏ । ବିଗ୍ରହ ନିର୍ମାଣ ପୂର୍ବରୁ ହୋମ ହୁଏ । ଘଣ୍ଟା, ମାଦଳ ଆଦି ବାଜାବାଜେ । ଆଷାଢ଼ ଚତୁର୍ଦ୍ଦଶୀ ପୂର୍ବରୁ ବିଗ୍ରହ ନିର୍ମାଣ କରାଯାଏ । ସରେ । ଚତୁର୍ଦ୍ଦଶୀ ରାତିରେ ବ୍ରହ୍ମ ପରିବର୍ତ୍ତନ କରାଯାଏ । ପତିମହାପାତ୍ର ବ୍ରହ୍ମ ପରିବର୍ତ୍ତନ କରନ୍ତି । ଚତୁର୍ଦ୍ଦଶୀର ମଧ୍ୟ ରାତ୍ରରେ ପତିମହାପାତ୍ରଙ୍କର ହସ୍ତ, ପଦ ଓ ଚକ୍ଷୁଆଦି ପାଟ କନାରେ ବନ୍ଧାଯାଏ । ତା'ପରେ ସେ ପୁରୁଣା ବିଗ୍ରହରୁ ବ୍ରହ୍ମ ନେଇ ନୂତନ ବିଗ୍ରହରେ ସ୍ଥାପନ କରନ୍ତି । ବ୍ରହ୍ମ ପରିବର୍ତ୍ତନ ସରିଲେ ନୂତନ ପାଟ ଡୋର ଲାଗେ । ତା'ପରେ ନେତ୍ରୋତ୍ସବ ହୁଏ । ଏହାକୁ ଶ୍ରୀଜଗନ୍ନାଥଙ୍କର ନବଯୌବନ ଦର୍ଶନ କୁହାଯାଏ । ଏହା ହିଁ ଶ୍ରୀଜଗନ୍ନାଥଙ୍କର ନବକଳେବର ।

ଏହାପରେ ରଥଯାତ୍ରା ହୁଏ । ଆଷାଢ଼ ଶୁକ୍ଳ ଦ୍ୱିତୀୟା ତିଥିରେ ଶ୍ରୀଗୁଣ୍ଡିଚା ଯାତ୍ରା ହୁଏ । ତିନିଠାକୁର ପହଣ୍ଡି ହୋଇ ରଥକୁ ଆସନ୍ତି । ଜଗନ୍ନାଥଙ୍କ ରଥର ନାମ ନନ୍ଦିଘୋଷ, ବଳଭଦ୍ରଙ୍କ ରଥର ନାମ ତାଳଧ୍ୱଜ ଓ ସୁଭଦ୍ରା ରଥର ନାମ ଦେବଦଳନ । ଗଜପତି ମହାରାଜା ଛେରାପହଁରା କରି ସାରିବା ପରେ ଯାତ୍ରୀମାନେ ରଥ ଟାଣନ୍ତି । ରଥ ଯାଇ ଗୁଣ୍ଡିଚା ମନ୍ଦିରରେ ପହଞ୍ଚେ । ସେଠାରେ ନଅ ଦିନ ରହି ଶ୍ରୀଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ପୁଣି ଶ୍ରୀମନ୍ଦିରକୁ ଫେରନ୍ତି । ଏହାକୁ ବାହୁଡ଼ା ଯାତ୍ରା କୁହାଯାଏ । ରାଜାଙ୍କ ନଅର ପାଖରେ ଲକ୍ଷ୍ମୀନାରାୟଣଙ୍କ ଭେଟସାରି, ଶ୍ରୀଜଗନ୍ନାଥ ମନ୍ଦିରକୁ ପ୍ରବେଶ କରନ୍ତି । ଏକାଦଶୀ ଦିନ ମହାପ୍ରଭୁଙ୍କର ସୁନାବେଶ ହୁଏ । ସେଠାରେ ତାଙ୍କର ଅଧର ପଣା ଭୋଗ ପରେ ନୀଳାଦ୍ରିକୁ ବିଜେ କରନ୍ତି । ଶ୍ରୀମନ୍ଦିରକୁ ପ୍ରବେଶ କରିବା ସମୟରେ ସେ ଦକ୍ଷିଣଦୋର ପ୍ରକାଶ କରନ୍ତି । ତତ୍‌ପରେ ଲକ୍ଷ୍ମୀନାରାୟଣ କଳି ହୁଏ । ରଥଯାତ୍ରାକୁ ଶ୍ରୀଜଗନ୍ନାଥ ଲକ୍ଷ୍ମୀଙ୍କୁ ନନେଇ ଭଉଣୀ ସୁଭଦ୍ରାକୁ ନେଇ ଯାଇଥିବାରୁ ଲକ୍ଷ୍ମୀ କଳିକରନ୍ତି । ଜଗନ୍ନାଥ ଲକ୍ଷ୍ମୀଙ୍କର ଅଭିମାନ ଭାଙ୍ଗି ମନ୍ଦିରକୁ ପ୍ରବେଶ କରନ୍ତି । ଶ୍ରୀଜଗନ୍ନାଥଙ୍କ ନବକଳେବର ହେଉଛି ମଣିଷ ଜୀବନର ଏକ ରହସ୍ୟମୟ ରୂପକ । ଏହାରି ମଧ୍ୟ ଦେଇ ମଣିଷର ଜନ୍ମବିକାଶ ପ୍ରକ୍ରିୟାକୁ ସୂଚିତ କରାଯାଇଛି । ତାଙ୍କର ଦଶଅବତାର ମଧ୍ୟ ଦେଇ ଜୀବନର କ୍ରମବିକାଶ ପ୍ରକାଶିତ । ଦାରୁବ୍ରହ୍ମଙ୍କ ରହସ୍ୟମୟ ଲୀଳା ହିଁ ନବକଳେବର । ବାର ବର୍ଷରେ ଥରେ ଲେଖା ନବକଳେବର ହୁଏ । ସେହି ବର୍ଷ ଆଷାଢ଼ ମାସରେ ଦୁଇଟି ପୂର୍ଣ୍ଣିମା ପଡ଼େ । ଏହି ମାସକୁ ପୁରୁଷୋତ୍ତମ ମାସ ମଧ୍ୟ କୁହାଯାଇଥାଏ । ଯେଉଁ ଦାରୁ ନବକଳେବର ପାଇଁ ଆସେ ସେଥିରେ ଶଙ୍ଖ, ଚକ୍ର, ଗଦା ଓ ପଦ୍ମ ଚିହ୍ନ ଥାଏ । ତାକୁ ଏକ ବୃହତ ସର୍ପ ଜଗିରହିଥାଏ । ତାହା ମଧ୍ୟ ଅକ୍ଷତ ରହିଥାଏ । ସେହି ବୃକ୍ଷରେ ମଧ୍ୟ ପକ୍ଷୀ ବସା କରିନଥାଏ । ତିନୋଟି ନଦୀ ଅଥବା ତିନୋଟି ପର୍ବତ ଅଥବା ତିନୋଟି ରାସ୍ତାର ସଂଯୋଗ ସ୍ଥଳରେ ଏହି ବୃକ୍ଷ ରହିଥାଏ ।

ନବକଳେବର ସରିଲା ପରେ ପୁରୁଣା ବିଗ୍ରହକୁ ଶ୍ରୀମନ୍ଦିର ମଧ୍ୟସ୍ଥ ମାଧବୀଲତା ଭିତରେ ସ୍ଥାପନ କରାଯାଏ । ସେହି ଦାରୁଙ୍କର ଅନ୍ତ୍ୟେଷ୍ଟିକ୍ରିୟା ହୁଏ । ବିଶ୍ୱାବସୁ ଶବରବଂଶୀ ଦଇତା ସେବକମାନେ ଅନ୍ତ୍ୟେଷ୍ଟିକ୍ରିୟା ପାଳନ କରନ୍ତି । ଦଶ ଦିନ ପର୍ଯ୍ୟନ୍ତ ହବିଷାନ୍ନ ଖାଇ ଏକାଦଶୀ ଦିନ ବଡ଼ ଦେଉଳରୁ ବାହାରି ମାର୍କଣ୍ଡେୟ ପୁଷ୍କରିଣୀରେ ସ୍ନାନାଦି କାର୍ଯ୍ୟ କରନ୍ତି । ରାଜାଙ୍କଠାରୁ ନୂତନ ବସ୍ତ୍ର ନେଇ ପରିଧାନ କରନ୍ତି । ଶ୍ରୀମନ୍ଦିରକୁ ଆସି ଶାନ୍ତି ଉଦକ ପାନକରନ୍ତି । ଦ୍ୱାଦଶୀ ଦିନ ଶହଶହ ବ୍ରାହ୍ମଣ ସେବାୟତମାନେ ନିମନ୍ତ୍ରିତ ହୋଇ ପ୍ରସାଦ ସେବନ କରନ୍ତି ।

ଏହିପରି ଭାବରେ ଶ୍ରୀଜଗନ୍ନାଥଙ୍କ ନବକଳେବର ଓ ରଥ ଯାତ୍ରା ବାସ୍ତବିକ୍ ବିଶିଷ୍ଟ ଘଟଣା । ହଜାର ହଜାର ଧର୍ମପ୍ରାଣ ବ୍ୟକ୍ତି ଶ୍ରୀକ୍ଷେତ୍ରକୁ ଆସି ଶ୍ରୀଜଗନ୍ନାଥଙ୍କୁ ଏହି ଯାତ୍ରା ଦେଖି ଜୀବନକୁ ଧନ୍ୟ ମନେକରନ୍ତି ।

---

*କରଞ୍ଜିଆ ମହାବିଦ୍ୟାଳୟର ପୂର୍ବତନ ଛାତ୍ର ସଂସଦ ସଭାପତି,*
*ଗ୍ରାମ/ପୋଃ- ଛୁରିଂ, ମୟୂରଭଞ୍ଜ ।*



*ସଙ୍ଗୀତ ସୁଧାକର ବାଳକୃଷ୍ଣ ଦାସଙ୍କ ୭୦ତମ ଜନ୍ମ ଦିବସ ଅବସରରେ ରାଜ୍ୟପାଳ ଶ୍ରୀ ଯଜ୍ଞଦତ୍ତ ଶର୍ମା ସୂଚନା ଭବନଠାରେ ତାଙ୍କୁ ସମ୍ବର୍ଦ୍ଧିତ କରୁଛନ୍ତି । ସଂସ୍କୃତି ମନ୍ତ୍ରୀ ଶ୍ରୀ ଶରତ କୁମାର କର ଉପସ୍ଥିତ ଅଛନ୍ତି । (୩୧/୫/୧୯୯୨)*




ଶ୍ରୀକାନ୍ତ କୁମାର ପାଣିଗ୍ରାହି

(୧)

ମାଗି ମାଗି ସବୁ ମାଗିବାର ସରିଯିବା ପରେ
ଡାକି ଡାକି ପାଟି ମୋର ଥମି ଯିବା ପରେ
ଭାବି ଭାବି ଭାବନାର ସୀମା ଟପିଗଲା ପରେ
ଗାଇ ଗାଇ ଗୀତ ସବୁ  ସରିଗଲା ପରେ
କହି କହି ଭାଷାସବୁ ହଜିଗଲା ପରେ
ପ୍ରଭୋ !
ତୁମେ ତ ଥରେବି ତ କିଛି ବି ଦେଲନି
ଦାରୁବ୍ରହ୍ମ ତୁମେ ସତରେ ; କିଛି ଶୁଣିଲନି
ଏଣୁ ଆଉ କିଛି ମାଗୁ ନାହିଁ ॥

(୨)

ମାଗୁ ନାହିଁ
ଧନ, ଜନ, ଗୋପଲକ୍ଷ୍ମୀ
ମାଗୁନାହିଁ ସମ୍ମାନ, ସମ୍ପତ୍ତି
ଲୋଡ଼ା ନାହିଁ କିଛି ହେଲେ
ମାଗୁନାହିଁ ଶରଧା ବାଲିରୁ ବି ହାତେ।

(୩)

ମୁଁ ଖାଲି ନୀରବରେ ଏତିକି ମାଗିବି
ମହାବାହୁ !
ବାରବାର ମତେ ଯିମିତି କିଛି ମାଗିବାକୁ ନପଡ଼େ
କାହିଁକିନା
ମୁଁ ଅନାଥ ; ତୁମେ ମୋର ନାଥ
ପ୍ରଭୋ ! ମୁଁ ତ ନିହାତି ନିଃସ୍ୱଟିଏ
ଆଉ ତୁମେ ମୋର ନିଃସ୍ୱ ପ୍ରଭୁ ॥
(ଆକାଶବାଣୀ ସମ୍ବଲପୁର କେନ୍ଦ୍ର ସୌଜନ୍ୟରୁ)

---

ଡିପାର୍ଟମେଣ୍ଟ ଅଫ ଏନ୍‌ଭିରାନ୍‌ମେଣ୍ଟାଲ ପ୍ଲାନିଂ,
ସ୍କୁଲ ଅଫ ପ୍ଲାନିଂ ଏଣ୍ଡ ଆର୍କିଟେକ୍‌ଚର୍‌,
୪, ବ୍ଲକ୍ 'ବି', ଇନ୍ଦ୍ରପ୍ରସ୍ଥ ଇଷ୍ଟେଟ୍‌,
ନୂଆଦିଲ୍ଲୀ-୧୧୦୦୦୨ ।




ଶ୍ରୀ ସତୀଶ ପାଢ

ମଣିଷର ସୁଖ ଦୁଃଖ, ଲୁହ ଲହୁ, ଧର୍ମ, ପ୍ରେମ, ବ୍ୟଥା ବୀରତ୍ୱ ଓ ସଂସ୍କୃତିର ଭିତ୍ତିଭୂମିରେ ହିଁ ସାହିତ୍ୟର ସୃଷ୍ଟି । ତେଣୁ, ସାମାଜିକ ତଥା ଅର୍ଥନୈତିକ ପରିବେଶ ଓ ସାଂସ୍କୃତିକ ମୂଲ୍ୟବୋଧର ବିବର୍ତ୍ତନ ହିଁ ସାହିତ୍ୟିକର ଲେଖନୀକୁ ଯୁଗଯୁଗ ଧରି ପ୍ରଭାବିତ କରି ଆସିଛି । ସାହିତ୍ୟ କଦାପି ନିତ୍ୟ ବା ଅପରିବର୍ତ୍ତନୀୟ ନୁହେଁ । ପରିବର୍ତ୍ତନ ହିଁ ସାହିତ୍ୟର ପ୍ରାଣକେନ୍ଦ୍ର ।

•

ପ୍ରାଚୀନ ପ୍ରସ୍ତର ଯୁଗରେ ଯେତେବେଳେ ମାନବ ସଭ୍ୟତାର ଉଦ୍ଭବ ହେଲା, ସେତେବେଳେ ଲିଖିତ ଭାଷା ନଥିଲା । ଅନେକଙ୍କ ମତରେ ପ୍ରାୟ ୨୦ ହଜାର ବର୍ଷ ତଳେ ସ୍ଥାପତ୍ୟ ସାହିତ୍ୟର ସୃଷ୍ଟି ହୋଇଥିଲା । ତତ୍କାଳୀନ ସାମାଜିକ ପରିସ୍ଥିତି ଓ ମଣିଷ ଜୀବନର ଗତିପଥ ଏହି ସ୍ଥାପତ୍ୟ ସାହିତ୍ୟରେ ପ୍ରତିଫଳିତ ହୋଇଥିଲା । ସାମାଜିକ ବିବର୍ତ୍ତନ ସହ ତାଳଦେଇ ସାହିତ୍ୟର ଧାରାରେ ମଧ୍ୟ ପରିବର୍ତ୍ତନ ପ୍ରତିଫଳିତ ହେଲା । କ୍ରମେ ମଣିଷ ହେଲା ଉନ୍ନତ, ସଭ୍ୟ । ସାମାଜିକ ଜୀବନ ହେଲା ସ୍ୱୟଂ ସମ୍ପୂର୍ଣ୍ଣ । ପାରିବାରିକ ଜୀବନ ହେଲା ନିୟନ୍ତ୍ରିତ । ଭାରତବର୍ଷ, ମିଶର, ଗ୍ରୀକ୍ ପ୍ରଭୃତି ଦେଶରେ ନୂତନ ଉନ୍ନତ ସଭ୍ୟତା ଗଢ଼ି ଉଠିଲା । ଏହା ପରେ ପରେ ଆମ ଦେଶରେ ସୃଷ୍ଟି ହେଲା ବେଦ–ଯାହାକି ସମ୍ଭବତଃ ପ୍ରଥମ ଲିଖିତ ସାହିତ୍ୟ । ଅବଶ୍ୟ ବେଦ ପ୍ରଥମେ ଶୁଣିକରି ମନେ ରଖାଯାଉଥିଲା । ତେଣୁ ତାହାର ଅନ୍ୟନାମ ଶ୍ରୁତି । ପରବର୍ତ୍ତୀ ପର୍ଯ୍ୟାୟରେ ଏହା ଲିଖିତ ଆକାରରେ ଲିପିବଦ୍ଧ ହେଲା । ବେଦର ସମସାମୟିକଭାବେ ମିଶର ଦେଶରେ ରଚିତ ହେଲା । ଇରାନୀୟ ଆଭେସ୍ତା ଗ୍ରନ୍ଥ । ସାମ୍ୟ, ମୈତ୍ରୀର କର୍ତ୍ତବ୍ୟବୋଧକୁ ନେଇ ସୃଷ୍ଟି ହୋଇଥିଲା ବିଶ୍ୱର ଏହି ଅମର ସାହିତ୍ୟ । ପରବର୍ତ୍ତୀ ପର୍ଯ୍ୟାୟରେ ସାମାଜିକ ପରିବର୍ତ୍ତନଦ୍ୱାରା ସାହିତ୍ୟ ମଧ୍ୟ ପ୍ରଭାବିତ ହେଲା । ସାହିତ୍ୟରେ ଈଶ୍ୱର ବିଶ୍ୱାସ ସହ କଳ୍ପନା ବିଳାସ ମଧ୍ୟ ସ୍ଥାନ ପାଇଲା । ପ୍ଲେଟୋଙ୍କ ଭାଷାରେ "କବି ସ୍ୱର୍ଗରୁ ଆସି ନୂତନ କଥା କହନ୍ତି" । କିନ୍ତୁ ପ୍ରକୃତ କ୍ଷେତ୍ରରେ ମନୁଷ୍ୟ ହୃଦୟର ସୂକ୍ଷ୍ମ ଅନୁଭୂତିର ପରିପ୍ରକାଶ ହିଁ ପ୍ରକୃତ ସାହିତ୍ୟ । କୀଟ୍ସ, ବାଉଲିନ୍, ସେଲି ଓ ଟଲଷ୍ଟୟ ପ୍ରଭୃତିଙ୍କର ମତରେ ମନୁଷ୍ୟ ଜୀବନର ମାନ ଓ ମୁକୁର ହିଁ ସାହିତ୍ୟ ।

ଭାରତର ପ୍ରାଚୀନ ସଂସ୍କୃତିଥିଲା ଧର୍ମଭିତ୍ତିକ । ବିଭିନ୍ନ ଜାତି ଓ ଭାଷାଭାଷୀ ଲୋକଙ୍କୁ ନେଇ ଆକୁମାରୀ ହିମାଚଳ ଏହି ଅପୂର୍ବ ସଂସ୍କୃତିର ଥିଲା ଏକ ପବିତ୍ର ମିଳନସ୍ଥଳ । ଅନୈକ୍ୟ ମଧ୍ୟରେ ଐକ୍ୟ, ବୈଷମ୍ୟ ମଧ୍ୟରେ ସାମ୍ୟକୁ ନେଇ ରାଷ୍ଟ୍ରୀୟ ଐକ୍ୟ ଓ ସଂହତି ରକ୍ଷା କରାଯାଇଥିଲା । ସମସାମୟିକ ସାହିତ୍ୟରେ ଏହି ସାଂସ୍କୃତିକ ଚିନ୍ତାଧାରା ଓ ଭାବୋଚ୍ଛ୍ୱାସ ପ୍ରତିଫଳିତ ହୋଇଥିଲା । ଆଧ୍ୟାତ୍ମିକ ସଂସ୍କୃତି ଏବଂ ସାମାଜିକ ତଥା ବ୍ୟକ୍ତିଗତ ଜୀବନରେ ଏହାର ପ୍ରଭାବକୁ ନେଇ ମହର୍ଷି ବାଲ୍ମିକୀ ସୃଷ୍ଟିକଲେ ମହାନ୍ ଗ୍ରନ୍ଥ ରାମାୟଣ । ପରବର୍ତ୍ତୀ କାଳରେ ବେଦବ୍ୟାସଙ୍କ ଦ୍ୱାରା ରଚିତ ମହାଭାରତ ଆମ ସାଂସ୍କୃତିକ ବିପ୍ଲବର ଏକ ଶାଶ୍ୱତ ଆଲେଖ୍ୟ । ଭକ୍ତିଭାବ, ଜ୍ଞାନଭାବ ଓ କର୍ମଭାବର ଅପୂର୍ବ ସମନ୍ୱୟରେ ଲିଖିତ ଏହି ବିଶ୍ୱ ସାହିତ୍ୟରେ ଧର୍ମ ଓ ସତ୍ୟର ବିଜୟ ଅତି ଜୀବନ୍ତ ଭାବରେ ଚିତ୍ରଣ କରାଯାଇଛି ।

ଆଜି କିନ୍ତୁ, ତାହା– ଅତୀତ । କାଳର ବିବର୍ତ୍ତନରେ ଆମର ସଂସ୍କୃତି, ରାଷ୍ଟ୍ରୀୟ ସଂହତି ଓ ଐକ୍ୟ ବିପନ୍ନ ହୋଇଛି । ଶିଳ୍ପ ବିପ୍ଳବ, ରାଜନୈତିକ ପଟ୍ଟପରିବର୍ତ୍ତନ ତଥା ବିଜ୍ଞାନର ବିକାଶ ଆମର ସାମାଜିକ ଓ ବ୍ୟକ୍ତିଗତ ଜୀବନକୁ ପ୍ରଭାବିତ କରିଛି । ଆଜି ମାନବ ଜାତିର ସଭ୍ୟତା ଓ ସଂସ୍କୃତି ଆନ୍ତର୍ଜାତିକ ସଂସ୍କୃତିର ଏକ ନିଖୁଣ ପ୍ରତିଛବି । ମଣିଷ ଆଜି ଯନ୍ତ୍ରମାନବରେ ପରିଣତ ହୋଇଛି । ପ୍ରାଚୀନ କାଳରେ ଋଷିବଚନ, ବିବେକର ବାଣୀ, ଶାଶ୍ୱତ ଈଶ୍ୱରୀୟ ବିଶ୍ୱାସ ଓ ଆତ୍ମ ବିଶ୍ୱାସ ଫଳରେ ମଣିଷ ମନରେ ସୃଷ୍ଟି ହୋଇଥିବା ଭାବପ୍ରବଣତା ଆଜିର ପରିବର୍ତ୍ତିତ ପରିସ୍ଥିତିରେ ସଂପୂର୍ଣ୍ଣ ରୂପେ ଲୋପ ପାଇଛି । ଆଜିର ସମାଜ ବୈଷୟିକ ଓ ଜଡ଼ବାଦୀ । ବୈଜ୍ଞାନିକ କୌଶଳ ପ୍ରୟୋଗ ମାଧ୍ୟମରେ ଏକ ନୂତନ ଭବିଷ୍ୟତର ସନ୍ଧାନ ଓ ସୀମାହୀନ ଏକ ନବ ଦିଗନ୍ତ । ଆଧୁନିକ ମାନବ ସମାଜର ଲକ୍ଷ୍ୟ । ଈଶ୍ୱର ଶକ୍ତି

ଅପେକ୍ଷା ନିଜର ସୃଜନଶକ୍ତି ଉପରେ ତା'ର ଅଖଣ୍ଡ ବିଶ୍ୱାସ । ଆଧୁନିକ ସାହିତ୍ୟ ଏହି ଆଧୁନିକ ମାନସର ପ୍ରତିଫଳନ ମାତ୍ର । କିନ୍ତୁ ଆମକୁ ମନେ ରଖିବାକୁ ହେବ– କେବଳ ବିଜ୍ଞାନର ନୂତନ ଜୟଯାତ୍ରା ଏବଂ ବୌଦ୍ଧିକ ଚେତନାର ବିକାଶ କଦାପି ବିଶ୍ୱ ସଭ୍ୟତା ବା ମାନବ ସମାଜକୁ ସମୃଦ୍ଧ କରିବା ସମ୍ଭବପର ନୁହେଁ । ସେଥିପାଇଁ ମଧ୍ୟ ଆବଶ୍ୟକ ହୃଦୟର ବିକାଶ । ଏହି ଉଭୟର ସମନ୍ୱୟ ହିଁ ବିଶ୍ୱକୁ ଏବଂ ଆମର ସଭ୍ୟତାକୁ ଅମୃତମୟ କରିପାରିବ । ତେଣୁ ସାମ୍ପ୍ରତିକ ପରିସ୍ଥିତିରେ ଏହି ମାନବବାଦକୁ ଉପଯୁକ୍ତ ଭାବେ ପରିସ୍ଫୁଟନ କରିବା ଆଜିର ସାହିତ୍ୟିକର ଏକ ମୁଖ୍ୟ ଭୂମିକା ।

ଇତିହାସକୁ ଅନୁଶୀଳନ କଲେ ଏହା ସ୍ପଷ୍ଟ ରୂପେ ପ୍ରତିପାଦିତ ହୁଏ ଯେ,ଅତୀତରେଆମର ବୌଦ୍ଧିକ ଚେତନାଦ୍ୱାରା ଗଢ଼ି ଉଠିଥିବା ସଭ୍ୟତା– ଆମେ ଭସ୍ମାସୁର ପରି ଧ୍ୱଂସ କରି ଆସିଛେ । କଠୋର ପରିଶ୍ରମ ଓ ବୌଦ୍ଧିକ ବିକାଶ ଦ୍ୱାରା ଗଢ଼ି ଉଠିଥିବା ବିଶ୍ୱ ସଭ୍ୟତାର ଧ୍ୱଂସର ମୂଳକାରଣ ହେଉଛି ମଣିଷମନର ଜାନ୍ତବ ପ୍ରବୃତ୍ତି । ସହସ୍ର ବର୍ଷର ପରମ୍ପରା ଓ ସାଧନାର ଫଳ ଏହି କାରଣ ଯୋଗୁଁ ହିଁ ବିଲୁପ୍ତ ହୋଇଛି । ସଭ୍ୟ ମନୁଷ୍ୟର ଏହି ବିରୋଧାତ୍ମକ ଆତ୍ମଚିନ୍ତନ ଓ ପ୍ରବୃତ୍ତିକୁ ନିୟନ୍ତ୍ରଣ କରିବା ପ୍ରତ୍ୟେକ ସାହିତ୍ୟିକଙ୍କର ପ୍ରଧାନ କର୍ତ୍ତବ୍ୟ ଓ ଧର୍ମ ହେବା ଉଚିତ । ସାହିତ୍ୟିକ ସର୍ଜନାରେ ମାନବିକ ଚେତନାର ପରିପ୍ରକାଶ ଦ୍ୱାରା ହିଁ ବିପଥଗାମୀ ମାନବକୁ ଉଚିତ ମାର୍ଗରେ ପରିଚାଳିତ କରିହେବ ।

ଭାରତୀୟ ସଂସ୍କୃତିର ମୂଳାଧାର ଥିଲା ସମଗ୍ର ବିଶ୍ୱବାସୀ ଏକ କୁଟୁମ୍ବ । ପରିବାର ପାଇଁ ନିଜର , ଗ୍ରାମ ପାଇଁ ପରିବାରର ଦେଶ ପାଇଁ ଗ୍ରାମର ଓ ବିଶ୍ୱ ପାଇଁ ଦେଶର ଆତ୍ମବଳୀ ଥିଲା । ଏହି ମହାନ୍ ସାଂସ୍କୃତିକ ପରମ୍ପରାର ଆଦର୍ଶ । ଆଜି କିନ୍ତୁ ଆଧୁନିକ ମନୁଷ୍ୟ ମନରେ ଏକ ବିରାଟ ପ୍ରଶ୍ନବାଚୀ । ସମାଜ ନା ବ୍ୟକ୍ତି ? କିଏ ପ୍ରକୃତରେ ବଡ଼ ? ଅନେକଙ୍କର ଯୁକ୍ତି ଯେ ବ୍ୟକ୍ତି ହେଉଛି ସମାଜର ପ୍ରାଣକେନ୍ଦ୍ର । ତେଣୁ ବ୍ୟକ୍ତିତ୍ୱର ବିକାଶ ସମାଜକୁ ବିକଶିତ କରିବ । ଏହା କିନ୍ତୁ ପୁରାପୁରି ଏକ ଆତ୍ମକେନ୍ଦ୍ରିକ ଚିନ୍ତାଧାରା । ବ୍ୟକ୍ତି ସ୍ୱାଧୀନତା ଓ ବିକାଶ ଏକ ଉନ୍ନତ ସମାଜରେ ଅପରିହାର୍ଯ୍ୟ । କିନ୍ତୁ ସମାଜ ଓ ରାଷ୍ଟ୍ରର ଉର୍ଦ୍ଧ୍ୱରେ ବ୍ୟକ୍ତିକୁ ଆସନ ଦେବା ଏକ ଓଲଟା ଚିନ୍ତାଧାରା । ସାହିତ୍ୟରେ ମାନବବାଦର ପରିସ୍ଫୁଟନ ଏହି ସମସ୍ୟାର ସମାଧାନ ଦିଗରେ ଦିଗ୍‌ଦର୍ଶକ ହୋଇ ପାରିବ । ଅତୀତରେ ସାହିତ୍ୟ ଥିଲା ସଂହତିର ପ୍ରତୀକ । ବ୍ୟକ୍ତିବାଦ ଯେପରି ଏହି ଚିନ୍ତାଧାରାକୁ ବିପନ୍ନ ନ କରେ, ସେଥି ପାଇଁ ଆମକୁ ଉଦ୍ୟମ କରିବାକୁ ହେବ

ସ୍ୱାଧୀନ ଭାରତର ସମ୍ବିଧାନରେ ଭାରତବର୍ଷକୁ ଏକ ଧର୍ମ ନିରପେକ୍ଷ ରାଷ୍ଟ୍ର ରୂପେ ଗ୍ରହଣ କରାଗଲା । ଏହା ବିଶ୍ୱରେ ଏକ ନୂତନ ଆଦର୍ଶ । ଆମର ସମ୍ବିଧାନରେ ଧାର୍ମିକ ସମନ୍ୱୟ ଓ ସଂହତି ପାଇଁ ନିୟମ ପ୍ରଣୟନ କରାଗଲା । କିନ୍ତୁ ସାଧାରଣତନ୍ତ୍ରର ଦୀର୍ଘ ୪୨ ବର୍ଷ ପରେ ମଧ୍ୟ ସାମ୍ପ୍ରଦାୟିକ ଦଙ୍ଗାର ଅବସାନ ହୋଇ ନାହିଁ । ପରନ୍ତୁ, ଧର୍ମାନ୍ଧତା ଆଜି ବୃଦ୍ଧି ପାଇଛି । ଏହି ଘଡ଼ିସନ୍ଧି ବେଳରେ ସାହିତ୍ୟିକ ନିଜର ସୃଷ୍ଟିରେ ସାମ୍ୟ, ମୈତ୍ରୀ ଓ ଜାତୀୟ ସଂହତିକୁ ପ୍ରାଧାନ୍ୟ ଦେବା ଆବଶ୍ୟକ । କାବେରୀ ନଦୀର ଜଳ ବଣ୍ଟନକୁ କେନ୍ଦ୍ରକରି ତାମିଲନାଡୁ ଓ କର୍ଣ୍ଣାଟକରେ ଯେଉଁ ଅଶାନ୍ତି ଉତ୍ତେଜନା ପ୍ରକାଶ ପାଇଲା ଅଥବା ପଞ୍ଜାବ, ଜାମ୍ମୁ କାଶ୍ମୀର ଓ ଆସାମରେ ଆଜି ଯେଉଁ ରକ୍ତପାତ ହେଉଛି, ତାହାର ପ୍ରତିରୋଧ କରି ମାନବିକ ଚିନ୍ତାଧାରାର ଉଦ୍ରେକ କରିବା ପ୍ରତ୍ୟେକ ସାହିତ୍ୟିକଙ୍କର ଲକ୍ଷ୍ୟ ହେବା ଉଚିତ । କାରଣ, ଆଜିର ଏହି ସାମାଜିକ ଓ ସାଂସ୍କୃତିକ ସଙ୍କଟ ସମୟରେ ସାହିତ୍ୟିକର ସୃଜନୀ ଶକ୍ତି ହିଁ ଆମକୁ ନିଶ୍ଚିତ ଧ୍ୱଂସ ମୁଖରୁ ରକ୍ଷା କରିପାରିବ ।

ଆମ ସମାଜ ବର୍ତ୍ତମାନ୍ ଅସୁସ୍ଥ । ଯୌତୁକ ପାଇଁ ବଧୂହତ୍ୟା ଭଳି ବହୁ କଳଙ୍କ ଆଜି ପ୍ରତି ମୁହୂର୍ତ୍ତରେ ମାନବିକତାକୁ ତିଳ ତିଳ କରି ହତ୍ୟା କରୁଛି । ସାହିତ୍ୟିକର ମାନବବାଦୀ ଦୃଷ୍ଟିଭଙ୍ଗୀ ଏହି ପଥହରା ସମାଜକୁ ଉପଯୁକ୍ତ ପନ୍ଥାରେ ପରିଚାଳିତ କରିପାରିବ । ଉପଯୁକ୍ତ ମାର୍ଗ ଦର୍ଶନ ଦ୍ୱାରା ସେହି ପଥଭ୍ରଷ୍ଟ ମାନବ ସମାଜକୁ ଅମୃତର ସନ୍ଧାନ ଦେଇପାରିବ । କବି ଗଙ୍ଗାଧରଙ୍କ ଭାଷାରେ

"ବିଶ୍ୱ ଦେଖ ମଧୁମୟରେ ଜୀବନ
ବିଶ୍ୱ ଦେଖ ମଧୁମୟ ।
ମଧୁର ଝରଣା କରିବ ହରଣ
ତୋ ପାପ ମରଣ ଭୟରେ ଜୀବନ" ।

ସାହିତ୍ୟିକ ହିଁ ଆଜିର ଏହି ହଳାହଳ ମଧ୍ୟରେ ଅମୃତ ସୃଷ୍ଟି କରି ପାରିବ ।

ଆଜି ପୃଥିବୀରୁ ମାର୍କସ୍‌ବାଦ୍ ପ୍ରାୟ ବିଲୁପ୍ତ । କିନ୍ତୁ ଦାରିଦ୍ର୍ୟ, ଅଜ୍ଞାନର ଅନ୍ଧକାର, ବୁଭୁକ୍ଷା ପୃଥିବୀର ସବୁ ଦେଶରେ ସବୁ ଅଞ୍ଚଳରେ ପୂରି ରହିଛି । ବିଜ୍ଞାନର ଅଗ୍ରଗତି ଆଜି ଥିଲାବାଲା ଓ ନଥିଲାବାଲାଙ୍କ ଭିତରେ ସୃଷ୍ଟି କରିଛି ବିରାଟ ବ୍ୟବଧାନ । ଆଜି ବିଶ୍ୱ ଶାନ୍ତି ନାମରେ ଟେକି ଉଠୁଛି ନୂତନ ଉପନିବେଶବାଦ । ଗଣତନ୍ତ୍ର ମୁଖା ଭିତରେ ଆଜି ବ୍ୟକ୍ତିବାଦ ଓ ବ୍ୟକ୍ତି ପୂଜା ବିକଶିତ ହେଉଛି । ବିଶ୍ୱର ବିଭିନ୍ନ ରାଷ୍ଟ୍ରରେ ଶାସନ ଆଜି କଳୁଷିତ । ଦୁର୍ନୀତି ଶାସନ ସମୟରେ ଶାସକ ଓ ସମାଜର ବଡ଼ପଣକୁ ଲକ୍ଷ୍ୟକରି କବି ମେହର ଲେଖିଥିଲେ–

"ମନ ଯା'ର ବ୍ୟସ୍ତ ସଦା ପରସ୍ୱ ହରଣେ ।
ଧନ ଯା'ର ବିଦଳିତ ଗଣିକା ଚରଣେ ॥
ଜୀବନ ଯା' ଲକ୍ଷ ଲକ୍ଷ ଲୋକଙ୍କର ଭାର ।
ତାକୁ ମଧ୍ୟ ବୋଲିଥାନ୍ତି ଧର୍ମ ଅବତାର ॥"

ଆମର ସମାଜ ଆଜି ଏପରି ବ୍ୟକ୍ତିମାନଙ୍କ କବଳରୁ ମୁକ୍ତ କି? ଆମେ ତାରକା ଯୁଦ୍ଧ ପାଇଁ ଅସୁମାରି ଅର୍ଥବ୍ୟୟ କରୁଥିବା ବେଳେ ଆଫ୍ରିକାର ନାଇଜେରିଆରେ ଆଜି ଅଗଣିତ ନରନାରୀ ଦୁର୍ଭିକ୍ଷର ଶୀକାର ହେଉଛନ୍ତି । ଇରାକ୍‌ର ଲକ୍ଷ ଲକ୍ଷ ମୁମୂର୍ଷୁ ଶିଶୁ ଔଷଧ ଟୋପାଏ ବିନା ପୋକ ମାଛି ପରି ଟଳି ପଡୁଛନ୍ତି । ଏସବୁ ବିରୁଦ୍ଧରେ ଆଜି ସମଗ୍ର ବିଶ୍ୱରେ ଗଣ ଚେତନା ସୃଷ୍ଟି ହେବା ଆବଶ୍ୟକ । ବିଜ୍ଞାନ ଓ ଆଧୁନିକ ସଭ୍ୟତାର ଗତିପଥରେ କମନୀୟ ଦୃଷ୍ଟିଭଙ୍ଗୀ ସମ୍ପନ୍ନ ନୂତନ ସାହିତ୍ୟ ଆଜି ସୃଷ୍ଟି ହେବା ବାଞ୍ଛନୀୟ ।

ସାହିତ୍ୟର ଲକ୍ଷ୍ୟ କେବଳ ସୌନ୍ଦର୍ଯ୍ୟ ସୃଷ୍ଟି ନୁହେଁ । ଜୀବନ ସନ୍ଧାନ ମଧ୍ୟ ହେବା ଆବଶ୍ୟକ ।

ଆଜି କେବଳ ଅର୍ଥନୈତିକ ପ୍ରଗତି ନୁହେଁ, ଯଥାର୍ଥ ମାନବିକତା ଆମର କାମ୍ୟ । ଦୁର୍ଯ୍ୟୋଧନ ରୂପୀ ସମାଜର ଆଜି ଜାନୁଭଙ୍ଗ ହୋଇଛି । ସେ ବର୍ତ୍ତମାନ ବିପଥଗାମୀ, ପଥହରା । ଭୌତିକତା ଓ ହିଂସ୍ର ସର୍ବସ୍ୱତା ଆଜିର ସମାଜର ମୁଖ୍ୟ ଲକ୍ଷ୍ୟ ହୋଇଛି । ଈଶ୍ୱର ସତ୍ତା ଉପରୁ ଆମର ବିଶ୍ୱାସ ତୁଟିଯାଇଛି । ଶାନ୍ତି, ମୈତ୍ରୀ, ଐକ୍ୟ ଓ ଭ୍ରାତୃଭାବ ଆଜି ବିପନ୍ନ । ମଣିଷ ଖୋଜୁଛି ମଣିଷ ଛଞର ହୋରି । ଯୁବ ସମାଜ ଆଜି ଅନିଶ୍ଚିତ ଭବିଷ୍ୟତର ମରୀଚିକା ପଛରେ ପଥଭ୍ରଷ୍ଟ । ଏହି ସବୁ ପ୍ରତିକୂଳ ପରିସ୍ଥିତି ମଧ୍ୟରେ ପ୍ରତ୍ୟେକ ସାହିତ୍ୟିକ ଆଜି ଉଦ୍ୟମ କରିବାକୁ ହେବ । ମାନବିକ ଚେତନାକୁ ସାହିତ୍ୟର ପ୍ରତି ପଦରେ ଉନ୍ମୋଚନ କରି ଏକ ଅପ୍ରତମସ୍କ ବିଶ୍ୱର ସର୍ଜନା କରିବାକୁ ହେବ । ଏହି ମାନବିକ ଦୃଷ୍ଟିଭଙ୍ଗୀ ନିଶ୍ଚିତ ରୂପେ ଆଜିର ସମସ୍ୟା ବହୁଳ ସମାଜକୁ ଏକ ନୂତନ ଦିଗନ୍ତର ସୂଚନା ଦେଇ ପାରିବ, ସେଥିରେ ସନ୍ଦେହ ନାହିଁ । ଯଦି କେହି ଏହି ମାନବବାଦୀ ନୂତନ ସୃଷ୍ଟିକୁ ଗ୍ରହଣ ନ କରନ୍ତି ତେବେ ମଧ୍ୟ ସେଥିରେ ବିଚଳିତ ନ ହୋଇ ଉଦ୍ୟମ ଅବ୍ୟାହତ ରଖିବାକୁ ହେବ । ଏହି ପରିପ୍ରେକ୍ଷୀରେ କବି କାଳିନ୍ଦୀ ଚରଣଙ୍କର ଗୋଟିଏ ପଂକ୍ତି ଉଦ୍ଧାର କରିବା ପ୍ରାସଙ୍ଗିକ ହେବ–

"ମୋ ମନ ଯଦି କେହି ନ ପାରେ ବୁଝି
ମୋ ବିଶ୍ୱ ରଚିବି ମୁଁ ନୟନ ବୁଜି ।"



ରଣପୁରଗଡ଼ (ପୁରୀ)ର ଜଗନ୍ନାଥ ମନ୍ଦିର ।



ଶ୍ରୀ ଯୁଗଳ କିଶୋର ଶତପଥୀ

ଶ୍ରୀଜଗନ୍ନାଥ ହେଉଛନ୍ତି ଏକ ପରମ ରହସ୍ୟ ବିମଣ୍ଡିତ ବିଗ୍ରହ । ସେ ହେଉଛନ୍ତି ଜଗତର ନାଥ ଏବଂ ସକଳ ପ୍ରାଣୀଙ୍କର ସୃଷ୍ଟି, ପାଳନ ଓ ସଂହାରକର୍ତ୍ତା । ସଂକ୍ଷେପରେ କହିବାକୁ ଗଲେ, ତାଙ୍କଠାରୁ ଜଗତ ସୃଜିତ ହେଉଥିବାରୁ ତାଙ୍କୁ ଜଗନ୍ନାଥ କୁହାଯାଏ ।ସମସ୍ତ ଦେବଦେବୀମାନଙ୍କ ମଧ୍ୟରେ ସେ ହେଉଛନ୍ତି ଗରିଷ୍ଠ, ଶ୍ରେଷ୍ଠ ଏବଂ ଏକମାତ୍ର ଦାରୁ ଦେବତା । ଏଥିରେ "ବ୍ରହ୍ମ" ନାମକ ଏକ ଅଲୌକିକ ପଦାର୍ଥ ରହିଥାଏ । ଏହି ବ୍ରହ୍ମ ମଧ୍ୟ ଅତ୍ୟନ୍ତ ରହସ୍ୟାବୃତ । ଜଗନ୍ନାଥଙ୍କୁ "ଦାରୁବ୍ରହ୍ମ" ବୋଲି ମଧ୍ୟ କୁହାଯାଏ । ସେହିପରି ଅନ୍ୟ ବିଗ୍ରହମାନଙ୍କଠାରୁ ନବକଳେବର ସମୟରେ ବ୍ରହ୍ମ ପଦାର୍ଥ ବାହାର କରି ନୂତନ ବିଗ୍ରହମାନଙ୍କଠାରେ ସ୍ଥାପନ କରାଯାଇଥାଏ । ତେଣୁ କୁହାଯାଇଛି ଯେ ଜଗନ୍ନାଥ ବ୍ରହ୍ମଦାରୁ ରୂପେ ପ୍ରତିଷ୍ଠିତ ଓ ବ୍ରହ୍ମାରୁଦ୍ରାଦୀ ଦେବତାମାନଙ୍କ ଦ୍ୱାରା ଚିରବନ୍ଦିତ ଓ ପୂଜିତ :—

ନିଳାଦ୍ରୌ ଶଙ୍ଖମଧ୍ୟେ ଶତଦଳ କମଲେ ରତ୍ନସିଂହାସନସ୍ଥଂ
ନାନାଳଙ୍କାର ଯୁକ୍ତଂ ନବଘନ ରୁଚିରଂ ସଂଯୁକ୍ତଂ ଭ୍ରାତୃଭେନ,
ଭଦ୍ରାୟା ବାମଭାଗେ ରଥ ଚରଣ ଯୁତଂ ବ୍ରହ୍ମରୁଦ୍ରେଣ ବନ୍ଦ୍ୟଂ

ଦେବାନାଂ ସାରମେକଂ ସକଳ ଗୁଣମୟଂ ବ୍ରହ୍ମଦାରୁଂ
ନମାମି ।

ତେଣୁ ଶ୍ରୀଜଗନ୍ନାଥଙ୍କୁ ଶ୍ରୀ ପୁରୁଷୋତ୍ତମ ରୂପେ ଓ ତାଙ୍କର ପୀଠକୁ ପୁରୀ ବା ପୁରୁଷୋତ୍ତମ କ୍ଷେତ୍ର ରୂପେ ଲୋକ ମୁଖରେ ସର୍ବାଦୌ ବିଦିତ ହୋଇଛି । ଏହାମଧ୍ୟ ଶାସ୍ତ୍ର ସମ୍ମତ ଅଟେ । ତେଣୁ କୁହାଯାଇଛି—

ସର୍ବେଷାମପି କ୍ଷେତ୍ରାଣାଂ ରାଜା ଶ୍ରୀ ପୁରୁଷୋତ୍ତମଃ
ସର୍ବେଷାମପି ଦେବାନାଂ ରାଜା ଶ୍ରୀ ପୁରୁଷୋତ୍ତମଃ

(କପିଳ ସଂହିତା)

ଅର୍ଥାତ୍ ଶ୍ରୀ ପୁରୁଷୋତ୍ତମ ଦେବତାମାନଙ୍କ ମଧ୍ୟରେ, ପୁରୀ ବା ଶ୍ରୀକ୍ଷେତ୍ର ସମସ୍ତ କ୍ଷେତ୍ରମାନଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ ।

ଏଭଳି ଏକ ବିରାଟ ଓ ବିଶ୍ୱ ବନ୍ଦିତ ବିଗ୍ରହ ଓ କ୍ଷେତ୍ରରେ ଶ୍ରୀକ୍ଷେତ୍ର ଆଗରେ ସମସ୍ତେ ଧର୍ମ ଓ ସମ୍ପ୍ରଦାୟର ସାରଥୀ ଓ ମହାରଥୀମାନେ ହାର ମାନିଛନ୍ତି । ସେମାନଙ୍କର ଧର୍ମ, ଦର୍ଶନ, ତତ୍ତ୍ୱ ଓ ସତ୍ତ୍ୱ ସବୁ କିଛି ନିଷ୍ପ୍ରଭ ହୋଇପଡ଼ିଛି । ସବୁ ସମ୍ପ୍ରଦାୟର ଯୁଗପୁରୁଷମାନେ ଶ୍ରୀଜଗନ୍ନାଥଙ୍କଠାରେ ନିଜ ନିଜ ଧର୍ମ ଓ ଚେତନାର ମୁଖ୍ୟ ଦେବ ଦେବୀମାନଙ୍କର ସ୍ୱରୂପ ଜଗନ୍ନାଥଙ୍କଠାରେ ଅନୁଭବ କରି ବିସ୍ମିତ ହୋଇଛନ୍ତି । ଏପରିକି ଖ୍ରୀଷ୍ଟିୟାନ୍ ଓ ମୁସଲମାନ ଧର୍ମର ପ୍ରବର୍ତ୍ତକମାନେ ମଧ୍ୟ ଶ୍ରୀଜଗନ୍ନାଥଙ୍କ ବିଗ୍ରହ ଦେଖି ସ୍ୱୀୟ ଧର୍ମ ଦେବତାଙ୍କର ସତ୍ତା ଅନୁଭବ କରିଛନ୍ତି । ଯଥାର୍ଥରେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ହେଉଛନ୍ତି ସମସ୍ତ ବିସ୍ମୟର, ବିସ୍ମୟ ସମସ୍ତ ଚିନ୍ତାର ଚିନ୍ତନ ସମସ୍ତ ଚେତନାର ଚୈତନ୍ୟ ଓ ସମସ୍ତ ଭାବନାର ସାର୍ବଭୌମ ବିଗ୍ରହ ।

ଏହି ବିମୂର୍ତ୍ତି ଓ ବିତତ୍ତ୍ୱ ସଷ୍ଟଭାବେ ବୁଝିବାପାଇଁ କୌଣସି ନିର୍ଦ୍ଦିଷ୍ଟ ଐତିହାସିକ ପ୍ରମାଣ ନାହିଁ । ବିଭିନ୍ନ ତଥ୍ୟ ପରିବେଷଣ କରାଯାଇଛି, କିନ୍ତୁ ଏସବୁର ଐତିହାସିକ ସତ୍ୟତା କେତେଦୂର ରହିଛି, ତାହା ନିର୍ଣ୍ଣୟ କରିବା କଷ୍ଟସାଧ୍ୟ ଓ ସେହିଭଳି ବିଭିନ୍ନ ପୁରାଣରେ ବିଭିନ୍ନ ମତବାଦ ଓ ଘଟଣାବଳୀର ଅବତାରଣା କରାଯାଇଛି । ଏପରିକି ପରସ୍ପର ବିରୋଧୀ ଘଟଣାବଳୀ ମଧ୍ୟ ପ୍ରତୀୟମାନ ହେଉଛି । ମାତ୍ର କେଉଁଟି ସତ୍ୟ ଓ କେଉଁଟି ମିଥ୍ୟା ତାହା ମଧ୍ୟ ବୁଝିବା କଷ୍ଟ । ପ୍ରତ୍ୟେକ ଘଟଣାର ପୁନଃ ଅନୁସନ୍ଧାନ ବା ଗବେଷଣାର ଆବଶ୍ୟକତା ରହିଛି ।

ଭାରତର ଅମୂଲ୍ୟ ଗ୍ରନ୍ଥ 'ରାମାୟଣ' ଓ "ମହାଭାରତ"ରେ କେତେକ ସ୍ଥଳରେ ସାମାନ୍ୟ କିଛି ଉଲ୍ଲେଖ ରହିଛି । ବାଲ୍ମିକୀ ରାମାୟଣର ଉତ୍ତରା କାଣ୍ଡରେ ଜଗନ୍ନାଥଙ୍କୁ ଆରାଧନା କରିବା କଥା ରହିଛି । ମହାଭାରତର ବନପର୍ବର ୧୦୫ ଅଧ୍ୟାୟ ଏବଂ ୧୯୯ ଅଧ୍ୟାୟରେ ଶ୍ରୀକ୍ଷେତ୍ର ବିଷୟରେ ମଧ୍ୟ ଉଲ୍ଲେଖ ରହିଛି । ପୁଣି ବହ୍ମପୁରାଣ, ପଦ୍ମପୁରାଣ ଓ ସ୍କନ୍ଦ ପୁରାଣରେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ସମ୍ବନ୍ଧରେ ବିଶେଷ କିଛି ତଥ୍ୟ ମିଳିଥାଏ । ଶ୍ରୀ ଜଗନ୍ନାଥ କେଉଁ ଧର୍ମର ଦେବତା ଓ କି ଦେବତା ସେହି କଥା

ଦୃଷ୍ଟିରେ ସର୍ବଶେଷ ଚିନ୍ତା ବା ଦର୍ଶନ କ'ଣ ତାହା ପ୍ରାଞ୍ଜଳରୂପେ ବୁଝିହୁଏ ନାହିଁ । ଏଥି ସମ୍ପର୍କରେ ଅନେକ କିଛି ସମ୍ପର୍କେ ଛୁଟି ପାରନ୍ତି ନାହିଁ । ଏଥି ସପକ୍ଷେ ଅନେକ କିଛି ମତବାଦ ରହିଛି । ବୌଦ୍ଧମାନେ ଏହି ତ୍ରିମୂର୍ତ୍ତିଙ୍କୁ ବୌଦ୍ଧଙ୍କ "ବୁଦ୍ଧ" "ଧର୍ମ"ଓ "ସଂଘ" ଭଳି ଶ୍ରୀଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କୁ ମାନି ଆସିଛନ୍ତି । ଜୈନ୍ୟମାନଙ୍କର ଜୈନ 'ଜଗନ୍ନାଥ' ଚିନ୍ତାଧାରା ମୂଳରେ ରହିଛି ଆଦିବାସୀମାନଙ୍କର 'ଜଗନ୍ତ' 'ଜଗନ୍ତ' ସହିତ 'ନାଥ' ଯୁକ୍ତ କରି ଋଷଭନାଥ ପାର୍ଶ୍ୱନାଥ ଓ ନେମିନାଥର ପରିକଳ୍ପନା କରିଛନ୍ତି । ତେଣୁ ଜଗନ୍ନାଥ ଶବ୍ଦ ହେଉଛି–'ଜଗନ୍ତନାଥ' ଶବ୍ଦର ରୂପାନ୍ତର ମାତ୍ର । ପଣ୍ଡିତ ନୀଳକଣ୍ଠଙ୍କ ମତରେ ଜଗନ୍ନାଥ କଥାର ମୂଳ ହେତୁ ହେଉଛି 'ଜୈନ ଶବ୍ଦ ବା ତତ୍ତ୍ୱ । 'ଋଷଭନାଥ' ଅର୍ଥ ସୂର୍ଯ୍ୟନାଥ । ସେ ହେଉଛନ୍ତି ଜଗତର ଜୀବନରୂପୀ ପୁରୁଷ । ଏହା ହେଉଛି ପ୍ରାଚୀନ ବ୍ୟାବିଲନ୍‌ର ଆବିଷ୍କାର ଓ ଅବିଚ୍ଛେଦ୍ୟ ।

ଏହାଛଡ଼ା ଆଦିବାସୀ ଜାତିକୁ ମଧ୍ୟ ଜଗନ୍ନାଥ ସଂସ୍କୃତି ସହିତ ସାମିଲ କରାଯାଇଛି । 'ପେନ୍'କୁ ତାଙ୍କ ଭାଷାରେ ଦେବତା କୁହାଯାଏ । ଜାକେରିପେନୁ, ତାନାପେନୁ ଓ ମୁରବି ପେନୁଙ୍କର ସେମାନେ ଅତି ପ୍ରାଚୀନ କାଳରୁ ପୂଜାକରି ଆସୁଛନ୍ତି । ଏହି ତିନି ମୂର୍ତ୍ତିଙ୍କୁ ଗାଁ ଶେଷରେ ଏକ ଗଛମୂଳରେ ରଖି ପୂଜା ଅର୍ଚ୍ଚନା କରନ୍ତି । କାଳକ୍ରମେ ଏହି ତିନିମୂର୍ତ୍ତି ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାରୂପେ ପୂଜା ପାଇଥିବେ । ସେହିପରି ଶବରମାନଙ୍କୁ ମଧ୍ୟ ଏହି ତ୍ରିମୂର୍ତ୍ତି ତତ୍ତ୍ୱ ଓ ପୂଜା, ଅର୍ଚ୍ଚନା ଭିତରେ ମଧ୍ୟ ସାମିଲ କରାଯାଇଛି । ଏକ ପ୍ରଖ୍ୟାତ କିମ୍ବଦନ୍ତୀ ଅନୁଯାୟୀ ଶବର ସର୍ଦ୍ଦାର ବିଶ୍ୱାବସୁ ନୀଳମାଧବ (ଆଦି ଜଗନ୍ନାଥ ରୂପଙ୍କୁ ପୂଜା କରୁଥିଲେ । ବ୍ରାହ୍ମଣ ବିଦ୍ୟାପତି ଇନ୍ଦ୍ରଦ୍ୟୁମ୍ନଙ୍କ ଦ୍ୱାରା ପ୍ରେରିତ ହୋଇ ସର୍ଦ୍ଦାର କନ୍ୟା ଲଳିତାକୁ ବିବାହ କରି ବହୁ କଷ୍ଟ ସ୍ୱୀକାର କରି ପ୍ରଭୁ ନୀଳମାଧବଙ୍କ ସନ୍ଧାନ ପାଇଥିଲେ । ଶେଷରେ ସେହି ନୀଳମାଧବଙ୍କୁ ପୁରୀକୁ ଆଣିବାରେ କାରଣ ହୋଇଥିଲେ ।

ପୁନଶ୍ଚ ଶୈବ, ବୈଷ୍ଣବ, ସୌର, ଗାଣପତ୍ୟ ଓ ଶାକ୍ତମାନେ ଏଭଳି ବହୁ ତଥ୍ୟ ଆବିଷ୍କାର କରି ଜଗନ୍ନାଥଙ୍କୁ ନିଜ ଗୋଷ୍ଠୀର ଦେବତା ବୋଲି କହିବାରେ ପଶ୍ଚାତ୍‌ପଦ ହୁଅନ୍ତି ନାହିଁ । ପୁଣି ଜଗନ୍ନାଥଙ୍କୁ ପଞ୍ଚଶକ୍ତିର ଅର୍ଥାତ୍ ଶିବ, ବିଷ୍ଣୁ, ସୂର୍ଯ୍ୟ, ଗଣପତି ଓ ଦୁର୍ଗା ଇତ୍ୟାଦିର ସମାହାର ବୋଲି ଅଭିହିତ କରିଥାନ୍ତି ।

ମହାମହୋପାଧ୍ୟାୟ ସାମନ୍ତ ଚନ୍ଦ୍ରଶେଖର ତାଙ୍କର ପ୍ରସିଦ୍ଧ ଗ୍ରନ୍ଥ "ସିଦ୍ଧାନ୍ତ ଦର୍ପଣରେ" ଜଗନ୍ନାଥଙ୍କୁ ସପ୍ତ ଦେବତାର ସମାହାର ବୋଲି ମଧ୍ୟ ଅଭିହିତ କରିଛନ୍ତି ।

ଶ୍ରୀକୃଷ୍ଣମାଧବ ଚଣ୍ଡ ଚନ୍ଦ୍ର ବନୀଭୂତ ଭଦ୍ରାଭିରଭ୍ୟୁଜଳମ୍
ଶ୍ରୀବନ୍ଧ ପ୍ରମୁଖା ଖ୍ୱଳାମରଶିଖା କୃଷ୍ଣାପ୍ରୀ ପୀଠୋଜ୍ଜ୍ୱଳମ୍ ।
ଶ୍ରୀନୀଳାଚଳ ମୌଳିମଣ୍ଡନ ମହା ନୀଳାମ୍ବୁ ମାନଂ ମହଃ
ଶ୍ରୀକୃଷ୍ଣମାଧବିତ ସ୍ୱର୍ଗଂ ଭବତ୍ତୁନଃ ପ୍ରତ୍ୟୁହତ୍ୟୁ ଦ୍ୟତମ୍ ।

(ସିଦ୍ଧାନ୍ତ ଦର୍ପଣ)

ସାରଳାଦାସଙ୍କ 'ମହାଭାରତ' ଓ 'ଚଣ୍ଡିପୁରାଣ'ରେ ଏକ ସମନ୍ୱୟ ଚିନ୍ତାଧାରା ପରିପ୍ରକାଶ ହୋଇଛି । ବୈଷ୍ଣବ, ଶୈବ ଓ ଶାକ୍ତ ଧର୍ମର ଦିଗ୍ ଦର୍ଶନ ଦେବାରେ ସେ ଅଗ୍ରଣୀ ହୋଇଛନ୍ତି ।

କବି ଜୟଦେବଙ୍କ 'ଗୀତଗୋବିନ୍ଦ' ବୈଷ୍ଣବ ଚେତନା ଯାଗ୍ରତ କରିବାରେ ବିଶେଷ ସହାୟକ ହୋଇଛି । କବି ଓଡ଼ିଶାର ଘରେ ଘରେ ସୁପରିଚିତ । ହରିଲୀଳାଗାନ, ଭଜନ ଓ ସଂକୀର୍ତ୍ତନ ଇତ୍ୟାଦିରେ ପୁରୀ ମନ୍ଦିର ସର୍ବଦା ମୁଖରୀତ ।

ପୁନଶ୍ଚ ତନ୍ତ୍ରବିଦ୍‌ମାନେ ଓ ଶାକ୍ତ ଧର୍ମାବଲମ୍ବୀମାନେ ଜଗନ୍ନାଥଙ୍କୁ କାଳୀଙ୍କର ସ୍ୱରୂପ, ତାରାଙ୍କୁ ବଳଭଦ୍ର ଓ ଭୁବନେଶ୍ୱରୀଙ୍କୁ ସୁଭଦ୍ରା ରୂପରେ ଦର୍ଶନ କରିଥାନ୍ତି । ବିମଳାଙ୍କର ଯନ୍ତ୍ର ଉପରେ ଜଗନ୍ନାଥ ଆବିର୍ଭାବ ହୋଇଛନ୍ତି । ଜଗନ୍ନାଥ ତନ୍ତ୍ରର "ଭୈରବ" ବୋଲି ସେମାନେ ସମ୍ବୋଧନ କରିଥାନ୍ତି । ତେଣୁ କୁହାଯାଇଛି :–

"ଉତ୍କଳେ ନାଭି ଦେଶଞ୍ଚ ବିରଜାକ୍ଷେତ୍ର ମୁଚ୍ୟତେ
ବିମଳା ଭୈରବୀ ଯତ୍ର ଜଗନ୍ନାଥସ୍ତୁ ଭୈରବ ।"

ଅନ୍ୟକୌଣସି ସ୍ଥାନରେ ରହିଛି ଯେ–

ସୁଭଦ୍ରାସ୍ତୁ ମହାଦେବୀ ଜଗନ୍ନାଥସ୍ତୁ ଭୈରବ" । ସୁଭଦ୍ରା ହେଉଛନ୍ତି ଜଗନ୍ନାଥଙ୍କ ଭଉଣୀ । ତେଣୁ ଜଗନ୍ନାଥ ଭୈରବ ହେଲେ ସୁଭଦ୍ରା ଭୈରବୀ ହେବା ସମୀଚୀନ । ତନ୍ତ୍ର ଶାସ୍ତ୍ରରେ ପତି ପତ୍ନୀ ସମ୍ପର୍କ ଭାଇ ଭଉଣୀ ପରି ମଧ୍ୟ ହୋଇଥାଏ ।

ତନ୍ତ୍ର ଶାସ୍ତ୍ର ମତରେ ଶିବ ବ୍ରହ୍ମ ନୁହନ୍ତି, ସେ ହେଉଛନ୍ତି "ବ୍ରହ୍ମଶକ୍ତି" । ସାଧକ ନିଜକୁ ଶିବ ଭାବେ ଅଭିଷିକ୍ତକରି ଉପାସନାକରେ । ପୁନଶ୍ଚ "ଦଶମହାବିଦ୍ୟା"ରେ ମଧ୍ୟ କାଳି, ତାରା ଓ ଭୁବନେଶ୍ୱରୀଙ୍କୁ ନେଇ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କର ପରିକଳ୍ପନା କରାଯାଇଛି । ଏହି ଜଗତହିଁ ମହାଶକ୍ତିର ଲୀଳା ଓ ଖେଳା । ମୂଳା ପ୍ରକୃତିହିଁ ଆଦ୍ୟାଶକ୍ତି, ଏହି ମୂଳା ପ୍ରକୃତିଠାରୁ ସତ୍ତ୍ୱ ରଜ ଓ ତମ ଗୁଣ ଉତ୍ପତ୍ତି ହୋଇଛି । ମହାଶକ୍ତିଙ୍କୁ ମା' କୁହାଯାଏ । ସେହି ସୃଷ୍ଟିର କାରିଣୀ ଓ ଅନନ୍ତ କୋଟି ଜୀବ ସୃଷ୍ଟି କରି ସାକ୍ଷୀଭାବରେ ତାହା ଉପଲବ୍ଧି କରିଥାନ୍ତି । କାଳୀହିଁ ଶକ୍ତି ମଧ୍ୟରେ ଶ୍ରେଷ୍ଠା ମହାବିଦ୍ୟା ଅଟନ୍ତି । ଦଶବିଧ ପ୍ରକୃତି ଶକ୍ତିହିଁ ଦଶମହାବିଦ୍ୟା । ସମସ୍ତ ଜଗନ୍ନାଥ ତତ୍ତ୍ୱ ଓ ସତ୍ତ୍ୱକୁ ମଧ୍ୟ ଏହି ଶକ୍ତି ଉପରେ ଅଭିହିତ କରାଯାଇଛି ।

ବଳରାମ ଦାସ ତାଙ୍କର "ଗୁପ୍ତ ଗୀତା"ରେ ଚତୁର୍ଦ୍ଧାମୂର୍ତ୍ତିଙ୍କୁ ଚାରି ବେଦ ବୋଲି ଅଭିହିତ କରିଛନ୍ତି । "ବଳଭଦ୍ର ଯେ ସୁଭଦ୍ରା ଅଟଇ 'ଯଜୁର୍ବେଦ' ଶ୍ରୀଜଗନ୍ନାଥ 'ଅଥର୍ବ' ସୁଦର୍ଶନ ପାଣି" । ଦାର୍ଶନିକମାନେ ତ୍ରିମୂର୍ତ୍ତିଙ୍କୁ ଇଡ଼ା, ପିଙ୍ଗଳା ଓ ସୁଷୁମ୍ନା ବୋଲି ମନେ କରନ୍ତି । ଆଉ କେତେ ଚିନ୍ତା ନାୟକ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କୁ–ସତ୍ତ୍ୱ, ରଜ ଓ ତମ ତ୍ରିଗୁଣର ପ୍ରତିକ ବୋଲି ମଧ୍ୟ ଉପସ୍ଥାପନା କରିଛନ୍ତି । ଏଭଳି ବହୁ ତତ୍ତ୍ୱ ରହିଛି । ମାତ୍ର ମହାପ୍ରଭୁ ମହାବିଷ୍ଣୁଙ୍କ 'ଦଶାବତାର' ପରିପ୍ରେକ୍ଷୀରେ ଗ୍ରହମାନଙ୍କ ଇଷ୍ଟଦେବ ବିଶ୍ଳେଷ କରାଯାଇଛି । ପୁନଶ୍ଚ କେଉଁ ଗ୍ରହର କେଉଁ ଅବତାର ବେଳେ ପ୍ରାଧାନ୍ୟ ରହିଛି ତାହା ମଧ୍ୟ ସୂଚୀତ ହୋଇଛି ।

ସୂର୍ଯ୍ୟରୂପୀ ନୃସିଂହଶ୍ଚ
ରାମଚନ୍ଦ୍ର ତୁ ଚନ୍ଦ୍ରମା
ପର୍ଶୁରାମ ତଥା ଭୌମ
ବାମନଶ୍ଚ ବୁଧ ସ୍ଥଥା

ଜୀବ ବଳଭଦ୍ର ରୂପୀଚ
ଶୁକ୍ରସ୍ତ ଶୁକର ରୂପ ଧୃବେ

କଳ୍କୀ ରୂପୀଶ୍ଚ ଶୌରୀସ୍ତୁ
ରାହୁସ୍ତ ବୌଦ୍ଧ ରୂପ ଧୃବେ

କେତୁସ୍ତ କୂର୍ମରୂପୀଚ
ମୀନ ରୂପୀଚ ଲଗ୍ନକଂ

ଜନ୍ମେତା ଚିନ୍ତୟେ ତସ୍ୟ
ଗ୍ରହରୂପୀ ଜନାର୍ଦ୍ଦନଂ ।

ସର୍ବାରିଷ୍ଟ ବିନାଶିଚ
ଯଥୋକ୍ତ ଫଳଦୋଭବ ।

ଏଥିରେ ଶ୍ରୀକୃଷ୍ଣଙ୍କୁ ଅବତାର ପୁରୁଷ ହିସାବରେ ଗଣ୍ୟ କରାଯାଇନାହିଁ । ସେ ହେଉଛନ୍ତି ଅବତାରୀ,–ପରମ ପୁରୁଷ ପରବ୍ରହ୍ମ । ସେ ହେଉଛନ୍ତି ଅଖିଳ ବିଶ୍ୱର ନିୟନ୍ତା ଓ ଭାଗ୍ୟକର୍ତ୍ତା ।

ପୁନଶ୍ଚ ସମସ୍ତ ଦେବ ଦେବୀଙ୍କ ପୂଜା ଅର୍ଚ୍ଚନା ତାଙ୍କର ବୀଜମନ୍ତ୍ର ଦ୍ୱାରା ହୋଇଥାଏ । ଯେଉଁ ମନ୍ତ୍ରରେ ଯେଉଁ ଦେବଙ୍କୁ ପୂଜା କରାଯାଏ, ସେ ହେଉଛନ୍ତି ସେହି ଦେବତା । ଜଗନ୍ନାଥଙ୍କ ପୂଜାର ବୀଜମନ୍ତ୍ର ହେଉଛି–ଓଁ କ୍ଳୀଂ କୃଷ୍ଣାୟ ଗୋବିନ୍ଦାୟ ଗୋପୀଜନ ବଲ୍ଲଭାୟନମଃ " ତେଣୁ ପୂଜାରେ କୁହାଯାଇଛି :–

"ଶ୍ରୀଂ ଶେଷ ପ୍ରବାଗୋସ୍ତୁ ହ୍ରୀଂ ସୁଭଦ୍ରା ତଥୈବଚ
କ୍ଳୀଂ କୃଷ୍ଣ ଜଗନ୍ନାଥଃ ତ୍ରିତସ୍ତ୍ୱଂ ଚ ସୁଭୋଗଦ୍ୟୋ ।"

ଏହି ମନ୍ତ୍ରରେ ପୂଜା କରାଯାଇ ତାଙ୍କୁ ଭୋଗ ସମର୍ପଣ କରାଯାଏ । ଶ୍ରୀମଦ୍ ଭାଗବତରେ ଶ୍ରୀକୃଷ୍ଣଙ୍କୁ ଅବତାର ସ୍ୱୟଂ ବା ପୂର୍ଣ୍ଣ ବ୍ରହ୍ମଭାବେ ଅଭିହିତ କରାଯାଇଛି । ଅବତାର ପ୍ରସଙ୍ଗ ସ୍ଥଳରେ କୁହାଯାଇଛି –

"ଏତେ ଚାଂଶ କଳାଃ ପୁଂସଃ କୃଷ୍ଣସ୍ତୁ ଭଗବାନ ସ୍ୱୟମ୍ ।"

ସଂକ୍ଷେପରେ କହିବାକୁ ଗଲେ– ଜଗନ୍ନାଥ ଓ ଶ୍ରୀକୃଷ୍ଣ ହେଉଛନ୍ତି ଅଭିନ୍ନ । ଶ୍ରୀକୃଷ୍ଣହିଁ ଜରାସବର ଦ୍ୱାରା ଶରବିଦ୍ଧ ହୋଇ ଶେଷରେ ନୀଳାଚଳ ଧାମରେ ଜଗନ୍ନାଥ ରୂପେ ଆବିର୍ଭାବ ହୋଇଛନ୍ତି । ସେ ଅବତାର ପୁରୁଷ ହୋଇଥିବାରୁ ପରମ ପୁରୁଷ ବା ମହାବିଷ୍ଣୁ ଅଟନ୍ତି । ତାଙ୍କର ବିଭିନ୍ନ ଲୀଳାଖେଳା ରହିଥିଲେ ମଧ୍ୟ ସେ ବିଶେଷତଃ "ଗୋପୀଜନ ବଲ୍ଲଭ" ଭାବରେ ବିଖ୍ୟାତ ଓ ଶାସ୍ତ୍ର ସମ୍ମତ । ସେ ସମସ୍ତ ଦେବଙ୍କର ମୂଳବୀଜ ହୋଇଥିବାରୁ ଓ ସମସ୍ତ ଦେବ ଦେବୀଙ୍କ ଆଦ୍ୟବୀଜ ହୋଇଥିବାରୁ ତାଙ୍କୁ ବିଭିନ୍ନ ସମୟରେ ବିଭିନ୍ନ ବେଶରେ ସଜ୍ଜିତ କରାଯାଇଥାଏ । ଯେଉଁ ଶ୍ରୀକୃଷ୍ଣଙ୍କର ସ୍ୱରୂପ ଓ ପରବର୍ତ୍ତୀ ବିଗ୍ରହ ସ୍ନାନ ଯାତ୍ରା ପରେ ଗଣେଶ ବେଶ ଧାରଣ କରନ୍ତି । କେତେବେଳେ ରାମ ଅବତାର ଲୀଳା ପ୍ରକଟ ସ୍ଥଳରେ ସଜ୍ଜିତ ହୋଇ ଭକ୍ତମାନଙ୍କର ମାନସ ରଞ୍ଜନ କରନ୍ତି । ଚନ୍ଦନ ଯାତ୍ରା ଓ ଦୋଳିଖେଳ ସମୟରେ ମଦନ ମୋହନ ହିଁ ଜଗନ୍ନାଥଙ୍କର ପ୍ରତିନିଧି ହିସାବରେ ଉତ୍ସବ ମଣ୍ଡିତ କରି ଭକ୍ତମାନଙ୍କ ଅଭିଷ୍ଟ ପୂରଣ କରିଥାନ୍ତି ।

ବଳରାମ ପରବର୍ତ୍ତୀ କାଳରେ ବଳଭଦ୍ର ରୂପେ ଓ ଭଉଣୀ ସୁଭଦ୍ରାରୂପେ ରତ୍ନସିଂହାସନରେ ବିଜେ କରିଛନ୍ତି । କଥାଟାକୁ ଆଉ ଟିକିଏ ଗଭୀରଭାବେ ଅନୁଶୀଳନ କଲେ ଜଣାଯିବ ଯେ– ବଳଭଦ୍ର ଜଗନ୍ନାଥଙ୍କ ଜ୍ୟେଷ୍ଠଭ୍ରାତା ନୁହନ୍ତି । ସେ ହେଉଛନ୍ତି 'ମହାକାଳ'ର ପ୍ରତିକ । ବିଷ୍ଣୁଙ୍କର ଆଶ୍ରୟ ସ୍ଥଳ ହେଉଛନ୍ତି ଶେଷ ନାଗ ବା ଅନନ୍ତ । ସେ ନିଜେ ମଧ୍ୟ ଅନନ୍ତ ।

ଶକ୍ତିରୂପିଣୀ ମହାଲକ୍ଷ୍ମୀ ମଧ୍ୟ ତାଙ୍କର ସର୍ବଦା ସେବା କରନ୍ତି। ସେ ହେଉଛନ୍ତି ଯୋଗମାୟା । ସୁଭଦ୍ରା ହେଉଛନ୍ତି ସେହି ମହାଲକ୍ଷ୍ମୀ ଯୋଗମାୟା । ସେ ମାତୃ ରୂପରେ, ପତ୍ନୀରୂପରେ ଓ ଭଗ୍ନୀରୂପରେ ବିରାଜିତା । ମହାକାଳ ହିସାବରେ ସେ ମହାକାଳୀ ରୂପରେ ବିବେଚିତା ହୋଇଥାନ୍ତି । ମହାକାଳୀହିଁ ସୁଭଦ୍ରା ବା ମହାଲକ୍ଷ୍ମୀ । ଭୁବନେଶ୍ୱରୀ ମନ୍ତ୍ରରେ "ଓଁ ହ୍ରୀଂ", ବୀଜ ମନ୍ତ୍ରରେ ସେ ପୂଜିତା ଓ ବନ୍ଦିତା । ସେ ଭକ୍ତମାନଙ୍କୁ ସର୍ବଦା ଅଭୟ ପ୍ରଦାନ କରିଥାନ୍ତି ।

ଯୁଗଯୁଗ ଧରି ଓଡ଼ିଶାର କବି ଓ ସଙ୍ଗୀତଜ୍ଞମାନେ ଜଗନ୍ନାଥଙ୍କର ଭଜନ, କୀର୍ତ୍ତନ ମାଧ୍ୟମରେ ବହୁ ଉତ୍କୃଷ୍ଟ ସାହିତ୍ୟ ସୃଷ୍ଟି କରିଛନ୍ତି। କବିସମ୍ରାଟ ଉପେନ୍ଦ୍ରଭଞ୍ଜ ଜଗନ୍ନାଥଙ୍କୁ ସର୍ବଶକ୍ତିମାନ ଓ ସମସ୍ତ କାର୍ଯ୍ୟକାରଣର ହେତୁ ବୋଲି ବର୍ଣ୍ଣନା କରିଛନ୍ତି । ସେ ହେଉଛନ୍ତି ମୁକ୍ତି ବା ମୋକ୍ଷ ଦାତା । ସେ କହିଛନ୍ତି–

ସେ କଂସ କଟକେ ରାଜାନାମ ଜଗନ୍ନାଥ
ଚତୁବର୍ଗେ ଚତୁବର୍ଗ ଦେବାକୁ ସମର୍ଥ ।

ଅର୍ଥାତ୍ ଜଗନ୍ନାଥ ସେ ଏକମାତ୍ର ଦେବତା ଯେ କି ଧର୍ମ, ଅର୍ଥ କାମ ଓ ମୋକ୍ଷ ଦେଇପାରନ୍ତି । ସେ ହେଉଛନ୍ତି ଏହି ସୃଷ୍ଟିର ଏକମାତ୍ର ସିଦ୍ଧେଶ୍ୱର ।

ପୁନଶ୍ଚ ଭଞ୍ଜେ ତାଙ୍କର 'ରସିକ ହାରାବଳୀ'ରେ ଜଗନ୍ନାଥଙ୍କୁ ପାପ ତାପ– କଳୁଷ ହରଣକାରୀ ରୂପେ ପ୍ରତିପାଦନ କରିଛନ୍ତି। ନୀଳାଚଳର ଚଳଚଞ୍ଚଳ ପତାକାକୁ ଦେଖି ସେ ଭାବ ବିହ୍ୱଳ ହୋଇ ଗାଇଛନ୍ତି–

"ପତାକା ଅଞ୍ଚଳ ଚଞ୍ଚଳ ଡାକେ ପାପୀଙ୍କି ଅବା
ଏ ନୀଳ ଯେ ନଗରୀକୁ ଆସ ଭଲ ପାଇବା ।"

ଜଗନ୍ନାଥ ଯେ ପରମ ପୁରୁଷ ବା ପରମବ୍ରହ୍ମ ଏହା ଭଞ୍ଜଙ୍କର ବିଭିନ୍ନ ଲେଖାରୁ ପ୍ରତୀୟମାନ ହୁଏ । ଏହିପରି ସଂସ୍କୃତ ଓ ଓଡ଼ିଆ ସାହିତ୍ୟରୁ ବିଭିନ୍ନ ଉଦାହରଣ ଦେଇ ଜଗନ୍ନାଥ ସଂସ୍କୃତି ଓ ଦର୍ଶନ ବ୍ୟାଖ୍ୟା କରାଯାଇପାରେ । ଓଡ଼ିଶାର ସାଂସ୍କୃତିକ, ଧାର୍ମିକ ଓ ଆଧ୍ୟାତ୍ମିକ ଚିନ୍ତାଧାରା ଆଜି ମୁଖ୍ୟତଃ ଜଗନ୍ନାଥ ସଂସ୍କୃତିର ରୂପାନ୍ତର ମାତ୍ର । ଏହା ହେଉଛି ବିଶ୍ୱ ସଂସ୍କୃତିକୁ ଓଡ଼ିଶାର ଦାନ ।

ଆଜି ଜଗନ୍ନାଥ ଆଉ ଉତ୍କଳର ହୋଇ ରହିନାହାନ୍ତି । ସେ ସମଗ୍ର ବିଶ୍ୱର ଓ ବିଶ୍ୱମାନବର ଅଟନ୍ତି । ସର୍ବ ଧର୍ମ, ସମ୍ପ୍ରଦାୟ ଓ ସର୍ବ ଦର୍ଶନର ସମନ୍ୱୟକାରୀ ମହାନ ଶକ୍ତି । ସମସ୍ତ ଆଦର୍ଶ, ଚିନ୍ତା, ଚେତନା, ମହାମାନବିକତା ଓ ବିଶ୍ୱମୈତ୍ରୀଭାବ ସହିତ

ଜଗନ୍ନାଥ ତତ୍ତ୍ୱରେ ଲୀନ ହୋଇଛି । ଜଗନ୍ନାଥ ସଂସ୍କୃତିକୁ ଅନୁଶୀଳନ ଓ ଆଦର୍ଶ ବୋଲି ଗ୍ରହଣ କଲେ ପୃଥିବୀ ବକ୍ଷରୁ ଯୁଦ୍ଧ ଓ ଶୀତଳ ଯୁଦ୍ଧର ବିଭୀଷିକା ଦୂରହୋଇ ବିଶ୍ୱ ଶାନ୍ତି ପ୍ରତିଷ୍ଠା ହୋଇପାରିବ । ଏଥିରେ ତିଳେମାତ୍ର ସନ୍ଦେହ ନାହିଁ । ଜଗନ୍ନାଥ ହିଁ କେବଳ ମାୟା, ମୋହ ଓ ତମ ଗୁଣକୁ ହରଣ କରି ମାନବ ଅନ୍ତରରେ ବିଶୁଦ୍ଧ ସାତ୍ତ୍ୱିକ ପ୍ରେମ ଭାବ ଜାଗ୍ରତ କରିବାରେ ସହାୟକ ହୋଇପାରିବେ । ଏହାଦ୍ୱାରା ଆସୁରୀଭାବର ବିଲୋପ ହୋଇ ଦେବତ୍ୱ ସତ୍ତାର ମହାମନ୍ତ୍ରରେ ସମସ୍ତେ ଅଭିମନ୍ତ୍ରିତ ହୋଇପାରିବେ । ଜୀବନ ହେବ ମଙ୍ଗଳମୟ ସୃଷ୍ଟି ହେବ ଅମୃତମୟ । ଜଗନ୍ନାଥ ଆଜି ତାହାହିଁ କରନ୍ତୁ । ଏହା ଆମର ଆନ୍ତରିକ କାମନା ।

ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ

---

*ଜିଲ୍ଲା ଜନସମ୍ପର୍କ ଅଧିକାରୀ,*
*ବାଲେଶ୍ୱର ।*



*"ଆନ ଦରଶନ ନଲୋଡ଼େ ନୟନ*
*ଏକା ତୁମ୍ଭ ଦେଖା ବିନା"*
*ସ୍ନାନ ପୂର୍ଣ୍ଣମୀ ଅବସରରେ ସ୍ନାନ ବେଦୀ ଉପରେ ତିନି ଠାକୁର ।*



# ଲୁପ୍ତପ୍ରାୟ ଗଙ୍ଗ ମନ୍ଦିର ଓ କଟକର ଜଗନ୍ନାଥ

ଶ୍ରୀ ରଜତ କୁମାର କର

ଅନଙ୍ଗଭୀମ ଦେବଙ୍କୁ ଜଗନ୍ନାଥ ମନ୍ଦିରର ନିର୍ମାତା ବୋଲି କେତେକ ଐତିହାସିକ ଲେଖିଥିଲେ ଓ ଓଡ଼ିଶାରେ ବହୁକାଳ ଧରି ଏ ବିଶ୍ୱାସ ଚଳିଆସୁଥିଲା । ବାସ୍ତବରେ ଶ୍ୱେତ଼ଗଙ୍ଗ ଦେବ ଜଗନ୍ନାଥ ମନ୍ଦିରର ପ୍ରତିଷ୍ଠାତା । ଅନଙ୍ଗଭୀମ ଦେବ ନିଜେ ବିଭିନ୍ନ ମନ୍ଦିର ଗାତ୍ରରେ ଶିଳା ଲିପିରେ ଶ୍ୱେତ଼ଗଙ୍ଗ ଦେବଙ୍କ ଜଗନ୍ନାଥ ମନ୍ଦିର ନିର୍ମାଣ କଥା ଉଲ୍ଲେଖ କରିଛନ୍ତି ।

କଟକ ଗଜପତି ବଂଶର ରାଜଧାନୀ ହୋଇଥିବାରୁ ସେଠାରେ ଜଗନ୍ନାଥ ମନ୍ଦିରର ଆବଶ୍ୟକତା ଅନୁଭବ କରି ଅନଙ୍ଗଭୀମ ଦେବ ମନ୍ଦିର ତୋଳାଇଥିଲେ ଓ ଜଗନ୍ନାଥ ବିଗ୍ରହ ପ୍ରତିଷ୍ଠା କରିଥିଲେ ।

ସେତେବେଳେ ଜଗନ୍ନାଥ ପୁରୁଷୋତ୍ତମ ନାମରେ ଖ୍ୟାତ ଥିଲେ । ଜଗନ୍ନାଥ ନାମ ସୂର୍ଯ୍ୟବଂଶୀ ଗଜପତି କପିଳେନ୍ଦ୍ର ଦେବଙ୍କ ସମୟରୁ ଆରମ୍ଭ ହେଲା । ଏଇ ପୁରୁଷୋତ୍ତମଙ୍କ ମନ୍ଦିର ସାମନାରେ ଅନଙ୍ଗଭୀମ ଦେବ ଦାନ ଦେଇଥିବା କଥା ତମ୍ବା ପଟାରେ ଉଲ୍ଲେଖ ରହିଛି । "ଅଭିନବ ବାରାଣସ୍ୟାଂ ଭଗବତ ପୁରୁଷୋତ୍ତମ ଦେବସ୍ୟ ସନ୍ନିଧୌ ମକର ଅମାବାସ୍ୟାୟଂ ରବିବାରରେ କୁଦିଙ୍ଗା ବିଷୟ ବିଳାସପୁର ଗ୍ରାମେ ଦାନ ସାଗରେ" । ଏହି ତମ୍ବା ପଟା ବର୍ଣ୍ଣନାରୁ ଜଣାପଡୁଛି ଜଗନ୍ନାଥ ପୁରୁଷୋତ୍ତମ ଜଣେ ଥିଲେ । ସେ ତ୍ରିମୂର୍ତ୍ତି ନ ଥିଲେ ।

ଲାଙ୍ଗୁଳା ନରସିଂହ ଦେବଙ୍କ ସମୟରେ କୋଣାର୍କ ମନ୍ଦିର ତିଆରି ହୋଇଥିଲା । ସେ ଅନଙ୍ଗଭୀମଙ୍କ ପରବର୍ତ୍ତୀ ନୃପତି । ସେ କୋଣାର୍କ ମନ୍ଦିରର ଗାତ୍ରରେ ଜଗନ୍ନାଥ, ଶିବ ଲିଙ୍ଗ ଓ ଚତୁର୍ଭୁଜା ମହିଷମର୍ଦ୍ଦିନୀ ଦୁର୍ଗା ରହିଛନ୍ତି । ଲୁଣି ହାଓ୍ୱାରେ ଏବେ ଏହା ନଷ୍ଟ ହେବାକୁ ବସିଲାଣି । ଏହାର ସମକାଳୀନ ପୁରୀ ଜଗନ୍ନାଥ ମନ୍ଦିରର ଭୋଗମଣ୍ଡପର ଗାତ୍ରରେ ମଧ୍ୟ ଜଗନ୍ନାଥ, ମହିଷ ମର୍ଦ୍ଦିନୀ ଓ ଶିବଲିଙ୍ଗ ରହିଛନ୍ତି ।

ଏଥିରୁ ଅନୁମାନ କରାଯାଉଛି ଗଙ୍ଗବଂଶ ରାଜୁତି ପର୍ଯ୍ୟନ୍ତ ପୁରୁଷୋତ୍ତମ ଜଗନ୍ନାଥ ଏକାକୀ ଥିଲେ । ଅନଙ୍ଗଭୀମ ନିଜକୁ ଜଗନ୍ନାଥଙ୍କ ରାଉତ ରୂପେ ପରିଚିତ କରାଇଥିଲେ ଓ ସମଗ୍ର ରାଜ୍ୟର ରାଜା ରୂପେ ଜଗନ୍ନାଥଙ୍କୁ ଗ୍ରହଣ କରିଥିଲେ ।

ଗଙ୍ଗବଂଶୀମାନେ ନିଜକୁ ଶିବ ପୁତ୍ର, ଦୁର୍ଗା ପୁତ୍ର ଓ ପୁରୁଷୋତ୍ତମ ପୁତ୍ର ରୂପେ ପରିଚିତ କରେଇ ବୈଷ୍ଣବ, ଶାକ୍ତ ଓ ଶୈବ ଧର୍ମଧାରାର ସମନ୍ୱୟ ଆଣୁଥିଲେ । ଏହି ସମନ୍ୱୟର ଚିହ୍ନ ସ୍ୱରୂପ ମନ୍ଦିର ଗାତ୍ରରେ ବିଷ୍ଣୁ ପୁରୁଷୋତ୍ତମଙ୍କ ଜଗନ୍ନାଥ ବା ଚକାନୟନ, ବିଚ୍ଛିନ୍ନ ବାହୁ ଓ ମାଦଳା ରୂପ ସାଙ୍ଗକୁ ଶିବ ଲିଙ୍ଗ ଓ ଦୁର୍ଗାଙ୍କ ମୂର୍ତ୍ତି ଶୋଭା ପାଉଥିଲେ ।

ବିଷ୍ଣୁ ପୁରୁଷୋତ୍ତମ ଯେପରି ପ୍ରତୀକ ଭାବେ ଜଗନ୍ନାଥ ରୂପେ ପୂଜାପାଇଲେ ତାଙ୍କ ସାଙ୍ଗକୁ ଶିବ ମଧ୍ୟ ପ୍ରତୀକ ଭାବେ ବଳଭଦ୍ର ଓ ଦୁର୍ଗା ସୁଭଦ୍ରା ଭାବେ ଦାରୁ ବିଗ୍ରହ ହୋଇ ଶୋଭା ପାଇଥିବେ ।

ପ୍ରଥମେ କିନ୍ତୁ ପୁରୁଷୋତ୍ତମ ଜଗନ୍ନାଥ ତ୍ରିମୂର୍ତ୍ତି ନଥିଲେ ଓ ତାଙ୍କ ପାଇଁ ଅନଙ୍ଗଭୀମ ଦେବ ଅଭିନବ ବାରାଣସୀ କଟକ ବା ବର୍ତ୍ତମାନର କଟକ ସହରରେ ମନ୍ଦିର ତୋଳେଇଥିଲେ । ବର୍ତ୍ତମାନ ସେ ମନ୍ଦିରର ଚିହ୍ନ ବର୍ଣ୍ଣ ନାହିଁ ।

ସ୍ୱର୍ଗତ ସୁରେନ୍ଦ୍ର ମହାନ୍ତି ତାଙ୍କ ନୀଳଶୈଳରେ ଲେଖିଛନ୍ତି ଅନଙ୍ଗଭୀମଙ୍କ ପ୍ରତିଷ୍ଠିତ ପୁରୁଷୋତ୍ତମ ମନ୍ଦିରକୁ ଏକରାମ ଖାଁ ଭାଙ୍ଗି ଦେଇଥିଲେ ଓ ସେ ପଥରରେ ସୁଜା ଖାଁ କଟକ କଦମ ରସୁଲ ନିର୍ମାଣ କରିଥିଲେ ।

ଐତିହାସିକ ପରମାନନ୍ଦ ଆଚାର୍ଯ୍ୟଙ୍କ ମତରେ ୧୩୬୦ ଖ୍ରୀଷ୍ଟାବ୍ଦରେ ଫିରୋଜ ସାହା ମନ୍ଦିର ଭାଙ୍ଗିଥିଲା । ଏ କଥା ଲଙ୍ଗିଫ୍‌ଙ୍କ ଲିଖିତ ଲଫିରୋଜ ସାହୀ ଗ୍ରନ୍ଥରେ ଫାର୍ସି ଭାଷାରେ ଲେଖା ହୋଇଛି ଓ ଏହି ମନ୍ଦିରର ମୂର୍ତ୍ତି ପଥରରେ ତିଆରି ବୋଲି ସେ ଅନୁମାନ କରିଛନ୍ତି ।

କଟକ ସହରରୁ ମିଳିଥିବା ମସ୍ତକ ହୀନ ନାରାୟଣ ମୂର୍ତ୍ତି ଏବେ ମ୍ୟୁଜିଅମରେ ଅଛି ଓ ଏହା ୧୩ଶ ଶତାବ୍ଦୀର ବୋଲି ...

ନାହିଁ। କିନ୍ତୁ ପୁରୁଷୋତ୍ତମ ମୂର୍ତ୍ତି କଦାପି ପଥରର ହୋଇ ନାହାନ୍ତି। ପୁରୀର ଅନୁକରଣରେ ପୁରୁଷୋତ୍ତମଙ୍କ ଦାରୁବିଗ୍ରହ ପ୍ରତିଷ୍ଠା ହୋଇଛି ଏଥିପାଇଁ ମନ୍ଦିର ନିର୍ମାଣ କରିଥିଲେ ଅନଙ୍ଗଭୀମ ଦେବ। ବର୍ତ୍ତମାନର କଦମରସୁଲ ଏହି ମନ୍ଦିରର ଭଗ୍ନାବଶେଷ ଉପରେ ପ୍ରତିଷ୍ଠିତ ବୋଲି ସୂଚନା ମିଳୁଛି ।

ଲେଖକ ନିଜେ ମୁସଲମାନ ବନ୍ଧୁମାନଙ୍କ ସାଙ୍ଗରେ ଯାଇ କଦମରସୁଲ ଦେଖିଛି। ଏହିଠାରେ ମହାପୁରୁଷ ରସୁଲ ମହମଦଙ୍କ ପାଦ ଚିହ୍ନ ପୂଜା ପାଉଛି। ମୋର ବହୁ ମୁସଲମାନ ବନ୍ଧୁ ଐତିହାସିକ କହିଛନ୍ତି ଇସଲାମ ଧର୍ମ ଅନୁଯାୟୀ କୌଣସି ମୂର୍ତ୍ତି ପୂଜା ହେବା କଥା ନୁହେଁ। ମହମଦଙ୍କ ପାଦ ଚିହ୍ନ କେବେ ପୂଜିବା କଥା ନୁହେଁ କାରଣ ଏହା ପିତୁଳା ପୂଜାକୁ ଉତ୍ସାହିତ କରିବ। ସେତେବେଳେ ବୁଦ୍ଧଦେବଙ୍କ ପାଦଚିହ୍ନ ବୋଲି ପଥରର ବହୁ ପାଦ ଚିହ୍ନ ବିକ୍ରୀ କରାଯାଉଥିଲା। ସେଥିରୁ ଗୋଟିଏ ଆଣି କଦମରସୁଲରେ ସ୍ଥାପନା କରାଯାଇ ଏହା ମହମଦଙ୍କ ପାଦ ବୋଲି ପୂଜାଯାଉ ଥାଇ ପାରେ ବୋଲି ଏହି ଐତିହାସିକ ମୁସଲମାନ ବନ୍ଧୁମାନେ କହିଛନ୍ତି ।

ଏହି କଦମରସୁଲ ବେଢ଼ା ଭିତରେ ବଡ଼ ମସଜିଦ୍ ନିର୍ମାଣ କରିଥିଲେ ସୁଜା ଖାଁ। ତାଙ୍କ ପୁଅ ତକି ଖାଁ କଟକର ନାଏବ ନାଜିମ ଥିଲେ ଓ ତାଙ୍କ ସମୟରେ ପୁରୀର ୨ୟ ରାମ ଚନ୍ଦ୍ର ଦେବ ମୁସଲମାନ ହୋଇଯାଇଥିଲେ। ଲେଖକ ଏହି କଦମରସୁଲର ପାଚିରୀ ଦେହରେ ହିନ୍ଦୁ ମନ୍ଦିର କାରୁକାର୍ଯ୍ୟ ସମ୍ବଳିତ ବହୁ ପଥର ଦେଖିବାକୁ ପାଇଛି। ଏଠାରେ ଥିବା ବିଶିଷ୍ଟ ମୁସଲମାନ ତଥା ଖୋଦ୍ ନାଏବ ନାଜିମ ତକି ଖାଁଙ୍କ କବରରେ ହିନ୍ଦୁ ମନ୍ଦିରର କାରୁକାର୍ଯ୍ୟ ଖଚିତ ଭଙ୍ଗା ପଥର ବ୍ୟବହାର କରାଯାଇଛି। ବିରାଟ ବେଢ଼ା ଦେଖିଲେ ନିଶ୍ଚୟ ମନେ ହେବ ଏହା ପୂର୍ବରୁ ଜଗନ୍ନାଥ ମନ୍ଦିର ଥିଲା। ଚୈତନ୍ୟ ମହାପ୍ରଭୁ ବସିଥିବା ଯାଗାରେ ବେଦୀ ତିଆରି ହୋଇଛି ଓ ଚୈତନ୍ୟଙ୍କର ଏକ ଛୋଟିଆ ମନ୍ଦିର ହୋଇଛି।

କଦମ ରସୁଲଠାରୁ ଜଗନ୍ନାଥବଲ୍ଲଭ ପର୍ଯ୍ୟନ୍ତ ଓ ତା'ର ଆଗକୁ ମହମଦିଆ ବଜାର ଓ ଡଗରପଡ଼ା ଅଞ୍ଚଳ ଏହି ଜଗନ୍ନାଥଙ୍କ ଶ୍ରୀକ୍ଷେତ୍ର ପରି ମନେ ହୁଏ ।

ମହମଦିଆ ବଜାରରେ ଥିବା ଏକ ଛୋଟ ମନ୍ଦିରର ବିରାଟ ଜଗନ୍ନାଥ ମୂର୍ତ୍ତି ମୋ ଦୃଷ୍ଟି ଆକର୍ଷଣ କରିଥିଲା। ତାଙ୍କ ବିଷୟରେ ବହୁ କଥା ମଧ୍ୟ ଶୁଣିଛି। ଏ ଅଞ୍ଚଳରେ ବୁଢ଼ାମାନେ କହନ୍ତି ତାଙ୍କ ପୂର୍ବପୁରୁଷ ପାଟରାମାନେ କେତେକ ସାଧୁଙ୍କଠାରୁ ଧନ ଦେଇ କିଣିଥିଲେ। ଏ ତିନିମୂର୍ତ୍ତି ପୋତା ହୋଇଥିଲେ। ସାଧୁମାନେ ସନ୍ଧାନ ପାଇ ତିନିମୂର୍ତ୍ତିଙ୍କୁ ଉଦ୍ଧାର କରିଥିଲେ ଓ ତାଙ୍କୁ ଧନୀ ପାଟରାମାନଙ୍କ ହାତରେ ଅର୍ପଣ କରିଥିଲେ। ବର୍ତ୍ତମାନର ପୂଜକ ଇଂରେଜ ଅମଳର ଏକ ଦଲିଲ ଜରିଆରେ କଟକ ଦେୱାନଦାରଙ୍କଠାରୁ ସାମାନ୍ୟ ପାରିଶ୍ରମିକ ପାଆନ୍ତି। ଏହି ଦଲିଲ ଅନୁସାରେ ଏହାଙ୍କ ପୂର୍ବ ପୁରୁଷ ଚୈତନ୍ୟ ମନ୍ଦିର ତଥା ଜଗନ୍ନାଥଙ୍କ ପୂଜା ଅଧିକାର ପାଇଥିଲେ। ଚୈତନ୍ୟ ମନ୍ଦିର ପରିଚାଳନା ପାଇଁ ତତ୍କାଳୀନ ପୁଲିସ ସାହେବ ଶ୍ରୀକୃଷ୍ଣ ମହାପାତ୍ର ମକଦମା କରିଥିଲେ ପୁରୀ ରାଜାମାନେ ଜଗନ୍ନାଥ ମନ୍ଦିର ସାଙ୍ଗକୁ ଚନ୍ଦନ ପୋଖରୀ, ଜଗନ୍ନାଥ ବଲ୍ଲଭ ଉଦ୍ୟାନର ବ୍ୟବସ୍ଥା କରିଥିବେ ଠିକ୍ ପୁରୀର ଅନୁକରଣରେ। କଦମରସୁଲର ଠିକ୍ ସାମନାକୁ କଟକ ଜେଲ୍ ଓ ଏହାର ଠିକ୍ ପଛ ପଟେ ରେଭେନ୍‌ସା ଗାର୍ଲସ୍କୁଲ ସାମନାରେ ବିରାଟ ଗଙ୍ଗାମନ୍ଦିର ପୋଖରୀ। କେତୋଟି ପୁରୁଣା ଗ୍ୟାରେଜ୍ ଓ ନୂଆ କୋଠା ମୁହଁ ଟେକିବାରୁ ଏ ପୋଖରୀର ଶୋଭା ନଷ୍ଟ ହୋଇଗଲାଣି। ପୋଖରୀ ମଝିରେ ବିରାଟ ଦ୍ୱୀପ ଦଣ୍ଡୀ। ଏହା ଜଗନ୍ନାଥଙ୍କ ଚନ୍ଦନ ପୋଖରୀ ଓ ଏହାର ଦ୍ୱୀପ ଦଣ୍ଡୀ ଏବେ ଗଙ୍ଗାଙ୍କ ମନ୍ଦିର ଭାବେ ପରିଚିତ ହୋଇ ପୋଖରୀର ନାମ ଗଙ୍ଗାମନ୍ଦିର ପୋଖରୀ ଓ ସାହି ନାମ ମଧ୍ୟ ଗଙ୍ଗାମନ୍ଦିର। ଇତିହାସ ଲୋକମାନସରୁ ପୁରା ପୁରି ପୋଛି ହୋଇଗଲାଣି ।

ପୁରୀର ଠିକ୍ ଜଗନ୍ନାଥ ବଲ୍ଲଭ ପରି କଟକରେ ସ୍ୱର୍ଗତ କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକଙ୍କ ଘର ପାଖରେ ଜଗନ୍ନାଥ ବଲ୍ଲଭ ଅଛି। ଏହି ଜଗନ୍ନାଥ ବଲ୍ଲଭରେ ରାୟ ରାମାନନ୍ଦଙ୍କ ଉଦ୍ୟାନ ଥିଲା। ଏବେ ବି ଉଦ୍ୟାନର ସେ ତୋରଣ ମହମଦିଆ ବଜାର ପଟକୁ ଅଛି। ଏଠି ବକୁଳ ଗଛ ମୂଳରେ ମକଦ୍ଦମାରେ ପୂଜକ ବିଜୟୀ ହୋଇଥିଲେ। ମନେହୁଏ, କଦମରସୁଲ ସ୍ଥାନରେ ଥିବା ଜଗନ୍ନାଥ ମନ୍ଦିର ଭଙ୍ଗା ହୋଇଥିବା ପୂର୍ବରୁ ଭକ୍ତମାନେ ତିନିମୂର୍ତ୍ତିଙ୍କୁ ପୋତି ଦେଇଥିଲେ। ବୋଧହୁଏ ଜଗନ୍ନାଥବଲ୍ଲଭ ଉଦ୍ୟାନ ଭିତରେ କେଉଁଠି ପୋତା ହୋଇଥିଲେ ।

ମୁସଲମାନ ରାଜତ୍ୱର ଅବସାନ ପରେ ମରହଟ୍ଟା ଅମଳରେ ଚୈତନ୍ୟ ମନ୍ଦିର ବିଗ୍ରହଙ୍କ ସହ ପୂଜକ ଏ ତିନିମୂର୍ତ୍ତିଙ୍କୁ ପୂଜା କରୁଥିଲେ ଓ ମହମଦିଆ ବଜାର ପାଟରା ସମ୍ପ୍ରଦାୟଙ୍କ ଚେଷ୍ଟାରେ ମହମଦିଆ ବଜାରରେ ପୂଜା ପାଇଲେ ।

ମହମଦିଆ ବଜାରରେ ଥିବା ଏହି ଜଗନ୍ନାଥଙ୍କ ଅଲୌକିକତା ସମ୍ବନ୍ଧରେ ବହୁତ କାହାଣୀ ରହିଛି। ଲେଖକର ମନେ ହେଉଛି ଏ ସେଇ ଅନଙ୍ଗଭୀମଙ୍କ ଅମଳର ଜଗନ୍ନାଥ ଓ ପରବର୍ତ୍ତୀ କାଳର ପୂଜିତ ବଳଭଦ୍ର ଓ ସୁଭଦ୍ରା ଏ ନିଶ୍ଚୟ ଭୂଗର୍ଭରେ ଥିଲେ। ମୂର୍ତ୍ତିଙ୍କ ବକ୍ଷସ୍ଥଳରେ ଥିବା ପାଟବସ୍ତ୍ର ଓ ଅନ୍ୟାନ୍ୟ ଆବରଣ ନଷ୍ଟ ହୋଇ ଯାଇଥିବାରୁ ଏ ମୂର୍ତ୍ତି ପୁରୀ ଜଗନ୍ନାଥଙ୍କ ପରି ମାଦଳ ଭଳି ନ ଦିଶି କେବଳ ଦାରୁ ରୂପରେ ଶୋଭା ପାଉଛନ୍ତି ।

ଶୁଣାଯାଏ ଜଣେ ବ୍ରାହ୍ମଣ ଜଗନ୍ନାଥଙ୍କ ମୂର୍ତ୍ତି ପଛପଟ ଜଳା କବାଟ ଖୋଲି ତାଙ୍କ ଗର୍ଭ ଭିତରେ ଥିବା ପଦାର୍ଥ ଦେଖିଥିଲା ଓ ଯାହା ଅଛି ବୋଲି କହିଥିଲା ତାହା ଜଗନ୍ନାଥଙ୍କ ପାଖରେ ଅଛି ବୋଲି ଏ ଲେଖକ ଶୁଣିଛି। ଜଳାକବାଟ ଖୋଲି ବ୍ରହ୍ମ ପଦାର୍ଥ ଦେଖିବା ପରେ ଉକ୍ତ ବ୍ରାହ୍ମଣର କାଳ ହୋଇଗଲା ବୋଲି ଲୋକ ମୁଖରେ ପ୍ରଚଳିତ। ଜଗନ୍ନାଥଙ୍କ ନଳାକୁ ବନ୍ଦ କରିଥିବା ପଡ଼ୋଶୀର ପିଲାମାନେ ମୂକ ହୋଇଗଲେ। ନିହାଣ ଲଗାଇ ଜଗନ୍ନାଥ ମୂର୍ତ୍ତିଙ୍କୁ ସୁନ୍ଦର କରିବା ଚେଷ୍ଟାରେ ମହାରଣାର ହାତ କଟିଯିବା କଥା ଶୁଣିଛି। ବହୁ ଲୀଳାର ନାୟକ ଏ ଜଗନ୍ନାଥ। ତେଣୁ ଏ ସେ କାଳର ଜଗନ୍ନାଥ ବୋଲି ଅନୁମାନ ।

ପୁରୀଠୁ ଦୂରରେ ରହିଥିବାରୁ କଟକ ଭିତରେ ଓ ବାରବାଟୀ ଦୁର୍ଗ ଭିତରେ ମଧ୍ୟ ଜଗନ୍ନାଥ ମନ୍ଦିର ନିର୍ମାଣ କରିଥିଲେ

ଗଜପତିମାନେ । ଦୁର୍ଗର ଜଗନ୍ନାଥ ରାଜାଙ୍କ ସାଙ୍ଗରେ ଯାଉଥିଲେ । ମୁକୁନ୍ଦଦେବଙ୍କ ସାଙ୍ଗରେ ଯାଇଥିବା ଜଗନ୍ନାଥ ଗୋହିରା ଟିକିରୀଠାରେ ଭଦ୍ରଗର ଭଦ୍ରକାଳୀ ମନ୍ଦିର ପାଖରେ ଏବେ ମଧ୍ୟ ପୂଜା ପାଉଛନ୍ତି । ଏବେ ବାରବାଟୀ ଦୁର୍ଗ ଖୋଳା ହେବା ପରେ ଏ ଜଗନ୍ନାଥ ମନ୍ଦିରର ଧ୍ୱଂସାବଶେଷ ମିଳୁଛି ।

ମୁଁ ପ୍ରଭୁ ଜଗନ୍ନାଥଙ୍କ ଧାରାବିବରଣୀ ଦେବା ସମୟରେ କଟକ ଜେଲ ଥିବା ଅଞ୍ଚଳର ମାହାତ୍ମ୍ୟ ଶୁଣି ତତ୍କାଳୀନ ଜେଲ୍ ସୁପରିଟେଣ୍ଡେଣ୍ଟ ସ୍ଥିର କଲେ ଏବଂ ଜେଲ୍ ଭିତରେ ଗୋଟିଏ ଜଗନ୍ନାଥ ମନ୍ଦିର ତିଆରି ହେବ । ସେଠାରେ ଥିବା ଗୋଟିଏ ନିମ୍ବ ଗଛର କାଠରେ ଜଗନ୍ନାଥ ତିଆରି ହେଲେ । ଜେଲ୍ ସୁପରିଟେଣ୍ଡେଣ୍ଟଙ୍କ ପିତା ରାଜବନ୍ଦୀ ଥିବା ବେଳେ ଅନ୍ୟ ବନ୍ଦୀଙ୍କ ସହ ଏଇ ନିମ୍ବ ଗଛ ତଳେ ବସୁଥିଲେ ଓ ଏଠାରେ ବହୁତ ଶାନ୍ତି ପାଉଥିଲେ ।

ମନ୍ଦିର ତିଆରି ହେଲା । ମନ୍ଦିର ତିଆରି କରିଥିବା କାରୀଗର ହାଇକୋର୍ଟ ଆଦେଶରେ ତାଙ୍କ କଏଦୀ କାଳ କୋହଳ ହୋଇ ମୁକ୍ତ ହେଲେ । ଜଗନ୍ନାଥଙ୍କ ଦାରୁ ମୂର୍ତ୍ତି ନିର୍ମାଣକାରୀଙ୍କ ପାଇଁ ହାଇକୋର୍ଟ ହେଲା ଓ ସେ ବି ଶୀଘ୍ର କାରାମୁକ୍ତ ହେଲେ ।

ଜଗନ୍ନାଥ ବଲ୍ଲଭରେ ଥିବା ମନ୍ଦିରର ପରିଚାଳକ ବନ୍ଧୁ ରାମାନୁଜ ଦାସଙ୍କଠୁ ଶୁଣିଛି ନବକଳେବର ଦାରୁରେ ତାଙ୍କ ମନ୍ଦିର ଜଗନ୍ନାଥ ମରହଟ୍ଟା ଅମଳରେ ପ୍ରତିଷ୍ଠିତ ହୋଇଥିଲା । ପାଖରେ ଥିବା ଚନ୍ଦନ ପୋଖରୀକୁ ପୋତି ଘର କରିବା ପାଇଁ ଯିଏ ଚେଷ୍ଟା କରିଛି ତା'ର ବହୁତ କ୍ଷତି ହୋଇଛି ଓ ଘର ହୋଇ ପାରି ନାହିଁ । ପୋଖରୀ ମଧ୍ୟ ଅଧା ପୋତା ହୋଇ ରହିଛି । ଏଥିରୁ ଏ ଅଞ୍ଚଳ ଜଗନ୍ନାଥଙ୍କର ବୋଲି ଅବିଶ୍ୱାସ କରିହେବ ନାହିଁ ।

ଏହି ଜଗନ୍ନାଥ ବଲ୍ଲଭ ପାଖରେ ଥିବା କାଳିବଜାର ପୋଖରୀରୁ ବହୁ ପ୍ରାଚୀନ ମୂର୍ତ୍ତି ମିଳିଛି । ଏବେ ନିକଟରେ ଗୋଟିଏ ବିରାଟ ଗଣେଶ ମୂର୍ତ୍ତି ବାହାରି ପୂଜା ପାଉଛନ୍ତି ବୋଲି ମୋର ସୁହୃଦ ବନ୍ଧୁ କହିଛନ୍ତି ।

ଏଥିରେ କାହା ପ୍ରତି ବିଦ୍ୱେଷ ଆସିବା ଠିକ୍ ନୁହେଁ । ଦମନ ସୁଅରେ ଘଟଣାସବୁ ବିଭିନ୍ନ ଭାବେ ସାଇତା ହୋଇଛନ୍ତି ।

କିମ୍ବଦନ୍ତୀ, ଇତିହାସ ଓ ଅନୁଭୂତିକୁ ମିଶାଇ ଲୀଳାମୟଙ୍କ କଥା ଲେଖିଲି ।

ସୁଜନେ ଦୋଷ ଧରିବେ ନାହିଁ । ବିଦେଶୀ ଆକ୍ରମଣର କରାଳ କବଳରୁ ମୁକୁଳି ସେହି କମନୀୟ ମୂର୍ତ୍ତି ଯେପରି ଦେବୀଯମା ... ପ୍ରାଚୀନ ନଗରୀ କଟକରେ ମଧ୍ୟ ସେ ଅଟକ ରହି ପ୍ରାଚୀନ କଳେବରରେ ନିତ୍ୟ ନୂତନ । ଅସୀମ ମଧ୍ୟରେ ସେ ସସୀମ ପ୍ରକଟ ଓ ଅପ୍ରକଟର ସମନ୍ୱୟ ବିଗ୍ରହ ସେ ।



ଢେଙ୍କାନାଳରେ ରଥଯାତ୍ରା ।



ରାଧାନାଥ ଦାସ

ଓ ଏ କ'ଣ ଦିନେ ଦି'ଦିନର କଥା ହେଇଛି ଯେ, ମଣିମାଙ୍କ ପାଖରୁ ଠିଆ ଠିଆ ଦି'ପଦ କଥା ହେଇ ଫେରିଆସିବି। ବରଷକ ପରେ ପରା ଆଜି ପୁଣି ଦେଖା। ବରଷଟା ଯାକର କଥା ଗୁଡ଼ାକ ଗଣ୍ଠିଲିରେ ମୋର ଗଣ୍ଠି ପକେଇ ସେଇମିତି ସାଇତି ରଖିଛି। ବଡଦାଣ୍ଡଟାରେ ଆଜି ସେ ଗଣ୍ଠିଲି ଖୋଲି ଗୋଟି ଗୋଟି କରି ସବୁ କଥା ମଣିମାଙ୍କୁ କହି ପକେଇବି। ଅବଶ୍ୟ ମୋର କଥା ତାଙ୍କୁ ଅଜଣା ଅଛିଯେ, ମୋ ଦୁଃଖ ସୁଖର କଥା ଜଣେଇବି। ତଥାପି ମନ ମାନୁଛି କେତେବେଳେ। କଥା ଗୁଡ଼ାକ ଶ୍ରୀଛାମୁରେ କହି ପକେଇଲେ, ମନଟା ଟିକିଏ ଥଣ୍ଡା ପଡ଼ିଯିବ। ଶ୍ରୀକ୍ଷେତ୍ର ଆସି ଭିଡ଼ ଭିତରେ ପଶି, ଅଣନିଃଶ୍ୱାସୀ ହୋଇ ଠିଆ ହବା ଯୋଉ ବାଧା, ତାହା ଆଉ ବାଧିବ ନାହିଁ। ଠାକୁରେ ମୋ କଥା ନିଶ୍ଚୟ ଶୁଣିଲେ। କାରଣ ମୁଁ ତ ତାଙ୍କୁ ମୁହଁ ଖୋଲି କେବେକିଛି କାହିଁ ପଚେଇ ମାଗିନି, କି ଆଜି କାଲିକାର ଶସ୍ତା ଭଜନ, ଜଣାଣ ଗାଇଶେଇ ମଣିମାଙ୍କୁ କେବେ ବିରକ୍ତ କରେଇ ଦେଇନି। ସେ ମୋକଥା ଶୁଣିବେନି କାହିଁକି? ଅଲବତ୍ ଶୁଣିବେ। ମୋଂରତ ଭବିଷ୍ୟତରେ ଇଲେକସନ୍‌ରେ ଠିଆ ହବାର ନାହିଁକି, ବୈକୁଣ୍ଠ ପୁରରେ ଘରଡ଼ିହ ପାଇଁ ଜମି ଲିଜ୍ ନବାର ନାହିଁ। ତେବେ ମୋ କଥା ମଣିମା କାନକୁ ନେବେ ନାହିଁ କାହିଁକି? ଶୁଣିଥିଲି— ମହାପ୍ରଭୁ କୁଆଡ଼େ ବୈକୁଣ୍ଠରେ ଘରଡ଼ିହ ପାଇଁ ତିନିଭାଗ ଜମି, ମର୍ତ୍ତ୍ୟବାସୀଙ୍କୁ ଲିଜ୍ ଦେଇ ସାରିଲେଣି। ବାକୀ ଯାହା ଜମି ଅଛି, ଠାକୁରେ ବୈକୁଣ୍ଠରେ ଗୋଚର, ଖେଳ ପଡ଼ିଆ, ପୁଷ୍କରିଣୀ, ସ୍କୁଲ, କଲେଜ, କ୍ଲବଘର, ବିଭିନ୍ନ ପ୍ରକାର କାର୍ଯ୍ୟାଳୟ ଘର ଏବଂ ଭିଜିଭି ଫସେଲ୍ ପାଇଁ ସଂରକ୍ଷିତ କରି ରଖିଛନ୍ତି। ଆଉ ଜମି ଆସିଲା କେଉଁଠୁ ଯେ, ଠାକୁରେ ଲିଜ୍ ଦେବେ। ଏବେ କୁଆଡ଼େ ବୈକୁଣ୍ଠ ବାସୀମାନେ ମର୍ତ୍ତ୍ୟପୁରରୁ ଲିଜ୍ ପାଇଁ ଇସ୍ତାହାର ଯାଉ ଯାଉ, ସବୁ ଇସ୍ତାହାର ଗୁଡ଼ାକ ଅବ୍‌ଜେକସନ୍ କରି, ମର୍ତ୍ତ୍ୟପୁରକୁ ଫେରେଇ ଦଉଛନ୍ତି। ତା'ର କାରଣ ହେଲା ଏଇା ଯେ— ମର୍ତ୍ତ୍ୟ ବାସୀମାନେ କୁଆଡ଼େ ବୈକୁଣ୍ଠକୁ ଆସି ଜନ ସଂଖ୍ୟା ବୃଦ୍ଧି କରି, ଦେବ ନନ୍ଦନକାନନରୁ ଗଛ କାଟି, ବୈକୁଣ୍ଠର ଶାନ୍ତ ସୁନ୍ଦର ପରିବେଶକୁ ଦୂଷିତ କରି ଦଉଛନ୍ତି।

ବଡ଼ ବଡ଼ ଭକ୍ତମାନଙ୍କ ଲିଜ୍ ଦରଖାସ୍ତ ଯେତେବେଳେ ବୈକୁଣ୍ଠପୁରରୁ ଅବ୍‌ଜେକସନ୍ ହୋଇ ଫେରିଆସୁଛି, ମୁଁ କିଂବା ଭକ୍ତ ଯେ, ସେ ବିଜକୁ ଆଶା କରିବି। ମୁଁ ତ ଗୋଟାଏ ସାମାନ୍ୟରୁ ସାମାନ୍ୟତମ ଜୀବଟିଏ। ତେଲ ଲୁଣର ସଂସାର ଭିତରେ ସେହି କାଳିଆ ସାଆନ୍ତଙ୍କ ଶ୍ରୀଚରଣରେ ନିଜକୁ ସମର୍ପି ଦେଇ ନାଆ ମୋର ବାହି ଚାଲିଛି। ମୋର ସେ ଦେବ ଦୁର୍ଲଭ ବୈକୁଣ୍ଠପୁର ମୋଟେ ଦରକାର ନାହିଁ। ମୋର ଦରକାର କାଳିଆ ସାଆନ୍ତଙ୍କ ସହ ଟିକିଏ ମନଖୋଲା କଥାବାର୍ତ୍ତା ଆଉ ପେଟ ପୂରା ଦର୍ଶନ। ଯାହାଙ୍କ ଦର୍ଶନ ପାଇଁ ସାରା ବିଶ୍ୱ ବ୍ରହ୍ମାଣ୍ଡର ଭଗତେ ଆଜି ବଡ଼ଦାଣ୍ଡରେ ଠୁଳ। ଯାହାଙ୍କ ଦର୍ଶନ ପାଇଁ ସ୍ୱୟଂ ବ୍ରହ୍ମା, ମହେଶ୍ୱର ଏବଂ ଇନ୍ଦ୍ରାଦି ତେତିଶ କୋଟି ଦେବତାଙ୍କ ସହିତ ନାଗ, ଯକ୍ଷ, ଗନ୍ଧର୍ବ, କିନ୍ନରଆଦି ଧାଡ଼ି ବାନ୍ଧି ସିଂହଦ୍ୱାରଠି ଅପେକ୍ଷାରତ; ସେ ମହାପ୍ରଭୁଙ୍କ ଦର୍ଶନ ଭାଗ୍ୟରେ ଥିଲେ ସିନାମିଳେ। ଅବଶ୍ୟ ଆଜିକାଲି ଦୂରଦର୍ଶନ ମାଧ୍ୟମରେ ମହାପ୍ରଭୁଙ୍କ ଘୋଷଯାତ୍ରାର ସିଧା ପ୍ରସାରଣ ପାଇଁ ବ୍ୟବସ୍ଥା ହେଉଚି। ହେଲେ ଏ'ଟକିଛି ନୂଆ କଥା ନୁହେଁ। ମହାପ୍ରଭୁଙ୍କର ସିଧା ପ୍ରସାରଣ ଯୁଗଯୁଗ ଧରି ବହୁ ପୁରାତନ କାଳରୁ ହିଁ ହୋଇଆସୁଅଛି। ଭକ୍ତ ଶ୍ରେଷ୍ଠ ଦାସିଆ ବାଉରୀ ନିଜ ଆଶ୍ରମ ପଛପଟ ବାଡ଼ିଆ ଭିତରେ, ଦିନେ ପଞ୍ଚସଖାମାନଙ୍କୁ ମହାପ୍ରଭୁଙ୍କର ଦଶଅବତାରର ସିଧା ପ୍ରସାରଣ ଦୃଶ୍ୟ ଦେଖେଇ ପାରିଥିଲେ। ଏତଦ୍‌ବ୍ୟତୀତ ସେ ନିଜେ ମଧ୍ୟ ଶ୍ରୀମନ୍ଦିରର ନୀଳଚକ୍ର ଉପରେ ଶ୍ରୀଜଗନ୍ନାଥଙ୍କ ଦଶାବତାର ରୂପର ସିଧା ପ୍ରସାରଣ ସ୍ୱଚକ୍ଷୁରେ ଦେଖି ପାରିଥିଲେ, ଆପଣାର ନିଷ୍କାମ ଭକ୍ତିବଳରେ ଇଏତ ବହୁଦିନ ତଳର କଥା। ମୁଁ ତ ଆଉ ଭକ୍ତ ଦାସିଆ ବାଉରୀ ହେଇନିଯେ, ଗାଆଁରେ ଥାଇ ମୋ ବାଡ଼ିପଟ କୁଅ ଭିତରେ ମହାପ୍ରଭୁଙ୍କର ରଥ ଯାତ୍ରାର ସିଧା ପ୍ରସାରଣ ଦେଖି ପାରିବି। ସେ ଭାଗ୍ୟ ମୋର ହବ କୁଆଡୁ। ପ୍ରଭୁଙ୍କ ତରଫରୁ ପ୍ରସାରଣ ଏବଂ ଜନତାଙ୍କ ତରଫରୁ ପ୍ରସାରଣରେ ବହୁ ପ୍ରଭେଦ ଥାଏ। ପ୍ରଭୁଙ୍କ ତରଫରୁ ଯେଉଁ ପ୍ରସାରଣ ହୁଏ, ସେ ପ୍ରସାରଣ ଦର୍ଶନରେ, ବିନା ଦରଖାସ୍ତରେ ସିଧା ବୈକୁଣ୍ଠ ପ୍ରାପ୍ତି ହୁଏ।ସତ କହୁଚି ଠାକୁରେ—ମୁଁ ମଣିଷ ମାରିନିକି ଗୋ—ହତ୍ୟା କରିନି। ତଥାପି ମୁଁ ମୋ ବିଶ୍ବରରେ

ମହାପାପୀ । ପ୍ରଥମତଃ କଳି ଯୁଗରେ ମୁଁ ହଉଚି ବହୁ କୁଟୁମ୍ବୀ । ମାତ୍ର ନଅଟି ସନ୍ତାନ-ସନ୍ତତିଙ୍କର ପିତା । ଦ୍ୱିତୀୟରେ ବହୁ କୁଟୁମ୍ବୀ ହବାରୁ ସାମାନ୍ୟ ଛୋଟ ଚାକିରିଟିଏ କରି, ସଂସାର ଚଳେଇବାକୁ ଦରମା ଗଣ୍ଡାକ ପାଉନଥିବାରୁ, ମୁଁ ବାଧହୋଇ ଜନସାଧାରଣଙ୍କୁ ସେବା ଦବାପାଇଁ ବିଭିନ୍ନ ଆଳରେ ଆଜିକାଲି କହି ଠକି, କିଛିଟା ଅର୍ଥ ଲାଞ୍ଚ ନେଉଥାଏ । ଏତିକି ମୋର ଦୁର୍ବଳତା ଠାକୁରେ !

ଦରଖାସ୍ତ ଖଣ୍ଡିକ ହାତରେ ଧରି ଅଗାଧୁ ଦାସେ ଏଇ କଥା ଚିନ୍ତା କରୁ କରୁ, ସହସା ଶୁଣାଗଲା ହରିବୋଲ, ହୁଳହୁଳି, ଘଣ୍ଟ, ମର୍ଦ୍ଦଳର ଗୁରୁ ଗମ୍ଭୀର ଧ୍ୱନି । ଗମ୍ଭୀରା ଭିତରୁ ମହାପ୍ରଭୁମାନେ ସକାଳ ଧୂପ ବଢ଼େଇ, ସେନାପଟାଲାଗି ହୋଇ, ଧାଡ଼ି ପହଣ୍ଡିରେ ସାତପାହାଚ ଦେଇ ବିଜେ କଲେ । ସାତ ପାହାଚଟି ଲାଗି ହେଲେ ମହାପ୍ରଭୁମାନେ ଫୁଲର ଟାହିଆ । ଧୀରେ ଧୀରେ ଦିଅଁମାନେ ବିଭିନ୍ନ ପ୍ରକାର ଛଇ ଛଟକ ଦେଖେଇ, ନିଜର ଅତି ପ୍ରିୟ ଦଇତାଙ୍କ ସାଙ୍ଗରେ ରଙ୍ଗରହସ୍ୟ କରି, ବାଇଶ ପାହାଚ ଦେଇ ଓହ୍ଲେଇ ଆସିଲେ ସିଂହ ଦରଜା ଆଡ଼କୁ । ଦିଅଁମାନଙ୍କର ପହଣ୍ଡି ବିଜେର ଗୁରୁ ଗମ୍ଭୀର ନାଦରେ, ସିଂହଦ୍ୱାରଗଣ୍ଡ ଜନ-ସମୁଦ୍ର ସହସା ଉଦ୍‌ବେଳିତ ହୋଇ ଉଠିଲା ସେହି ଉଦ୍‌ବେଳନ ଭିତରେ ହିଁ ଦାସେ ଆପଣାକୁ ସମ୍ପୂର୍ଣ୍ଣ ରୂପେ ଭସେଇ ଦେଲେ । ସେହି ଉନ୍ମତ୍ତ ସମୁଦ୍ରର ଉତ୍ତାଳ ତରଙ୍ଗରେ । ସେହି ମୁହୂର୍ତ୍ତରେ ସେ ଭୁଲିଯାଇଥିଲେ ନିଜକୁ ଏବଂ ନିଜର ପରିବାର ତଥା ନିଜର କର୍ମକ୍ଷେତ୍ରକୁ । ଦାସେ ପୁଣି ଥରେ ଭାବ ବିହ୍ୱଳ କଣ୍ଠରେ ବାଉଳଙ୍କ ପରି ଗାଇ ଉଠିଲେ "ଆହା-ହା-ହା-କି ଦେବଦୁର୍ଲଭ ଏ କଳା ମୁଗୁନିଆ ଚେହେରା । କୋଟିଏ ମଦନ ମଧ ଏ ରୂପରେ ହାର ମାନିଯିବେ । କାଳିଆ ଗୁମ୍ଫୁଣି ହାତୀଟିଏ କ'ଣ ନୀଳକନ୍ଦରରୁ ଯାଚି ପଘା ଛିଣ୍ଡେଇ ଫିଟି ଆସିଚିକି ? ଖାଲ ସଗ ସଗ ଦିହରେ କାଳିଆ ସୁନାଙ୍କର ପୁଣି କି ଠାଣି ମାଣି । ମୁଖ ମଣ୍ଡଳର ସେ ତେଜୟାନ୍ ଦୀପ୍ତି ସାରା ସଂସାରକୁ ଝଟକେଇ ଦଉଛି । ସର୍ବାଙ୍ଗରେ ଉତ୍ତମ ପୁରୁଷର ଉତ୍ତମ ଲକ୍ଷଣ ।

ତ୍ରେତୟାଯୁଗରେ କୁଆଡ଼େ ଏହି ଦିଅଁଙ୍କୁ ଦେଖି, ଦଣ୍ଡକାରଣ୍ୟରେ ଅଶି ବରଷିଆ ଋଷିମାନଙ୍କର ନାରୀ ଭାବ ଜାଗ୍ରତ ହୋଇଥିଲା । ଇଏତ ସାମାନ୍ୟ ଦିଅଁ ନୁହଁନ୍ତିରେ ବାବା । ଭାରି ମନୁଆଁ ଦିଅଁ । କେତେବେଳେ କେଉଁଠି କାହାଘରେ ପଶି ଶାଗଭଜା, ପଖାଳ ଖାଇଚନ୍ତି-କାହା ହାତରୁ ପୁଣି ନଡ଼ିଆ ଛଡ଼େଇ ନେଇଛନ୍ତି । କିଏ ତାଙ୍କୁ ପୁଣି ଅଇଁଠା କୋଳି ଖୁଆଇ ଦେଇଚିତ, କିଏ ପୁଣି ତାଙ୍କ ଛାତିକି ଦେଖି ଗୋଇଠା ମାରିଚି । କେତେବେଳେ ପୁଣି ବାଉଁଶ କିଆରୀରେ ପଶିଚନ୍ତି-ରାତିଅଧଟାରେ କାହାକୁ ସୁନାଥାଳିରେ ଭୋଗଥାଳିଏ ଯାଚି ଦେଇଚନ୍ତି । ଏଇ ଭଳିତ ତାଙ୍କର ଅନେକ ଇତିହାସ ପୃଷ୍ଠା ଓଲଟାଇଲେ ସରିବ ନାହିଁ । ଦାସେ ଅନେକ କଥା ଚିନ୍ତାକରି ପକେଇଲେ । କିନ୍ତୁ ସେ ଯେ ଏଠିକି କାହିଁକି ଛୁଟି ନେଇ ଆସିଚନ୍ତି ଏବେ ଦୂରରୁ ସେ କଥାଟା ଦାସେ ସମ୍ପୂର୍ଣ୍ଣ ଭୁଲି ଗଲେ ନାଁ କଣ ? ଦାସଙ୍କର ହଠାତ୍ ଚେତା ପଶିଲା । ମାୟା ସଂସାରକୁ ମନ ପୁଣି ଟିକିଏ ଧାଇଁଗଲା । ଦାସେ ଚିନ୍ତାକଲେ-ଏଇଟା ହଉଚି ମାହେନ୍ଦ୍ର ମୁହୂର୍ତ୍ତ । ଠିକ୍ ଏତିକି ବେଳେ ଦଇତା ପତିଙ୍କ ଭିଡ଼କୁ ଠେଲି, ଗହଳି ଭିତରେ ପଶି, ମଣିମାଙ୍କ ଶ୍ରୀହସ୍ତରେ ଦରଖାସ୍ତ ଖଣ୍ଡିକ ମୋର ଗୁଞ୍ଜି ଦିଏ ... ପାଇବି ଶେଷ । ଛାମୁଙ୍କର ବର୍ତ୍ତମାନ ଟୁର୍ ପ୍ରୋଗ୍ରାମ୍ ... ମୁଖ ମଣ୍ଡଳକୁ ଦେଖି, ମନଟା ତାଙ୍କର ବେଶ୍ ଖୁସିଥିବାର ... ପଡୁଚି । ମୋ ଦରଖାସ୍ତ ଖଣ୍ଡିକ ପଢ଼ି, ସେ ନିଶ୍ଚୟ ମୋ... ବିଶ୍ୱାସକୁ ଆଣିବେ ।

ଦାସେ ହଠାତ୍ ଅବାକ୍ ହୋଇଗଲେ । "ଆରେ ମୋ ଦରଖାସ୍ତ ଖଣ୍ଡିକ କୁଆଡ଼େ ଗଲା !!" ଏତେବଡ଼ ଗହଳିରେ କେଉଁଠି ... ଗଲା ନାଁ ପକେଟ୍ ଭିତରେ ମୁହଁ ପୁରେଇ ଷଣ୍ଢ ଖାଇଗଲେ" ?? ଦାସେ ବର୍ତ୍ତମାନ କିଂ କର୍ତ୍ତବ୍ୟ ବିମୂଢ଼ ହୋଇ ଖୁଣ୍ଟବା ... ସେମିତିଠିଆ ହୋଇରହିଲେ । ସେ ଏବେ କରିବେ କ'ଣ ? ନିଜର ବ୍ୟକ୍ତିଗତ ଦୁଃଖଡକ ଯେ ସଏଣ୍ଟ ଦେଇ ସେ ଦରଖାସ୍ତ ଖଣ୍ଡିକରେ ଲେଖି ଦେଇଥିଲେ । ଏଣେ ପୁଣି ଦରଖାସ୍ତ ହଜିବାରୁ ତେଣେ ପୁଣି ପଏଣ୍ଟ୍ ଗୁଡାକ ତାଙ୍କର ଆଉ ମନେ ପଡୁନି । ଦାସେ ଏବେ ନିରୁପାୟ । ବ୍ୟର୍ଥ ହୋଇଚି ତାଙ୍କର ଶ୍ରମ କରି ଶ୍ରୀକ୍ଷେତ୍ର ଆସିବା । ତାଙ୍କର ବ୍ୟକ୍ତିଗତ ଦୁଃଖ ଯେ ଆଉ ଲାଘବ ହୋଇ ପାରିବ ନାହିଁ । ସିଏ ସେମିତି ଚିର ଦୁଃଖୀଟିଏ ହୋଇ, ଆଜି କାଲିକାର ପ୍ରତିଯୋଗିତା ମୂଳକ ସମାଜରେ ଆଦୌ ଚଳି ପାରିବେ ନାହିଁ । ଦାସଙ୍କର ପାଞ୍ଚୋଟି ଯାକ ଝିଅ ସେମିତି ଅଭିଆଡ଼ି ହୋଇ ରହିଯିବେ । ଚାକିରିରେ ତାଙ୍କର ଆଉ ପ୍ରମୋଶନ ହୋଇ ପାରିବନାହିଁ । ରୋଗୀଣା ସ୍ତ୍ରୀଟିର ଶ୍ୱାସରୋଗ, ଆଉ ଭଲ ... ହୋଇ ସେମିତି ରହିଯିବ !!

ପ୍ରବଳ ଜନ-ସମୁଦ୍ରର ଉତ୍ତାଳ ତରଙ୍ଗମାଳାରେ କେତେବେଳେଯେ ତାଙ୍କ ଅଜାଣତରେ ଭାସିଯାଇଥିଲା ମଣିମାଙ୍କ ପାଖକୁ ଦରଖାସ୍ତ ଖଣ୍ଡିକ । ଯାହାଙ୍କର ମାୟା ଦେବଙ୍କୁ ଅଗୋଚର । ସେ ଠାକୁରଙ୍କର ଏ ମାୟାକୁ ବୁଝିବ କିଏ ? ଆପଣାର ହାତରେ ଦରଖାସ୍ତଟିଏ ନଥିବାକୁ ତେଣେ ପୁଣି 'ଜଗାସାଆନ୍ତେ ପହଣ୍ଡି ହୋଇ ଦାସଙ୍କର ନିକଟତର ହେଲେଣି । ଯେତିକି ଯେତିକି ଠାକୁରେ ଦାସଙ୍କର ନିକଟ ହଉଥାନ୍ତି, ଦାସେ ... ନିଜର ଦୁଃଖ କାହାଣୀ ସବୁ ପାଶୋରି ଦଉଥାନ୍ତି । ଧନ୍ୟ ହେ ମହାପ୍ରଭୁ, ଧନ୍ୟ ଆପଣଙ୍କର ଏ ଲୀଳା । ଏ ଲୀଳାର ଆଦିଅନ୍ତ ଏ ପର୍ଯ୍ୟନ୍ତ କେହି ପାଇ ପାରିନାହାନ୍ତି । ସାମାନ୍ୟ ମାନବ ହୋଇ, ଏ ଅନନ୍ତ-ଅମୀୟ ଲୀଳାକୁ ବୁଝିବ ବା କେମିତି ? ମହାପ୍ରଭୁଙ୍କର ମାୟାରେ ଦାସେ ବର୍ତ୍ତମାନ ସମ୍ପୂର୍ଣ୍ଣ ଛିଡି ଜ୍ଞାନ ଶୂନ୍ୟ । ପୂର୍ଣ୍ଣବ୍ରହ୍ମଙ୍କ ପାଖରେ, ମାନବ ଦେହରୁ ଆପେ ଆପେ ବିଷୟା ବିଷ କି ଅପସରି ଯାଏ । ମଣିମାଙ୍କର ଶ୍ରୀମୁଖ ଦର୍ଶନରେ ସେ ଭୁଲି ଯାଇଛନ୍ତି ତାଙ୍କର ଜଞ୍ଜାଳମୟ ସାଂସାରିକ ଜୀବନ । ହୃଦୟରେ ତାଙ୍କ ଅଙ୍କୁରିତ ହୋଇଚି ବିଶ୍ୱ-ବ୍ରହ୍ମାଣ୍ଡ ଦର୍ଶନର ଏକ ଆବେଗମୟ ବ୍ୟାକୁଳତା ।

ଠାକୁରେ ପହଣ୍ଡି ହୋଇ, ଦାସଙ୍କର ନିକଟବର୍ତ୍ତୀ ହୋଇ ଟିକିଏ ଅଟକି ଗଲେ । ଇଚ୍ଛାମୟ ପୁରୁଷ ସିଏ । ତାଙ୍କର ... ନହେଲେ ତାଙ୍କୁ ପୁଣି କିଏ ଉଠେଇବ ? ଏହାଥିଲା ଦାସଙ୍କ ପାଇଁ ସୁବର୍ଣ୍ଣ ସୁଯୋଗ । ଦାସେ ଆଉ କାଳ ବିଳମ୍ବ ନକରି, ସହସା ସେ ଗହଳି ଭିତରକୁ ପଶିଯାଇ, ମହାପ୍ରଭୁଙ୍କର ମହାବାହୁକୁ ଯାବୁଡ଼ିଧରି...

ଛୋଟିଆ ପିଲାଙ୍କ ପରି କହିଁ କହିଁ କାନ୍ଦି ଉଠିଲେ । ଅବଶ୍ୟ ସ୍ୱା' ଭିତରେ ସେ ଅନେକ ବିଧା, ଗୋଇଠା ଖାଇସାରିଲେଣି । ସେଥି ପାଇଁ କିନ୍ତୁ ଦାସଙ୍କର ଆଉ ନିଘା ନଥାଏ । ବିଶ୍ୱ ନିୟନ୍ତାଙ୍କୁ ସେ ଆଜି ନିଜ ହାତ ମୁଠାରେ ଧରି ରଖିଛନ୍ତି ଏହାଠାରୁ ବଳି ବଡ଼ ଭାଗ୍ୟ ଆଉ କ'ଣ ଥାଇପାରେ । ଜୀବନ ତାଙ୍କର ସାର୍ଥକ ହୋଇଛି । ଚର୍ମ ନୟନ ତାଙ୍କର ପବିତ୍ର ହୋଇଚି । ତେଣିକି ତାଙ୍କ ସଂସାର ଭାସିଲେ ଭାସୁ କି ରହିଲେ ରହୁ । ସେଥିରେ ତାଙ୍କର ଯାଏ ଆସେ କେତେ । ଯିଏ ଏ ସଂସାର ଭିତରକୁ ତାଙ୍କୁ ଡାକି ଆଣିଛନ୍ତି, ସେ ସଂସାର କଥା ସିଏ ବୁଝିବେ ନାହିଁତ ଆଉ ବୁଝିବ କିଏ ? ସେ କ'ଣ ଏଡ଼େ ବୋକା ହୋଇଚନ୍ତି ଯେ, ବିଶ୍ୱବ୍ରହ୍ମାଣ୍ଡର ମାଲିକଙ୍କ ପାଖରୁ ଯାହିତାହି ଜିନିଷଟାଏ ମାଗି ପକେଇ ଆସିବେ । ନାଁ, ନାଁ ତା ହୋଇନପାରେ । ବିଶ୍ୱ ଚିନ୍ତାମଣିଙ୍କ ପାଖରେ ସେ ଉପସ୍ଥାପନା କରିବେ ବିଶ୍ୱ ବ୍ରହ୍ମାଣ୍ଡର ଅଭାବ ଅସୁବିଧାର ବିବରଣୀ । ଦାସେ ଠିକ୍ ରୂପେ ବୁଝି ପାରିଛନ୍ତିଯେ, ବିଶ୍ୱ ବଞ୍ଚିଲେ ସେ ବଞ୍ଚି ରହିବେ । ବିଶ୍ୱର ପ୍ରାଣୀ ବଞ୍ଚି ରହିଲେସିଏ ବି ସେମାନଙ୍କ ସହିତ ବଞ୍ଚି ରହିବେ । ନଚେତ ଆଉ ମାତ୍ର କେଇଟା ବର୍ଷ ଭିତରେ ଏ ବିଶ୍ୱ ଧ୍ୱଂସ ମୁଖକୁ ଟାଣି ହୋଇ ଯିବ । ସନ୍ଥକବି ଭୀମ ଭୋଇଙ୍କି କ'ଣ ଭଗବାନଙ୍କ ପାଖରେ ଆଉକିଛି ମିଳିଲାନାହିଁ ମାଗିବାକୁ ଯେ, ସେ ଶେଷରେ କହିଲେ "ମୋ ଜୀବନ ପଛେ ନର୍କେ ପଡ଼ିଥାଉ–ଜଗତ ଉଦ୍ଧାର ହେଉ" । ଦାସେ ପରା ସେହି ମାଟିର ପୁଅ । ସେ କାହିଁକି ସେଥିରୁ ବାଦ୍ ଯିବେ ? ଜଗତର କଥା ଜଗନ୍ନାଥଙ୍କୁ ଜଣାଇବାକୁ ହିଁ ପଡ଼ିବ । ତାଙ୍କ ଦରଖାସ୍ତ ପୋଡ଼ିଯାଉ କି ଉଡ଼ିଯାଉ । ଏଣିକି ତାଙ୍କୁ ବିଶ୍ୱ ପାଇଁ ଦରଖାସ୍ତଟିଏ ଲେଖିବାକୁ ପଡ଼ିବ ।

ଦାସଙ୍କ ମନ ଜାଣି ଅନ୍ତର୍ଯ୍ୟାମୀ ପୁରୁଷ, ସେଇମିତି ସେ ବଡ଼ଦାଣ୍ଡଟାରେ ଲାଠିଭାଙ୍ଗି ଠିଆ ହୋଇଥାନ୍ତି । ଟିକିଏ ବି ଟସ୍କୁନଥାନ୍ତି । ଦାସେ ଆଉ କାଳ ବିଳମ୍ବ ନକରି, ମଣିମାଙ୍କ ପାଖକୁ ଯାଇ, ତୁନି ତୁନି କହିଲେ–"ଆପଣଙ୍କୁ ଆଉ କୋଉ କଥା ଅଜଣା ଅଛି ଯେ, ଶ୍ରୀଛାମୁରେ ଅବଗତ କରାଇବି । ତଥାପି ମଣିମା ମନେ ପକାଇ ଦଉଚି । ଏତେ ଶ୍ରମ କରି ଆପଣ ପରା ଏ ବିଶ୍ୱବ୍ରହ୍ମାଣ୍ଡକୁ ଆପଣାର ହାତରେ ଗଢ଼ିତୋଳିଚନ୍ତି ? ଏ ସୃଷ୍ଟିକି ଆପଣ କ'ଣ ଆଉ ଛୁଇଁନାହାନ୍ତି ଗୋସେଇଁ ? ଏ ସୁନ୍ଦର ସୃଷ୍ଟି କ'ଣ ଅଚିରେ ବିଳୟ ଘଟିବ ? ପୃଥିବୀ ପୃଷ୍ଠରୁ ବୃକ୍ଷ ଲତା କ୍ରମଶଃ ଲୋପ ପାଇବାକୁ ବସିଲାଣି ! ଅରଣ୍ୟ ସମ୍ପଦ କ୍ରମେ କ୍ରମେ ଧ୍ୱଂସ ପାଇ ଆସିଲାଣି ! ଆଉ ମାତ୍ର କେଇଟା ବର୍ଷପରେ, ମଣିମାଙ୍କ ପାଇଁ ରଥ କାଠ ମଧ୍ୟ ମିଳି ନପାରେ ! ଆକାଶ ମାର୍ଗରେ ଓଜୋନ୍ ଗ୍ୟାସ୍ ଆସ୍ତରଣରେ ଯେଉଁ ଫାଟ ସୃଷ୍ଟି ହୋଇଚି, ତା'ର ଭୟାବହ ପରିଣତ କ'ଣ ହୋଇପାରେ ଠାକୁରେ–ଥରେ ମାତ୍ର ଚିନ୍ତାକରିଛନ୍ତିତ ? ପୃଥିବୀରେ ଯେପରି ଜନ–ବିସ୍ଫୋରଣ ଦେଖା ଦେଇଚି, ଆଉ ମାତ୍ର କେତୋଟି ବର୍ଷ ପରେ, ଏ ବସୁଧା ସେ ଭାର ସମ୍ଭାଳି ପାରିବତ ? ଅପମିଶ୍ରଣର ସ୍ରୋତ କେବେ ଆଉ ବନ୍ଦ୍‌ହେବ ମଣିମା ? ପୃଥିବୀରେ କ'ଣ ଯୁଦ୍ଧ ବିଭୀଷିକା ଏଇମିତି ଲାଗି ରହିଥିବ ? ଜନତାଙ୍କ·ହୃଦୟରେ କେବେ ପ୍ରସ୍ଫୁଟିତ ହେବ ଶାନ୍ତି, କ୍ଷମା, ଭ୍ରାତୃ, ସହନଶୀଳତା, ଦାନଶୀଳତା, ଉଦାରତା, ସାଧୁତା ତଥା ସତ୍ୟତାର ଶତଦଳ ? ପରିବେଶ ପ୍ରଦୂଷଣରୁ କେବେ ରକ୍ଷା ମିଳିବ ଠାକୁରେ ?? ଉତ୍ପୀଡ଼ନ ବ୍ୟତିକ୍ରମରୁ କ'ଣ ତାହି ମିଳିବ ନାହିଁ ? ଏ ସବୁ ପ୍ରଶ୍ନର ଉତ୍ତର ଦିଅନ୍ତୁ ମଣିମା । ଆଜିର ଏହି ପବିତ୍ର ପତିତପାବନ ଯାତ୍ରା ଅବସରରେ, ଆପଣ ଏ ସୃଷ୍ଟି ପ୍ରତି କୃପା ପରବଶ ହୋଇ, ପ୍ରତ୍ୟେକଙ୍କ ହୃଦୟରେ ଜାଳି ଦିଅନ୍ତୁ ସଚେତନତାର ଶତଦୀପାବଳୀ । ସାର୍ଥକହେବ ଆପଣଙ୍କ ଜଗନ୍ନାଥ ନାମ ଏବଂ ଆଜିର ଶ୍ରୀଗୁଣ୍ଡିଚା ବିଜୟର ମହନୀୟତା ।

---

*ପଣ୍ଡୁସାହି,*
*ଆଠଗଡ଼ ପାଟଣା, କଟକ–୭୫୩୦୨୯ ।*



*"ମନ୍ଦ ଅଧର ନୀଳଗିରି ବାସୀ" ପ୍ରଭୁ ଜଗନ୍ନାଥଙ୍କର ନନ୍ଦିଘୋଷ ରଥ ବଡ଼ ଦାଣ୍ଡରେ ।*




ଡକ୍ଟର ଅମୂଲ୍ୟ ମହାପାତ୍ର

ସମଗ୍ର ଜୀବଜଗତ ସମ୍ପର୍କରେ ଯେଉଁ ସମ୍ୟକ ଜ୍ଞାନଲାଭର ତାତ୍ତ୍ୱିକଧାରା ମନୁଷ୍ୟ ମଧ୍ୟରେ ଅନୁସନ୍ଧିତ୍ସାର ମାର୍ଗରେ କାର୍ଯ୍ୟକରେ ତାହାକୁ ଦର୍ଶନ କୁହାଯାଏ । ଯେପରି ମନୁଷ୍ୟର ସ୍ୱରୂପ ଓ ତାହାର ଜୀବନର ଲକ୍ଷ୍ୟ ସମ୍ପର୍କରେ ଜାଣିବା ପ୍ରତ୍ୟେକ ଦର୍ଶନରେ ପ୍ରଥମ କର୍ତ୍ତବ୍ୟ, ସେହିପରି ଜୀବ ମଧ୍ୟରେ ରହିଥିବା ଆତ୍ମା, ପରମାତ୍ମା, ମନ, ଇନ୍ଦ୍ରିୟ ପ୍ରକୃତିର ଅବସ୍ଥାର ଅନୁଧ୍ୟାନ କରି ଏକ ପରମତତ୍ତ୍ୱ ଓ ସିଦ୍ଧାନ୍ତରେ ଉପନୀତ ହେବା ଦର୍ଶନର ଅଭିପ୍ରାୟ । ଭାରତୀୟ ଦାର୍ଶନିକମାନେ ଅତି ଉଦାର ଭାବର ସହିତ, ବିଭିନ୍ନ ମତବାଦ ଯଥା– ଦ୍ୱୈତ, ଅଦ୍ୱୈତ, ବିଶିଷ୍ଟାଦ୍ୱୈତ, ଶାକ୍ତ, ଶୈବ, ବୈଷ୍ଣବ, ବୌଦ୍ଧ ଓ ଜୈନ ପ୍ରଭୃତିରୁ ସତ୍ୟାନୁସନ୍ଧିତ୍ସାର ଲକ୍ଷ୍ୟ ଗ୍ରହଣ କରିଛନ୍ତି । ଏହି ପରିପ୍ରେକ୍ଷୀରେ ଶ୍ରୀଜଗନ୍ନାଥ ମଧ୍ୟ ଭାରତୀୟ ଦର୍ଶନର ଭାବଧାରା ମଧ୍ୟରେ ଏକ ପ୍ରମୁଖ ଆଲୋଚନାର ବିଷୟ ବସ୍ତୁ ହୋଇଛନ୍ତି । ଦାର୍ଶନିକ ମତବାଦ ମଧ୍ୟରେ ପାର୍ଥକ୍ୟ ରହିଥିବାରୁ ଶ୍ରୀଜଗନ୍ନାଥଙ୍କ ବିଶ୍ୱରଧାରାରେ ମଧ୍ୟ ଭିନ୍ନତା ଦୃଷ୍ଟିଗୋଚର ହୋଇଥାଏ ।

ବୈଦିକମାନଙ୍କ ମତରେ ଶ୍ରୀଜଗନ୍ନାଥ ହେଉଛନ୍ତି–"ଭୂଃ, ଭୁବଃ, ସ୍ୱଃ । ଅର୍ଥାତ୍ ସେ ହେଉଛନ୍ତି ଏହି ଅନନ୍ତ ପୃଥିବୀ ଓ ସ୍ୱର୍ଗ ଏବଂ ସର୍ବଚରାଚରର ସତ୍–ଚିତ–ଆନନ୍ଦର ଅନୁଭୂତି ଓ ସତ୍ୟଂ ଶିବଂ ସୁନ୍ଦରମ୍‌ର ରୂପ ଓ ସୃଷ୍ଟି ସ୍ଥିତି ଲୟର ସମନ୍ୱୟ । ଏତଦ୍‌ବ୍ୟତୀତ ତାହାଙ୍କ ଠାରେ ସମସ୍ତ ଭୂତ ବା ପ୍ରାଣୀ ଆଶ୍ରିତ ହୋଇଥିବାରୁ ତାହାଙ୍କୁ 'ଭୂଃ' କୁହାଯାଇଥାଏ ।

ଜଗତର ସ୍ୱାମୀ ଜଗନ୍ନାଥଙ୍କୁ ଜଗତର ସୃଷ୍ଟିକର୍ତ୍ତା ବୋଲି ସମ୍ବୋଧନ କରି ଋକ୍‌ବେଦରେ କୁହାଯାଇଛି,

"ହିରଣ୍ୟଗର୍ଭଃ ସମବର୍ତ୍ତତାଗ୍ରେ ଭୂତସ୍ୟଜାତଃ –
ପତିରେକ ଆସୀତ
ସଦାଧାର ପୃଥିବୀ ଦ୍ୟାମୁତେମାଂ–
କସ୍ମୈଦେବାୟ ହବିଷା ବିଧେମଃ ।।"
ଋ ୧୦ । ସୂ ୧୨୧ ।

ଅର୍ଥାତ୍ ଯାହାଙ୍କଠାରୁ ଏହି ବିବିଧ ସୃଷ୍ଟି ପ୍ରକାଶିତ ହୋଇଛି ଯେ ଧାରଣ ଓ ପ୍ରଳୟ କର୍ତ୍ତା, ଯେ ହେଉଛନ୍ତି– ଏହି ଜଗତର ସ୍ୱାମୀ, ଯାହାଙ୍କର ବ୍ୟାପକତା ମଧ୍ୟରେ ଏହି ସମଗ୍ର ଜଗତ ଉତ୍ପତ୍ତି, ସ୍ଥିତି ଓ ପ୍ରଳୟ ଅବସ୍ଥାରୁ ପ୍ରାପ୍ତ ହୁଏ ସେ ହେଉଛନ୍ତି ପରମାତ୍ମା । ତାହାଙ୍କୁ ତୁମେ ଜାଣ । ଅନ୍ୟ କାହାକୁ ସୃଷ୍ଟିକର୍ତ୍ତା ରୂପେ ଗ୍ରହଣ କର ନାହିଁ ।

ଶ୍ରୀଜଗନ୍ନାଥଙ୍କୁ ଅପୌରୁଷେୟ ପରଂବ୍ରହ୍ମ ବୋଲି ଉଲ୍ଲେଖ କରି ଋକ୍‌ବେଦରେ କୁହାଯାଇଛି–

"ଅଦୋ ଯଦ୍ଦାରୁ ପ୍ଲବତେ ସନ୍ଧୋପାରେ ଅପୌରୁଷମ୍
ତଦାରଭସ୍ୱ ଦୁହଣୋ ତେନ ଗଚ୍ଛ ପରସ୍ତରମ୍ ।
ଯୁଦ୍ଧଃ ପ୍ରାଚୀର ଜଗନ୍ତ ଭରୋମଣ୍ଟର ଆଣିକୀଃ
ହତା ଇନ୍ଦ୍ରସ୍ୟ ଶତ୍ରବଃ ସର୍ବେ ବୁଦ୍‌ବୁଦ୍ୟାଶବଃ "।
(ଋକ୍‌ବେଦ ୧୦/୧୫୫/୩–୪)

ଅର୍ଥାତ୍ ସମୁଦ୍ରର ପରପାରିରେ ଯେଉଁ ଦାରୁ ଭାସୁଅଛି– ତାହା ଅପୌରୁଷେୟ ପରଂବ୍ରହ୍ମ । ଋଗ୍‌ବେଦର ଋଷି ଭରଦ୍ୱାଜ ତାଙ୍କର ବ୍ୟାଖ୍ୟାରେ କହିଛନ୍ତି – ପୂର୍ବଦିଗର ସମୁଦ୍ର ଉପକୂଳରେ ଲାଗିରହିଥିବା ସେହି ଅପୌରୁଷେୟ – ଦାରୁ ବ୍ରହ୍ମ ହେଉଛନ୍ତି ସ୍ୱୟଂ ଶ୍ରୀଜଗନ୍ନାଥ ।

ଏହି ସମୁଦ୍ର କୂଳରୁ ରାଜା ଇନ୍ଦ୍ରଦ୍ୟୁମ୍ନ ବ୍ରହ୍ମଦାରୁଙ୍କୁ ଦେଉଳରେ ବସାଇ ଯଜ୍ଞ ବେଦୀକୁ ନେଇ ଆସିଥିଲେ । ବେଦମନ୍ତ୍ରର 'ଅଜମନ୍ତ' ଶବ୍ଦ (ଅ) ଜଗନ୍ତରୁ ଜଗନ୍ ଓ ପରେ ଜଗନ୍ନାଥ ଶବ୍ଦ ସୃଷ୍ଟି ବୋଲି ମନେହୁଏ । ସେହିପରି ଋଗ୍‌ବେଦର 'ଉରଣ' ଶବ୍ଦରୁ ଉତ୍ର ବା ଓଡ଼ିଶା ଶବ୍ଦର ଉତ୍ପତ୍ତି ହୋଇଛି ।

ଶ୍ରୀଜଗନ୍ନାଥଙ୍କୁ କେତେକ ଉପନିଷଦରେ ତାହାଙ୍କର ସ୍ୱରୂପ ସମ୍ବନ୍ଧରେ ବର୍ଣ୍ଣନା କରିଥିବାର ଦୃଷ୍ଟାନ୍ତ ମିଳେ । "ଶ୍ୱେତାଶ୍ୱତର ଉପନିଷଦ"ରେ ଉଲ୍ଲେଖ ଅଛି :

ଅପାଣିପାଦୋ ଜବନୋ ଗ୍ରହୀତା
ପଶ୍ୟତ୍ୟଚକ୍ଷୁଃ ସ ଶୃଣୋତ୍ୟକର୍ଣ୍ଣଃ ।

ସ ବେତ୍ତି ବେଦ୍ୟଂ ନଚ ତସ୍ୟାସ୍ତି ବେତ୍ତା
ତମାହୁ ରଗ୍ର୍ୟଂ ପୁରୁଷଂ ପୁରାଣମ୍ ॥
(ଶ୍ୱେତାଶ୍ୱତର ଉପନିଷଦ ୩/୧୯)

ଯାହାଙ୍କର ହାତନାହିଁ, ଅଥଚ ସେ ସକଳବସ୍ତୁ ଗ୍ରହଣ କରିଥାଆନ୍ତି । ତାଙ୍କର ପାଦ ନାହିଁ ତଥାପି ସେ ଦ୍ରୁତ ଭାବରେ ଗମନ କରିଥାଆନ୍ତି । ତାଙ୍କର ଚକ୍ଷୁ ନାହିଁ ଅଥଚ ସେ ସବୁକିଛି ଦେଖି ପାରନ୍ତି । ତାଙ୍କର କର୍ଣ୍ଣ ନାହିଁ, ଅଥଚ ସେ ଶ୍ରବଣ କରି ପାରନ୍ତି । ସେ ସମସ୍ତ ଜଗତକୁ ଜାଣି ପାରନ୍ତି, ମାତ୍ର ତାଙ୍କୁ କେହି ଜାଣି ପାରନ୍ତି ନାହିଁ । ସେ ସନାତନ, ସର୍ବଶ୍ରେଷ୍ଠ ମହାନ୍ ପୁରୁଷ ସମସ୍ତ କର୍ମ ନିଜର ସାମର୍ଥ୍ୟ ଦ୍ୱାରା ସମ୍ପାଦନ କରିଥାଆନ୍ତି ।

ବେଦରେ ଓଁକାର ପ୍ରଣବକୁ ବ୍ରହ୍ମ ଆଖ୍ୟା ଦିଆଯାଇଅଛି । ଯଜୁର୍ବେଦରେ ଉଲ୍ଲେଖ ଅଛି–"ଓଁ ଖଂ ବ୍ରହ୍ମ" । ମାଣ୍ଡୁକ୍ୟ ଉପନିଷଦ ଅନୁସାରେ "ଓମିତ୍ୟେତଦକ୍ଷର ମିଦଂ ସର୍ବଂ ତସ୍ୟୋପବ୍ୟାଖ୍ୟାନମ୍" ଓ ଛାନ୍ଦୋଗ୍ୟ ଉପନିଷଦରେ ବର୍ଣ୍ଣନା ଅଛି, "ଓମିତ୍ୟେତଦକ୍ଷରମୁଦ୍‌ଗୀଥମୁପାସୀତ (୧/୧୧) ।" ଏହି ଓଁ ମନ୍ତ୍ର ଅ–ଉ–ମ ଶବ୍ଦର ସୃଷ୍ଟି ଏବଂ ତାହା ସହିତ ଅର୍ଦ୍ଧମାତ୍ରା ଓ ବିନ୍ଦୁ ରହିଛି । ଏହି ପ୍ରଣବାକ୍ଷର ଓଁକୁ ଶିଶୁବେଦ ବୋଲି ଗ୍ରହଣ କରାଯାଏ । ଏହି ଭାବରେ ସମଗ୍ର ସୃଷ୍ଟି ହେଉଛି ବେଦର ତତ୍ତ୍ୱ ଓ ତାହା ମଧ୍ୟରେ ପଞ୍ଚଭୂତ ସ୍ଥାନ ପାଇଛି । ଏହାକୁ ନିମ୍ନରେ ବର୍ଣ୍ଣନା କରାଯାଉଛି–

ଅ–ବଳଭଦ୍ର–ସାମବେଦ–ତେଜ
ଉ–ସୁଭଦ୍ରା–ଶିଶୁବେଦ–ମେଦିନୀ
ମ–ଜଗନ୍ନାଥ–ଅଥର୍ବ–ଜଳ–ଅର୍ଦ୍ଧମାତ୍ରା–ସୁଦର୍ଶନ–
ଯଜୁର୍ବେଦ–ପବନ–ବିନ୍ଦୁ–ଶୂନ୍ୟ–ଋଗ୍‌ବେଦ–ଆକାଶ

ତେଣୁ ଓଁକାର ଯାହାଙ୍କର ନାମ ସେ ସେ କଦାପି ନଷ୍ଟ ହୁଅନ୍ତି ନାହିଁ, ତାଙ୍କର ବିନାଶ ନାହିଁ, କେବଳ ସେ ଉପାସ୍ୟ ହୋଇ ରହିଛନ୍ତି । ସେହି ଜଗନ୍ନାଥ ସମସ୍ତଙ୍କଠାରୁ ବଡ ହୋଇଥିବାରୁ ପରବ୍ରହ୍ମ ରୂପରେ ଶ୍ରୀକ୍ଷେତ୍ରରେ ରହି ବଡ଼ଦିଅଁ ଭାବରେ ପୂଜା ପାଉଛନ୍ତି । ଏହି ବ୍ରହ୍ମଙ୍କୁ ଉପନିଷଦରେ ଆତ୍ମା ଭାବରେ ଗ୍ରହଣ କରାଯାଇଛି । ବେଦାନ୍ତ ଦର୍ଶନରେ ଆତ୍ମା, ପରମାତ୍ମା ବା ବ୍ରହ୍ମ ଏକ ପଦାର୍ଥ ବୋଲି ବର୍ଣ୍ଣନା କରାଯାଇଛି ।

ବୃହଦାରଣ୍ୟକ ଉପନିଷଦ ଅନୁସାରେ'ଅୟମାତ୍ମା– ବ୍ରହ୍ମ'–ଏହି ଆତ୍ମା ହିଁ ବ୍ରହ୍ମ । ସେ ହେଉଛନ୍ତି "ବିଜ୍ଞାନମୟ, ମନୋମୟ ପ୍ରାଣମୟ, ଚକ୍ଷୁମୟ, ଶ୍ରୋତ୍ରମୟ, ପୃଥିବୀମୟ, ଜଳମୟ, ବାୟୁମୟ, ଆକାଶମୟ, ତେଜୋମୟ––– ।" ସେ ହେଉଛନ୍ତି "ତତ୍ତ୍ୱମସି", "ସର୍ବଂ ଖଳ୍ୱିଦଂ ବ୍ରହ୍ମ ।" ତେଣୁ ଶ୍ରୀଜଗନ୍ନାଥ ହେଉଛନ୍ତି ସର୍ବ ବ୍ୟାପକ ଅନନ୍ତଂ ବ୍ରହ୍ମ । ସେ ମଧ୍ୟ ହେଉଛନ୍ତି ଦାରୁବ୍ରହ୍ମ, ଶବ୍ଦବ୍ରହ୍ମ, ଓ ପ୍ରଜ୍ଞାନଂ ବ୍ରହ୍ମ ।

ଅଦ୍ୱୈତବେଦାନ୍ତ ଦର୍ଶନର ପ୍ରତିଷ୍ଠାତା ଶ୍ରୀ ଶଙ୍କରାଚାର୍ଯ୍ୟ ପୁରୀ କ୍ଷେତ୍ରକୁ ଆସି ଶ୍ରୀଜଗନ୍ନାଥଙ୍କୁ ଦର୍ଶନକରି ଚାରିଧାମ ମଧ୍ୟରେ ପୁରୀ ପୁରୁଷୋତ୍ତମ କ୍ଷେତ୍ର ବୋଲି ସ୍ଥିର କରିଥିଲେ । ତାହାଙ୍କର ଅଦ୍ୱୈତ ବେଦାନ୍ତରେ ଶ୍ରୀଜଗନ୍ନାଥ ହେଉଛନ୍ତି ସାକାର ପରଂବ୍ରହ୍ମ । ସେ ଏହି ସାକାର ଓ ସଗୁଣ ବ୍ରହ୍ମ ଜଗନ୍ନାଥଙ୍କୁ ଶ୍ରୀକୃଷ୍ଣ ଭାବରେ ସ୍ତବ–ଆରାଧନା କରିଛନ୍ତି । ସେ କହିଛନ୍ତି–

"କଦାଚିତ୍ କାଳିନ୍ଦିତଟ–ବିପିନ–ସଙ୍ଗୀତ କରବୋ,
ମୁଦାଭୀରୀନାରୀ ବଦନକମଳା ସ୍ୱାଦ–ମଧୁପଃ ।
ରମାଶମ୍ଭୁ ବ୍ରହ୍ମାସୁରପତି ଗଣେଶାର୍ଚ୍ଚିତ ପଦୋ,
ଜଗନ୍ନାଥ ସ୍ୱାମୀ ନୟନ ପଥ ଗାମୀ ଭବତୁ ମେ ॥"

ଏଠାରେ ଶ୍ରୀଶଙ୍କରାଚାର୍ଯ୍ୟ ଶ୍ରୀଜଗନ୍ନାଥଙ୍କୁ ସ୍ୱାମୀ ବୋଲି ସମ୍ବୋଧନ କରି ନୟନ ପଥଗାମୀ ହେବାକୁ ପ୍ରାର୍ଥନା କରୁଛନ୍ତି । ଜଗତର ଅଧିନାୟକ ହେଉଛନ୍ତି ସ୍ୱାମୀ । ତାହାଙ୍କର ପଦ ସେବାରେ ସ୍ୱର୍ଗର ଦେବତାମାନେ ରତ ଅଛନ୍ତି । ସେହି ଜଗନ୍ନାଥଙ୍କୁ ଶ୍ରୀ ଶଙ୍କରାଚାର୍ଯ୍ୟ ସାକାର ଓ ନିରାକାର ଭାବରେ ଗ୍ରହଣ କରିଛନ୍ତି । ବ୍ୟବହାରିକ ଦୃଷ୍ଟିରେ ଶ୍ରୀଜଗନ୍ନାଥ ସଗୁଣ ଓ ସାକାର ବ୍ରହ୍ମ ଓ ପରମାର୍ଥିକ ଦୃଷ୍ଟିରେ ସେ ନିର୍ଗୁଣ ନିରାକାର ବ୍ରହ୍ମ ଭାବରେ ସୁବିଦିତ । ଅଦ୍ୱୈତ ବାଦୀ ଶ୍ରୀ ରାମକୃଷ୍ଣ ପରମହଂସ ବ୍ରହ୍ମଙ୍କର ସାକାର ଓ ନିରାକାର ଅବସ୍ଥା ମଧ୍ୟରେ କୌଣସି ବିରୋଧ ଲକ୍ଷ୍ୟ କରି ନାହାନ୍ତି । ତାଙ୍କ ମତରେ ପାଣିର ନିରାକାର ଅବସ୍ଥା ଥଣ୍ଡା ହେଲାପରେ ବରଫରେ ପରିଣତ ହୋଇଯାଏ, ଯାହା ହେଉଛି ପାଣିର ସାକାର ଅବସ୍ଥା । ଏହା ମଧ୍ୟରେ କୌଣସି ବିରୋଧ ଭାବ ନଥାଏ ।

ବିଶିଷ୍ଟ ଦ୍ୱୈତବାଦୀ ଶ୍ରୀରାମାନୁଜ ତାଙ୍କର ଦର୍ଶନରେ ଶ୍ରୀଜଗନ୍ନାଥଙ୍କୁ ଶେଷଶାୟୀ ନାରାୟଣ ଭାବରେ ବର୍ଣ୍ଣନା କରିଛନ୍ତି । ସେ ହେଉଛନ୍ତି ଭଗବାନ୍ ନାରାୟଣ ପୁରୁଷୋତ୍ତମ (ଶ୍ରୀଭାଷ୍ୟ ୧/୧/୧୬) ଯାହାଙ୍କୁ ମଧ୍ୟ ଶ୍ରୀଲକ୍ଷ୍ମୀ ନାରାୟଣ ବୋଲି ଆଖ୍ୟା ଦିଆଯାଇଛି । ଏହି ସଗୁଣ ବ୍ରହ୍ମ ଶ୍ରୀଜଗନ୍ନାଥ ହେଉଛନ୍ତି ଜଗତର ନିମିତ୍ତକାରଣ ଓ ଉପାଦାନ କାରଣ ।

ଏହି ପୁରୁଷୋତ୍ତମ ଶ୍ରୀଜଗନ୍ନାଥ ବେଦାନ୍ତମାର୍ଗ ଅନୁସାରେ ହେଉଛନ୍ତି ସାଧ୍ୟ, ସାଧନା ଓ ସାଧକ ଅର୍ଥାତ୍ ତତ୍ତ୍ୱମସି । ଭଗବଦ୍‌ଗୀତା ଅନୁସାରେ ଜଗନ୍ନାଥ ହେଉଛନ୍ତି କ୍ଷର ଓ ଅକ୍ଷର ବ୍ରହ୍ମ । ସେ ଭକ୍ତି, ଜ୍ଞାନ ଓ କର୍ମର ମୂଳାଧାର । ପ୍ରଣବରହସ୍ୟ ଅନୁସାରେ ସେ ହେଉଛନ୍ତି ଉକାର ଓ ମକାରର ସମନ୍ୱୟ । ଯୋଗ ରହସ୍ୟ ମତରେ ସେ ହେଉଛନ୍ତି ସର୍ବାଙ୍ଗ ସୁନ୍ଦର ଯୋଗମୟ ପୁରୁଷ । ବିଷ୍ଣୁ ଚତୁର୍ବ୍ୟୂହ ମତରେ ଶ୍ରୀଜଗନ୍ନାଥ ହେଉଛନ୍ତି–ଅନିରୁଦ୍ଧ, ବାସୁଦେବ, ପ୍ରଦ୍ୟୁମ୍ନ ଓ ନାରାୟଣ । ସେ ମଧ୍ୟ ବିଷ୍ଣୁ, କୃଷ୍ଣ, ବଳରାମ, ଶ୍ରୀରାମ, ଯୋଗମାୟା ଭାବରେ ପରିଚିତ । ଅବଧୂତ ମତ ଅନୁସାରେ ଜଗନ୍ନାଥ ହେଉଛନ୍ତି ଶୂନ୍ୟ, ନିରଞ୍ଜନ ଓ ଜ୍ୟୋତି । ତନ୍ତ୍ରରେ ଜଗନ୍ନାଥଙ୍କୁ–କ୍ଲୀଂ, ବଳଭଦ୍ରଙ୍କୁ ହ୍ଲୀଂ ଓ ସୁଭଦ୍ରାଙ୍କୁ 'ଶ୍ରୀଂ' ଭାବରେ ଉପାସନା କରାଯାଇଥାଏ । ଆଉ କେତେକ ସ୍ଥଳରେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କୁ ଯଥାକ୍ରମେ ବିଷ୍ଣୁ, ମହେଶ୍ୱର ଓ ବ୍ରହ୍ମାଭାବରେ ଗ୍ରହଣ କରିଥାଆନ୍ତି । ମହାକବି ଶାରଳାଦାସ ତାଙ୍କର ମହାଭାରତରେ ବଳରାମ, ସୁଭଦ୍ରା ଓ ଜଗନ୍ନାଥଙ୍କୁ ଯଥାକ୍ରମେ ସ୍ଥିତି, ସୃଷ୍ଟି ଓ କାରଣ

(ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର) ବୋଲି କଳ୍ପନା କରି ଅଛନ୍ତି । ସେ କହିଛନ୍ତି–

"ପୀତ କୁଙ୍କୁମ ବରନ ସେହି ବ୍ରହ୍ମମୂର୍ତ୍ତି
ଡାହାଣେ ଶୁକ୍ଳ ବର୍ଣ୍ଣ ମହାଦେବଜ୍ୟୋତି
ରୂପରେ ତ ଜଗନ୍ନାଥ ବର୍ଣ୍ଣ ଅଟେ କଳା
ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ତିନି ଦେବମେଳା ।"

ଶ୍ରୀଜଗନ୍ନାଥଙ୍କ ଅଙ୍ଗରୁ ଅନ୍ୟ ଦେବତା ଓ ଅବତାର ଜାତ ହୋଇଥିବା ବିଷୟ ବଳରାମ ଦାସ, ଓ ଦୀନକୃଷ୍ଣ ଦାସ ତାଙ୍କର ଗ୍ରନ୍ଥ ଯଥା :–ବେଦାନ୍ତସାର ଗୁପ୍ତ ଗୀତା ଓ ରସକଲ୍ଲୋଳରେ ବର୍ଣ୍ଣନା କରିଅଛନ୍ତି ।

"ସ୍କନ୍ଦ ପୁରାଣ" ଓ "ବିଷ୍ଣୁପୁରାଣ" ପ୍ରଭୃତି ଗ୍ରନ୍ଥମାନଙ୍କରେ ଦାରୁବ୍ରହ୍ମ ଶ୍ରୀଜଗନ୍ନାଥଙ୍କୁ ରାଜା 'ଇନ୍ଦ୍ରଦ୍ୟୁମ୍ନ' ବିଷ୍ଣୁରୂପରେ ଶ୍ରୀକ୍ଷେତ୍ରରେ ପୂଜା ଉପାସନା କରୁଥିବାର ଉଲ୍ଲେଖ ରହିଛି । "ସ୍କନ୍ଦ ପୁରାଣ" ଅନୁସାରେ–

"ନମସ୍ତେ ଭଗବନ୍ ବିଷ୍ଣୁ ଜଗଦ୍‌ବ୍ୟାପୀଂ ଚରାଚର
ନିର୍ବିଘ୍ନଂ ସିଦ୍ଧିମାପ୍ନୋତୁ ସିଦ୍ଧସ୍ଥାନଂ ମାୟାବିଭୋ ॥"
(ସ୍କନ୍ଦପୁରାଣ ୩/୭୪ ବିଷ୍ଣୁଖଣ୍ଡ)

ବିଶ୍ୱାବସୁ ଶବର ଦ୍ୱାରା ପୂଜିତ ନୀଳମାଧବ ଅନ୍ତର୍ଦ୍ଧାନ ହୋଇ ପରିଶେଷରେ ଦାରୁ ବ୍ରହ୍ମ ଭାବରେ ଆସି ଚତୁର୍ଦ୍ଧାମୂର୍ତ୍ତି ଯଥା :–ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଓ ସୁଦର୍ଶନ ରୂପରେ ପ୍ରତିଷ୍ଠିତ ହୋଇ ରାଜା ଇନ୍ଦ୍ରଦ୍ୟୁମ୍ନଙ୍କ ଦ୍ୱାରା ଶ୍ରୀକ୍ଷେତ୍ରରେ ବିରାଜମାନ କଲେ । ତେଣୁ ଶ୍ରୀଜଗନ୍ନାଥ ବୌଦ୍ଧ କିମ୍ବା ଜୈନ ସମ୍ପ୍ରଦାୟର ଦେବତା ବୋଲି ଗ୍ରହଣ କରାଯାଇ ପାରେନା । ସେ ହେଉଚନ୍ତି ସର୍ବଧର୍ମର ସ୍ୱାମୀ । ତାଙ୍କ ପାଖରେ ସମସ୍ତେ ସମାନ । ସେ ଏକାଧାରରେ ବୈଷ୍ଣବମାନଙ୍କର ବିଷ୍ଣୁ, ବୌଦ୍ଧମାନଙ୍କର ବୁଦ୍ଧ, ଜୈନମାନଙ୍କର ଜିନେଶ୍ୱର, ଶବରମାନଙ୍କର ପତିତପାବନ । ତାହାଙ୍କୁ ସର୍ବଧର୍ମର ଭକ୍ତମାନେ ଆସି ଉପାସନା କରିଥାଆନ୍ତି । ତେଣୁ ଶ୍ରୀଜଗନ୍ନାଥ ଚେତନା ଅତି ବ୍ୟାପକ ଓ ଉଦାର । କୌଣସି ଏକ ଜାତି କିମ୍ବା ସମ୍ପ୍ରଦାୟ ମଧ୍ୟରେ ସେ ଆବଦ୍ଧ ନୁହନ୍ତି । ଜଗତର ନାଥ ହୋଇଥିବାରୁ ସେ ମାନବ ଜାତିକୁ ଏକ ସାମ୍ୟ ଦୃଷ୍ଟିରେ ଦେଖିଥାଅନ୍ତି । ତାହାଙ୍କୁ ଯିଏ ଯେପରି ଭାବରେ ଦେଖେ, ସେ ତାହାଙ୍କୁ ସେପରି ଭାବରେ ଦେଖାଦେଇ ଥାଆନ୍ତି ।

ଏହି ପରମବ୍ରହ୍ମ ଜଗନ୍ନାଥଙ୍କୁ ସ୍କନ୍ଦ ପୁରାଣରେ ବର୍ଣ୍ଣନା କରାଯାଇଛି – "ଅହଂ ତ୍ୱଂ ତ୍ୱମହଂ ସର୍ବଂ ଜଗଦେତ ଚରାଚରମ"–ଅର୍ଥାତ୍ ମୁଁ ଯିଏ ଆପଣ ସିଏ ଏବଂ ଆପଣ ଯିଏ ମୁଁ ମଧ୍ୟ ସେହି । ଏହାକୁ ଭୃଗୁ ଗୀତାରେ କୁହା ଯାଇଛି - "ସମୋହଂ ସର୍ବ ଭୂତେଷୁ" ତେଣୁ ତାହାଙ୍କୁ ଜାଣିବା କିମ୍ବା ବର୍ଣ୍ଣନା କରିବା ସମ୍ଭବ ନୁହେଁ । ତେଣୁ ବେଦାନ୍ତ ଶାସ୍ତ୍ରରେ "ନେତି ନେତି" ଅଥବା ଅବାଙ୍ଗ୍ ମାନସ ଗୋଚର ବୋଲି ତାଙ୍କୁ କୁହାଯାଇଛି ।

---

*ପ୍ରାଧ୍ୟାପକ, ଦର୍ଶନ ଶାସ୍ତ୍ର,*
*ବି: ଓ: ଭି କଲେଜ,*
*କୋରାପୁଟ–୭୬୪୦୨୦ ।*



*ବଡ଼ ଠାକୁରଙ୍କ ସୁନା ବେଶ ।*




## ସବୁଜ ସାକ୍ଷର ଆମ କେନ୍ଦୁଝର

ରାଜ୍ୟର ଏକ ଉପାନ୍ତର ଜିଲ୍ଲା—ଯେଉଁଠାରୁ ପୁଣ୍ୟତୋୟା ଚିରସ୍ରୋତା ରୂପଗଙ୍ଗା ନଦୀ "ବୈତରଣୀ"ର ଉତ୍ପତି । ଯାହା ମହାନ ବିପ୍ଳବୀ ଧରଣୀଧର ଏବଂ ସନ୍ଥଭଞ୍ଜଙ୍କ ମାଟି, ଚିର ସବୁଜ ଘଞ୍ଚ ବନାନୀରେ ପରିପୂର୍ଣ୍ଣ ଓ ପ୍ରାକୃତିକ ସମ୍ପଦରେ ଭରପୁର ତାହା କେନ୍ଦୁଝର ଜିଲ୍ଲା । ବୈତରଣୀ ନଦୀର କୁଳୁକୁଳୁ ନାଦ ଓ ପକ୍ଷୀମାନଙ୍କର ସୁମଧୁର କୋଳାହଳ ସାଙ୍ଗକୁ ବର୍ତ୍ତମାନ ଜିଲ୍ଲାର ପ୍ରତ୍ୟେକ ପୁରପଲ୍ଲୀରେ ଆଉ ଏକ ନୂତନ ଶବ୍ଦର ଗୁଞ୍ଜରଣ "ସବୁଜ ସାକ୍ଷର ଆମ କେନ୍ଦୁଝର" ।

ବର୍ତ୍ତମାନ କେନ୍ଦୁଝର ଜିଲ୍ଲାରେ ସମ୍ପୂର୍ଣ୍ଣ ସାକ୍ଷରତା ଅଭିଯାନ ଆଗେଇ ଚାଲିଛି । ରାଜ୍ୟରେ ପ୍ରଥମେ ସୁନ୍ଦରଗଡ଼ ଓ ପରେ କଳାହାଣ୍ଡି ପରକୁ କେନ୍ଦୁଝର ହେଉଛି ୩ୟ ଜିଲ୍ଲା, ଯେଉଁଠାରେ ଏହି କାର୍ଯ୍ୟକ୍ରମ ଆରମ୍ଭ ହୋଇଛି । ଗତ ବର୍ଷ ନଭେମ୍ବର ମାସ ୧୪ ତାରିଖ ଦିନ ଉଦ୍‌ଘାଟିତ ହୋଇଥିବା ଏହି କାର୍ଯ୍ୟକ୍ରମ ଆସନ୍ତା ୧୯୯୩ ମସିହା ମେ–ଜୁନ୍ ମାସ ପର୍ଯ୍ୟନ୍ତ ଚାଲିବ । କେନ୍ଦୁଝର ଜିଲ୍ଲାକୁ ସମ୍ପୂର୍ଣ୍ଣ ସାକ୍ଷର ଜିଲ୍ଲାରେ ପରିଣତ କରିବା ପାଇଁ ଏକ ଦୃଢ଼ ପଦକ୍ଷେପ ଗ୍ରହଣ କରାଯାଇ ଏହି କାର୍ଯ୍ୟକ୍ରମକୁ ହାତକୁ ନିଆଯାଇ ଆଗେଇ ଚାଲିଛି । ଏହା ଏକ ଛୋଟିଆ କଥାନୁହେଁ — ହେଲେ ଅସମ୍ଭବ ନୁହେଁ, ଏଥିପାଇଁ ପ୍ରଗାଢ଼ ପରିଶ୍ରମ ଓ ସ୍ୱାର୍ଥ ବିହୀନ ନିଷ୍ଠା ଆବଶ୍ୟକ । ପ୍ରାୟ ୪୦ ହଜାର ଶିକ୍ଷା ସହାୟକ ବିନା ପାରିଶ୍ରମିକରେ ସ୍ୱେଚ୍ଛାସେବୀ ହିସାବରେ ପାଠ ପଢ଼ାଇବେ । ପାଠ ପଢ଼ିବାର ଅର୍ଥ ନୁହେଁ କେବଳ ନାମ ଲେଖିବା । ଲେଖିବା ସାଙ୍ଗକୁ ହିସାବ କରିବା ଏବଂ ଏହାକୁ ଦୈନନ୍ଦିନ ଜୀବନରେ ବ୍ୟବହାରରେ ଲଗାଇବା ହେଉଛି ପ୍ରକୃତ ସାକ୍ଷରତା ।

ନିଜ ପରିବେଶ, ଛୋଟ ପରିବାର, ନାରୀ ପୁରୁଷ ସମାନତା ଓ ଜାତୀୟ ସଂହତି ଆଦି ବିଭିନ୍ନ ବିଷୟରେ ସଚେତନ ହେବା ନିତ୍ୟାନ୍ତ ଜରୁରୀ । ଆମେ ଓ ଆମ ସରକାର, ଉନ୍ନୟନ ମୂଳକ ଯୋଜନା ଓ ଏହାର କାର୍ଯ୍ୟକାରିତା, ନିଶାନିବାରଣ, ସ୍ୱାସ୍ଥ୍ୟ ପ୍ରତି ସଚେତନ ହେବା ଏବଂ ଏଥିପାଇଁ ସମ୍ପୂର୍ଣ୍ଣ ସାକ୍ଷର ଅଭିଯାନରେ ବିଶ୍ୱାସ ରଖି ସହଯୋଗ କରିବା ଏବଂ ଆସ୍ଥ ବିଶ୍ୱାସ ଜନ୍ମାଇବା ନିତ୍ୟାନ୍ତ ଜରୁରୀ । ମଝିରେ ମଝିରେ ସେମାନଙ୍କୁ ଉତ୍ସାହ ଯୋଗାଇ ଦେବା ମଧ୍ୟ ଗୁରୁତ୍ୱପୂର୍ଣ୍ଣ । ଏହି ଜିଲ୍ଲାର ମୋଟ ୧୩ଟି ବ୍ଲକ୍ ଓ ୨ଟି ଏନ୍.ଏ.ସି. ଏବଂ ୨ଟି ମ୍ୟୁନିସପାଲିଟିକୁ ନେଇ ମୋଟ ୨୦ ଗୋଟି ପ୍ରକଳ୍ପ ଏବଂ ପ୍ରତି ପ୍ରକଳ୍ପ ଅଧୀନରେ ଅନ୍ୟୁନ ୫ଟି ଲେଖା ଉପ ପ୍ରକଳ୍ପ ଗଠିତ ହୋଇଛି । ୯ ବର୍ଷରୁ ୪୫ ବର୍ଷ ମଧ୍ୟରେ ଥିବା ପ୍ରାୟ ୩ ଲକ୍ଷ ୫୦ ହଜାର ନିରକ୍ଷରଙ୍କୁ ସାକ୍ଷର କରିବାର କାର୍ଯ୍ୟକ୍ରମ ହାତକୁ ନିଆଯାଇ ଜିଲ୍ଲା ସ୍ତରରେ ଏକ କମିଟି ବା ସମିତି "କେନ୍ଦୁଝର ସାକ୍ଷରତା ସମିତି" ଗଠନ କରାଯାଇଛି । ଜିଲ୍ଲାପାଳ ଶ୍ରୀ ଅରୁଣକୁମାର ପଣ୍ଡା ଏହାର ଅଧ୍ୟକ୍ଷ ଅଛନ୍ତି । ଯେଉଁମାନେ ଏହି ମହାନ ଯଜ୍ଞରେ ସାମିଲ ହେବା ପାଇଁ ଚାହାଁନ୍ତି, ସେମାନଙ୍କ ନିମନ୍ତେ ଦ୍ୱାର ସଦା ଉନ୍ମୁକ୍ତ । ପ୍ରାଥମିକ ପର୍ଯ୍ୟାୟରେ କଳାଯାତ୍ରା, ଜିଲ୍ଲାସ୍ତରୀୟ ସମାବେଶ, ଉପଖଣ୍ଡ ସ୍ତରୀୟ, ବ୍ଲକ୍ ସ୍ତରୀୟ ଏବଂ ଗ୍ରାମ ପଞ୍ଚାୟତ ସ୍ତରୀୟ ସମାବେଶମାନ ଆୟୋଜିତ ହୋଇ ଉପଯୁକ୍ତ ବାତାବରଣ ସୃଷ୍ଟି କରାଯାଇ ପାରିଛି । ତେବେ ଅନ୍ୟାନ୍ୟ ସ୍ୱେଚ୍ଛାସେବୀମାନଙ୍କୁ ତାଲିମ ଦେବାର ବ୍ୟବସ୍ଥା କରାଯାଉଛି । ସାର୍ବଜନୀନ ଶିକ୍ଷା ତଥା ନବ ସାକ୍ଷରଙ୍କ ପାଇଁ ପରବର୍ତ୍ତୀ ପର୍ଯ୍ୟାୟର କାର୍ଯ୍ୟକ୍ରମ ମଧ୍ୟ ଚିନ୍ତା କରାଯାଇଛି । ଜିଲ୍ଲାର ବହୁ ସ୍ୱେଚ୍ଛାସେବୀ ଅନୁଷ୍ଠାନ, ମହିଳା ସମିତି, ମହିଳା ମଣ୍ଡଳ, ଶିକ୍ଷାନୁଷ୍ଠାନ, ଗ୍ରାମ୍ୟ କର୍ମଚାରୀ ଓ ଶିକ୍ଷିତ ବେକାର ଯୁବତୀମାନେ ନିଜ ଗାଁ ଓ ସହରକୁ ସମ୍ପୂର୍ଣ୍ଣ ସାକ୍ଷର କରିବା ନିମନ୍ତେ ଅଣ୍ଟାଭିଡ଼ି ବାହାରି ଆସିଲେଣି । ଏହାଦ୍ୱାରା କେବଳ ସାକ୍ଷରତା ଅଭିଯାନ ନୁହେଁ, ପୂର୍ଣ୍ଣ ସାମାଜିକ ପରିବର୍ତ୍ତନ ନିମନ୍ତେ ଏହି ଯେଉଁ ଅଭିଯାନ, ଜିଲ୍ଲାର ପ୍ରତ୍ୟେକ ଭାଇ ଭଉଣୀ ଏହି ଅଭିଯାନରେ ସାମିଲ ହୋଇ ପୂର୍ଣ୍ଣ ସଫଳ କରିବା ପାଇଁ ଜିଲ୍ଲାପାଳ ଶ୍ରୀ ଅରୁଣକୁମାର ପଣ୍ଡା ଆଶା ଓ ଭରସା ରଖି ନିବେଦନ କରିଛନ୍ତି । ଶ୍ରୀ ପଣ୍ଡାଙ୍କର ଏହି ନିବେଦନ ଜିଲ୍ଲାବାସୀଙ୍କ ମନରେ ବିଶେଷ ଭାବେ ପ୍ରଭାବ ପକାଇ ଥିବା ପରିଲକ୍ଷିତ ହେଉଛି ।

ଜିଲ୍ଲାର ଚମ୍ପୁଆ ସବ୍‌ଡ଼ିଭିଜନରେ ଏହାର ପ୍ରଭାବ ବିଶେଷ ଭାବେ ପଡ଼ିଥିବାର ଦେଖାଯାଏ । ବିଶେଷକରି ଉପ ଜିଲ୍ଲାପାଳ ଶ୍ରୀ ଭବାନୀଶଙ୍କର ପଣ୍ଡାଙ୍କ ନେତୃତ୍ୱରେ ଚମ୍ପୁଆ ବି.ଡ଼ି.ଓ. ଶ୍ରୀ ହରିବଲ୍ଲଭ ମିଶ୍ର, ଝୁମ୍ପୁରା ବି.ଡ଼ି.ଓ. ଶ୍ରୀ ଚନ୍ଦ୍ରଶେଖର ମିଶ୍ର ଓ ଯୋଡ଼ା ବି.ଡ଼ି.ଓ. ଶ୍ରୀ ସାଧବ ମିଞ୍ଜ ତାଙ୍କର ନିଜ ନିଜ ଅଞ୍ଚଳରେ ପ୍ରଗାଢ଼ ନିଷ୍ଠା ଓ ଆନ୍ତରିକତାର ସହିତ ପୂର୍ଣ୍ଣପ୍ରାଣରେ ଏହି କାର୍ଯ୍ୟକ୍ରମର ସଫଳତା ପାଇଁ କାର୍ଯ୍ୟରତ ।

ଜିଲ୍ଲାର ମୋଟ ୨୦୬୭ଟି ଗ୍ରାମର ପ୍ରତ୍ୟେକ ପୁରପଲ୍ଲୀରେ ଆବାଳ ବୃଦ୍ଧ ବନୀତାଙ୍କ ମନରେ ବର୍ତ୍ତମାନ ଗୋଟିଏ କଥା, ଗୋଟିଏ ଲକ୍ଷ୍ୟ, ସବୁଆଡ଼େ ଗୋଟିଏ ଆବାଜ "ଆସ ଖୁଷୀମୁଲିଆ ଭଉଣୀ ଭାଇ, ଡାକରା ଦେଇଛନ୍ତି ଆମ ଅରୁଣ ଭାଇ – ସବୁଜ ସାକ୍ଷର ଆମ କେନ୍ଦୁଝର"କୁ କରିବା ପାଇଁ । ଜିଲ୍ଲାରେ ଜିଲ୍ଲାପାଳ ଶ୍ରୀ ଅରୁଣକୁମାର ପଣ୍ଡାଙ୍କ ନେତୃତ୍ୱରେ ଆରମ୍ଭ ହୋଇଥିବା ଜାତୀୟ ସାକ୍ଷରତା ଅଭିଯାନ କାର୍ଯ୍ୟକ୍ରମ ଏକ ବିରାଟ ଗଣଆନ୍ଦୋଳନରେ ପରିଣତ ହୋଇ, ବର୍ତ୍ତମାନ କେନ୍ଦୁଝର ଜିଲ୍ଲାର ସାମାଜିକ ବାତାବରଣକୁ ଆନ୍ଦୋଳିତ କରିବା ସଙ୍ଗେ ସଙ୍ଗେ ଅପୂର୍ବ ସଫଳତା ହାସଲ କରିବା ପାଇଁ ଯାଉଛି । ସମଗ୍ର ଜିଲ୍ଲାରେ ସାକ୍ଷରତା ମହାମନ୍ତ୍ର ଉଚ୍ଚାରଣ, ପଥପ୍ରାନ୍ତ ନାଟକ, ପାଲା, ଦାସକାଠିଆ ପ୍ରଭୃତିର ଆୟୋଜନ, ସାକ୍ଷରତା ଧ୍ୱନି ଓ ଶୋଭାଯାତ୍ରା ଏକ ଅଭିନବ ଓ ଭିନ୍ନ ଧରଣର ବାତାବରଣ ସୃଷ୍ଟି କରିଛି । କାନ୍ଥରେ ବାଡ଼ରେ, ରାସ୍ତା ଉପରେ ଓ ପୋଲରେ "ସବୁଜ ସାକ୍ଷର ଆମ କେନ୍ଦୁଝର" ଢଗ ଓ ପଦ ସମଗ୍ର ଜିଲ୍ଲାରେ ଏକ ନୂତନ ଉନ୍ମାଦନା ସୃଷ୍ଟି କରିଛି ।

---

*ପ୍ରଭାକର ରାଉ,*
*ଉପଖଣ୍ଡ ସୂଚନା ଓ ଲୋକ ସମ୍ପର୍କ*
*ଅଧିକାରୀ, ଚମ୍ପୁଆ ।*

## ଅହିରାବନ୍ଧରେ କାଳିଆ ହସୁଛି

ଆଦିବାସୀ ଅଧ୍ୟୁଷିତ, ଅହିରାବନ୍ଧ ଗ୍ରାମ । ସନ୍ଧ୍ୟାରେ ଭାଲୁମାନଙ୍କର ଉପଦ୍ରବ । ଯାତାୟତର ସୁବିଧା ନାହିଁ । ରାଉରକେଲା ଇସ୍ପାତ୍ କାରଖାନା ପ୍ରତିଷ୍ଠିତ ହେବାପରେ ଅହିରାବନ୍ଧ ଗ୍ରାମ ଏକ ପବିତ୍ର ଧର୍ମପୀଠରେ ପରିଣତ ହେବ, ଏହା କିଏ ଜାଣିଥିଲା । ତତ୍‌କାଳୀନ ଇସ୍ପାତ କାରଖାନାର ଜେନେରାଲ୍ ମ୍ୟାନେଜର ଶ୍ରୀଯୁକ୍ତ ଗଣପତି ଏବଂ ପଦସ୍ଥ ଅଫିସର ଶ୍ରୀ ନୃସିଂହ ରଥ ଓ କାଶୀନାଥ ମହାନ୍ତି ଏଗାର ଏକର ପରିମିତ ଅହିରାବନ୍ଧର ଜମିକୁ ଏକ ତୀର୍ଥ କ୍ଷେତ୍ରରେ ରୂପାୟନ ଦେବାକୁ ମନସ୍ଥ କଲେ । ସେମାନଙ୍କର ମନସ୍ଥକୁ ସାକାର କଲେ ଶ୍ରୀଯୁକ୍ତ ଦଶିଦର ପ୍ରଧାନ, ଠିକାଦାର । ତାଙ୍କର ପ୍ରଚେଷ୍ଟାରେ ଏବଂ ଶିଳ୍ପୀ ଶ୍ରୀ ଭାଗୀରଥି ମହାରଣାଙ୍କ ତତ୍ତ୍ୱାବଧାନରେ ୧୯୬୫ ମସିହାରେ ଏଠାରେ ଶ୍ରୀଜଗନ୍ନାଥ ମନ୍ଦିର ନିର୍ମାଣ କାର୍ଯ୍ୟ ଆରମ୍ଭ ହୋଇ ୧୯୬୭ ମସିହାରେ ୮୦ ଫୁଟ ଉଚ୍ଚତା ବିଶିଷ୍ଟ ଶ୍ରୀମନ୍ଦିର ନିର୍ମାଣ କାର୍ଯ୍ୟ ସମାପ୍ତି ହେଲା । ଶ୍ରୀ ଭାଗୀରଥି ମହାରଣାଙ୍କ ତତ୍ତ୍ୱାବଧାନରେ ନବ ନିଯୁକ୍ତି ସେବାୟତମାନେ ଖଡ଼େଇକଲାରୁ ଦାରୁ ସଂଗ୍ରହ କରି ମୂର୍ତ୍ତି ତିଆରି କଲେ । ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ନ ହେବାରୁ ମନ୍ଦିର ପ୍ରତିଷ୍ଠା ୧୯୭୬ ମସିହା ପର୍ଯ୍ୟନ୍ତ ହୋଇପାରିଲା ନାହିଁ । ବହୁଦାତାଙ୍କର ଅକୁଣ୍ଠ ସାହାଯ୍ୟରେ ୧୯୭୬ ମସିହାରେ ମନ୍ଦିର ପ୍ରତିଷ୍ଠା କରାଗଲା । ପ୍ରତିଷ୍ଠା ଉତ୍ସବରେ ସର୍ବଶ୍ରୀ ପୁରୀର ଗଜପତି ମହାରାଜା ସ୍ୱର୍ଗତ ସଦାଶିବ ରଥ ଶର୍ମା ପ୍ରଭୃତି ଉପସ୍ଥିତ ଥିଲେ । ଇସ୍ପାତ ସହରର ଉନ୍ନତି ସହିତ ଅହିରାବନ୍ଧସ୍ଥିତ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର କ୍ଷେତ୍ରର ପବିତ୍ର ଧର୍ମପୀଠ ରୂପେ ପରିଣତ ହେଲା । ପ୍ରାୟ ଷାଠିଏଲକ୍ଷ ଜନବସତି ସହର ରାଉରକେଲାର ପ୍ରଧାନ ଧର୍ମକେନ୍ଦ୍ର ଅହିରାବନ୍ଧ । ବର୍ତ୍ତମାନ ଏହା ସେକ୍ଟର–୩ରେ ଅନ୍ତର୍ଗତ । ୧୯୮୬ ମସିହା ପରେ ମନ୍ଦିର ପରିଷଦକୁ ଏକ ବିଶେଷ ଉନ୍ନତି କରିବାରେ ତତ୍‌କାଳୀନ ପରିଚାଳନା ଟ୍ରଷ୍ଟି ଶ୍ରୀଯୁକ୍ତ ନିତ୍ୟାନନ୍ଦ ପରିଡ଼ା, ଆଇ.ଏ.ଏସ.ଙ୍କର ଅକ୍ଳାନ୍ତ ପରିଶ୍ରମ । ତାଙ୍କରି ଚେଷ୍ଟାରୁ ସହରର ବଦାନ୍ୟ ବ୍ୟକ୍ତିଙ୍କ ସାହାଯ୍ୟରେ ମନ୍ଦିରର ଅସମ୍ପୂର୍ଣ୍ଣ ମୁଖଶାଳାକୁ ସମ୍ପୂର୍ଣ୍ଣ ଶ୍ରୀ ଲକ୍ଷ୍ମୀ ମନ୍ଦିର, ଶ୍ରୀଗଣେଶ ମନ୍ଦିର ଏବଂ ଦୀର୍ଘ ୨୫ ବର୍ଷ ଧରି ପରିତ୍ୟକ୍ତ ହୋଇପଡ଼ିଥିବା ମଣ୍ଡପ ନିର୍ମାଣ କାର୍ଯ୍ୟ ସମ୍ପାଦିତ ହେଲା । ସହରର ଅନ୍ୟ ବଦାନ୍ୟ ବ୍ୟକ୍ତିମାନଙ୍କ ସହାୟତରେ ଝୁଲଣ ମଣ୍ଡପ, ଶ୍ରୀ ବିମଳା ମନ୍ଦିର ମଧ୍ୟ ତିଆରି କରାଗଲା । ପ୍ରତ୍ୟହ ହଜାର ହଜାର ସଂଖ୍ୟାରେ ଆସୁଥିବା ଭକ୍ତମାନଙ୍କର ସୁବିଧା ପାଇଁ ଜଳ ଏବଂ ବିଦ୍ୟୁତ୍ ଯୋଗାଣ ଇସ୍ପାତ୍ କର୍ତ୍ତୃପକ୍ଷ ଏବଂ ବିଭିନ୍ନ ସଂସ୍ଥା ଦ୍ୱାରା କରାଗଲା । ପିଲାମାନଙ୍କ ମଧ୍ୟରେ ଶ୍ରୀଜଗନ୍ନାଥଙ୍କ ଚେତନା ପାଇଁ ସ୍କୁଲ, ମନ୍ଦିର ଟ୍ରଷ୍ଟର ଚେୟାରମ୍ୟାନ ଓ ରାଉରକେଲାର ଅତିରିକ୍ତ ଜିଲ୍ଲାପାଳ ଶ୍ରୀ ଅସୀତ୍ କୁମାର ତ୍ରିପାଠୀଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ପରିଚାଳିତ । ରାଉରକେଲା ଷ୍ଟିଲ୍ ପ୍ଲାଣ୍ଟର ଅସହଯୋଗ ପାଇଁ ଦୀର୍ଘଦିନ ଧରି ହୋଇ ପାରୁନଥିବା ମେଘନାଦ ପାଚେରୀ ର ନିର୍ମାଣ କାର୍ଯ୍ୟ ଓଡ଼ିଶାର ଶିଳ୍ପମନ୍ତ୍ରୀ ଶ୍ରୀଯୁକ୍ତ ଦିଲୀପ ରାୟଙ୍କ ପ୍ରରୋଚନାରେ ଇସ୍ପାତ୍ ପୌର ପରିଷଦ ତରଫରୁ ଚାଲୁଅଛି । ମନ୍ଦିରର ଆୟ ପନ୍ଥା କିଛି ନ ଥାଇ ମଧ୍ୟ ଏଠାରେ ପୁରୀଶ୍ରୀମନ୍ଦିର ପରି ଶ୍ରୀ ଜିଉଙ୍କର ସମସ୍ତ ନୀତି ସୁଶୃଙ୍ଖଳରୂପେ ବ୍ରାହ୍ମଣ ଏବଂ ସେବାୟତ ନିୟୋଗଦ୍ୱାରା ହେଉଅଛି ।

କେତେକ ଧର୍ମପରାୟଣ ବ୍ୟକ୍ତିଙ୍କ ଦ୍ୱାରା ଜିଉଙ୍କ ନୀତି ପାଇଁ ଏକ ସ୍ଥାୟୀ ପାଣ୍ଠି ବ୍ୟବସ୍ଥା କରାଯାଇ ନୀତିର ସୁବ୍ୟବସ୍ଥା ହୋଇଛି । ମନ୍ତ୍ରୀ ଶ୍ରୀଯୁକ୍ତ ଶରତକୁମାର କର, ଅଧ୍ୟାପକ, ଗୌରୀ କୁମାର ବ୍ରହ୍ମା, ଶ୍ରୀଯୁକ୍ତ ରଜତ କର ଇସ୍ପାତ କ୍ଷେତ୍ରରେ ପ୍ରତିଷ୍ଠିତ ଜଗନ୍ନାଥ କ୍ଷେତ୍ରର ବହୁବିଧ ଉନ୍ନତିର ପ୍ରତ୍ୟକ୍ଷ ଏବଂ ପରୋକ୍ଷ ସାହାଯ୍ୟ କରି ଆସୁଅଛନ୍ତି । ଶ୍ରୀ ଜୀଉଙ୍କର ସମସ୍ତ ପର୍ବ ବିଶେଷକରି ଶ୍ରୀଗୁଣ୍ଡିଚା ଯାତ୍ରା ଲକ୍ଷାଧିକ ଲୋକଙ୍କ ସମାଗମ ମଧ୍ୟରେ ପାଳିତ ହୁଏ । ତିନି ଠାକୁର ତିନିରଥରେ ବସି ଶ୍ରୀଗୁଣ୍ଡିଚା ମନ୍ଦିରକୁ ଯାଉଥିବା ସମୟରେ ରିଙ୍ଗରୋଡ୍‌ର ଦୃଶ୍ୟ ବାସ୍ତବିକ୍ ଦୃଷ୍ଟି ଆକର୍ଷଣ କରେ । ସମଗ୍ର ପଶ୍ଚିମ ଓଡ଼ିଶାରେ ଏଭଳି ଉଦାହରଣ ବିରଳ । ରାଉରକେଲା ନୀଳଚକ୍ର ଶାଖା, ବିଭିନ୍ନ କୀର୍ତ୍ତନ ମଣ୍ଡଳୀ, ଆଦିବାସୀ ହରିଜନ ସମିତି, ଶ୍ରୀ ଜଗନ୍ନାଥ ସାଂସ୍କୃତିକ ପରିଷଦ,

...ମଣ୍ଡଳୀ ତଥା ଅନ୍ୟାନ୍ୟ ବହୁ ସାଂସ୍କୃତିକ ଅନୁଷ୍ଠାନ ...ଯାତ୍ରୀଙ୍କୁ ବିଶେଷ ଆକର୍ଷଣୀୟ କରିଥାନ୍ତି । ବାସ୍ତବରେ ଇସାତ୍ ...ରେ ଶ୍ରୀଜଗନ୍ନାଥଙ୍କ ବିଜେସ୍ଥଳୀ ଆଜି ପବିତ୍ର ଧର୍ମପୀଠ ଓ ...ତିକ ସଂସ୍କୃତିର ସଙ୍ଗମସ୍ଥଳୀ ।

[illegible],
[illegible],
[illegible] ।

## ଧରୁଆଡ଼ିହି ଆଜି ହସୁଛି

ଦୀର୍ଘ ଦିନ ଧରି ଆମ ଭାରତବର୍ଷ ବିଦେଶୀ ଶାସନାଧୀନ ଥିଲା । ଗୋରା ଶାସକମାନେ ତାଙ୍କ ଶାସନର ସୁପରିଚାଳନା ପାଇଁ ବିଭିନ୍ନ ଅଞ୍ଚଳକୁ ଭିନ୍ନ ଭିନ୍ନ ଜମିଦାର, ରାଜା ଓ ମହାରାଜାମାନଙ୍କ ଦାୟିତ୍ୱରେ ଦେଇ ସେମାନଙ୍କଠାରୁ କର ଆଦାୟ କରୁଥିଲେ । ଦେଶର କେତେକ ଅଞ୍ଚଳ ମଧ୍ୟ ଧନୀକ ଆଦୀବାସୀ ସମ୍ପ୍ରଦାୟର ଲୋକମାନଙ୍କ ଦାୟିତ୍ୱରେ ଥିଲା । ଆମର ଏହି ଧରୁଆଡ଼ିହି ବହୁ ବର୍ଷ ପୂର୍ବେ ଧାରୁଆ ସମ୍ପ୍ରଦାୟର ଶାସନାଧୀନ ଥିଲା । ଗ୍ରାମବାସୀମାନେ କହନ୍ତି ଯେ ସେହି ଜମିଦାର ଜଣେ ନ୍ୟାୟ ପରାୟଣ ଏବଂ ଅତ୍ୟନ୍ତ ଦୟାଳୁ ଥିଲେ । ତାଙ୍କରି ନାମାନୁସାରେ ସେହି ଗ୍ରାମର ନାମ ଧରୁଆଡିହି ।

ଗାଁଟି, ଆଦିବାସୀ ଓ ହରିଜନ ବହୁଳ ଗ୍ରାମ । ବମ୍ବେ ହାୱଡ଼ା ପ୍ରଧାନ ରେଳ ପଥ ପାର୍ଶ୍ୱରେ ଅବସ୍ଥିତ । ଝାରସୁଗୁଡ଼ାଠାରୁ ଟ୍ରେନ୍‌ରେ ଆସିଲେ ୪୮ କି.ମି. । ସୁନ୍ଦରଗଡ଼ଠାରୁ ସଡ଼କ ପଥରେ ଗାଁକୁ ପଡ଼ିବ । ଦୂରତ୍ୱ ମାତ୍ର ୩୦ କି.ମି. । ଏହା ସୁନ୍ଦରଗଡ଼ ସଦର ଉପଖଣ୍ଡ ଅନ୍ତର୍ଗତ ମଝାପଡ଼ା ଗ୍ରାମ ପଞ୍ଚାୟତ ମଧ୍ୟରେ ଅବସ୍ଥିତ ।

ଗାଁର ଲୋକ ସଂଖ୍ୟା ୧୨୦୪ ଏବଂ ପରିବାର ସଂଖ୍ୟା ୩୦୦ ଅଛି । ପ୍ରାୟ ୪୦୦ ଏକର କୃଷି କ୍ଷେତ୍ର ରହିଛି । ଅଧିକାଂଶ ଗ୍ରାମବାସୀ କୃଷିଜିବୀ । ଚାଷ ଉପରେ ନିର୍ଭରକରି ପ୍ରାୟ ଅଧିକାଂଶ ଗ୍ରାମବାସୀ ଜୀବନ ଧାରଣା କରନ୍ତି ।

ଯେ କେହି ନବାଗତ ଗାଁ ମୁଣ୍ଡରେ ପହଞ୍ଚିଲା ମାତ୍ରେ ରାସ୍ତାର ଉଭୟ ଧାଡ଼ି ଧାଡ଼ି ହୋଇ ଠିଆ ହୋଇଥିବା ଆମ୍ବ ଗଛ ସ୍ୱାଗତ କରିବେ । ଅଳ୍ପ କିଛି ବାଟ ଅତିକ୍ରମ କଲେ ବାମ ପଟରେ ପଡ଼ିବ ସିଂହବାହିନୀ ଯୁବ କ୍ଲବ ପଲ୍ଲୀ ଶ୍ରୋତା ମଣ୍ଡଳୀ ଗୃହ । ଦିବସର ଯେକୌଣସି ସମୟରେ ପହଞ୍ଚିଲେ କେହିନା କେହି ଯୁବ ସଭ୍ୟ ଆପଣଙ୍କୁ ସ୍ୱାଗତ କରିବେ । ଅତିଥି ଚର୍ଚ୍ଚାର ହେଳା ନାହିଁ । ସେହି ସିଂହବାହିନୀ ଯୁବ କ୍ଲବ ରେ ପ୍ରାୟ ୮୦ ଜଣ ଯୁବକ ଯୁବତୀ ସଭ୍ୟ ଅଛନ୍ତି । କ୍ଲବ ଘରୁ ସିଲାଇ ମେସିନର ଘର୍ଘର ଶବ୍ଦ ଏବଂ ଟାଇପ୍ ମେସିନର ଠକ୍ ଠକ୍ ଶବ୍ଦ ଆପଣଙ୍କୁ ଆନନ୍ଦ ଦେବକି ନାହିଁ କହିପାରୁ ନାହିଁ ମାତ୍ର ଏହା ପ୍ରଗତିର ମାଇଲଖୁଣ୍ଟ ନିଶ୍ଚୟ ସ୍ୱୀକାର କରିବେ ।

କୃଷକମାନେ କେବଳ ଖରିଫ୍ ଋତୁରେ ଧାନ ଚାଷ କରିଥାନ୍ତି । ଗତ ଖରିଫ୍ ଋତୁରେ ୬ କୁଇଣ୍ଟାଲ ପର୍ଯ୍ୟନ୍ତ ଧାନ ଅମଳ କରିଛନ୍ତି । ଜଳ ସେଚନର ସୁବିଧା ନାହିଁ । କେତେକ ଅଗ୍ରଣୀ ଚାଷୀ ନିଜ ନିଜର ଉଦ୍ୟମରେ କୂଅ ଖୋଳି ପରିବା ଚାଷ କରୁଛନ୍ତି । ସେହି ଗ୍ରାମବାସୀମାନେ ରାଶି, ଚିନାବାଦାମ ଓ ହରଡ ପ୍ରଭୃତି ଚାଷ କରି ଗତ ବର୍ଷ ଯଥାକ୍ରମେ ଏକର ପିଛା ଦେଢ଼ କୁଇଣ୍ଟାଲ, ୫ କୁଇଣ୍ଟାଲ ଏବଂ ୨ କୁଇଣ୍ଟାଲ ପର୍ଯ୍ୟନ୍ତ ଫସଲ ଅମଳ କରିଛନ୍ତି । ଜଣେ କୃଷକ ବନ୍ଧୁ ସାକ୍ଷାତକାରରେ କହନ୍ତି ଯେ ସେ ପ୍ରତ୍ୟେକ ଦିନ ଡାଲି ନହେଲେ ଭାତ ଖାଆନ୍ତି ନାହିଁ । ମାତ୍ର ବାଲାଣ ଡାଲି ଜୀବନରେ ଖାଇ ନାହାନ୍ତି । ନିକଟସ୍ଥ ଟୋଲାର ଶ୍ରୀ ମାର୍କଣ୍ଡ ମେହେର ନିଜ ଜମିରେ ଏକ ହଜାର କଦଳୀ ଗଛ ଲଗାଇ ବିଭିନ୍ନ ସହରକୁ କଦଳୀ ଯୋଗାଇ ପାରୁଛନ୍ତି ।

ଶିକ୍ଷାର ମାନବୃଦ୍ଧି ନିମନ୍ତେ ଏବଂ ନିରକ୍ଷରତା ରୂପକ ଅନ୍ଧକାରରୁ ଜନସାଧାରଣଙ୍କୁ ଆଲୋକକୁ ଆଣିବା ପାଇଁ ସେହି ଗ୍ରାମରେ ୨୬ ଗୋଟି 'ସାକ୍ଷରତା କେନ୍ଦ୍ର ଖୋଲି ଗତ ଅପ୍ରେଲ ମାସରୁ ଶିକ୍ଷାଦାନ କାର୍ଯ୍ୟକ୍ରମ ଚାଲୁ ଅଛି । ଏହି କାର୍ଯ୍ୟକ୍ରମରେ ଗ୍ରାମବାସୀମାନଙ୍କର ଉତ୍ସାହ ପ୍ରଶଂସନୀୟ । ବିଭିନ୍ନ ଦିବସ ମାନଙ୍କରେ ଜିଲ୍ଲାପାଳଙ୍କଠାରୁ ଆରମ୍ଭ କରି ସମସ୍ତ ସରକାରୀ କର୍ମଚାରୀମାନେ ଗ୍ରାମକୁ ଯାଇ ସାକ୍ଷରତା କାର୍ଯ୍ୟକ୍ରମର ଅନୁଧ୍ୟାନ କରୁଛନ୍ତି ।

ଗ୍ରାମର ଜନସାଧାରଣଙ୍କ ସ୍ୱାସ୍ଥ୍ୟରକ୍ଷା ନିମନ୍ତେ ଗୋଟିଏ ଧାଇ କେନ୍ଦ୍ର ରହିଅଛି । ପାନୀୟ ଜଳ ଯୋଗାଣ ପାଇଁ ସରକାରଙ୍କ ଅନୁଦାନରେ ୪ ଗୋଟି ନଳକୂପ ଖନନ କରାଯାଇ ଅଛି । ଗ୍ରାମବାସୀମାନେ ସେହି ନଳକୂପମାନଙ୍କରୁ ପାନୀୟ ଜଳ ସଂଗ୍ରହ କରନ୍ତି । କେବେ ହେଲେ ପାନୀୟ ଜଳରୁ ଅଭାବ ପରିଲକ୍ଷିତ ହୁଏ ନାହିଁ ।

ଗ୍ରାମରେ ଥିବା ଯୁବକ ସଙ୍ଘ ଓ ପଲ୍ଲୀ ଶ୍ରୋତା ମଣ୍ଡଳୀର ସଭ୍ୟମାନେ ପ୍ରାୟ ସନ୍ଧ୍ୟା ବେଳେ ଏକତ୍ରିତ ହୁଅନ୍ତି । ସେମାନଙ୍କ ମୁଖ୍ୟ ଆଲୋଚ୍ୟ ବିଷୟ ନିଜ ଗାଁର ସର୍ବାଙ୍ଗୀନ ଉନ୍ନତି ସଙ୍ଗେ ସଙ୍ଗେ ଆଖ ପାଖ ଗ୍ରାମର ମଧ୍ୟ ସର୍ବାଙ୍ଗୀନ ଉନ୍ନତି କରିବା । ସଭ୍ୟମାନେ ବିଭିନ୍ନ ସମୟରେ ସ୍ୱାସ୍ଥ୍ୟ ଶିବିର ମାନ ଅନୁଷ୍ଠିତ କରି ଗର୍ଭବତୀ ମହିଳା ଓ ଶିଶୁମାନଙ୍କର କିପରି ଯତ୍ନ ନିଆଯିବ ସେ ସମ୍ପର୍କରେ ପରାମର୍ଶ ଦେଇଥାନ୍ତି । ପଲ୍ଲୀଶ୍ରୋତା ମଣ୍ଡଳୀର ସଭ୍ୟମାନେ ଗତ ୧୯୯୦ ମସିହାରେ ୨୬ ହେକ୍ଟର ଜମିରେ ଟମାଟ ଚାଷ କରୁଛନ୍ତି । ଗ୍ରାମବାସୀମାନଙ୍କୁ ପଲ୍ଲୀ ଶ୍ରୋତା ମଣ୍ଡଳୀର ସଭ୍ୟମାନେ ମଦ୍ୟପାନରୁ ନିବୃତ୍ତ କରାଇ ଏକ ଉଲ୍ଲେଖନୀୟ ସଫଳତା ହାସଲ କରିଛନ୍ତି । ଯୁବକ ସଙ୍ଘ ଆନୁକୂଲ୍ୟରେ ଗ୍ରାମର ୭୫ ଜଣ ଶିକ୍ଷିତା ଯୁବତୀଙ୍କୁ ସିଲାଇ ତାଲିମ ଦିଆଯାଇ ପାରୁଛି ଏବଂ ସେମାନେ ତାଲିମ ପାଇଲା ପରେ ଜୀବନଧାରଣ ପାଇଁ ସ୍ୱାବଲମ୍ବୀ ହୋଇ ପାରିଛନ୍ତି । ମହିଳା ସମିତିର ସଭ୍ୟାମାନଙ୍କ ଉଦ୍ୟମ ଫଳରେ ୨୫ ଜଣ ଯୁବତୀଙ୍କୁ ହାତବୁଣା କାମର ତାଲିମ ଦିଆଯାଇଛି । ଆଖ ପାଖ ଅଞ୍ଚଳରେ ସେମାନଙ୍କ ଦ୍ୱାରା ବୁଣା ଯାଇଥିବା ସ୍ୱେଟର, ମଫଲର୍, ହେଡ଼ସ୍କାର୍ଫର ବିଶେଷ ଚାହିଦା ଅଛି । ଧରୁଆଡିହି ଗ୍ରାମ ଦେଇ ପ୍ରତ୍ୟେକ ଦିନ ୨/୩ ଗୋଟି ଯାତ୍ରୀବାହୀ ବସ୍ ବିଭିନ୍ନ ସ୍ଥାନକୁ ଯାତାୟତ କରିଥାଏ । ଯାତ୍ରୀମାନଙ୍କୁ ଖରା ଓ ବର୍ଷାରୁ ରକ୍ଷା କରିବା ପାଇଁ ଯୁବକ ସଙ୍ଘର ଉଦ୍ୟମରେ ଜିଲ୍ଲା ଯୋଜନା ଓ

ଉନ୍ନୟନ ବିଭାଗ ୮ ହଜାର ଟଙ୍କା ଅନୁଦାନ ଓ ଯୁବକ ସଙ୍ଘର ୮ ହଜାର ଟଙ୍କା ବିନିମୟରେ ଗୋଟିଏ ଯାତ୍ରୀ ପ୍ରତିକ୍ଷାଳୟ ନିର୍ମିତ ହୋଇପାରିଥିଛି ।

ସଞ୍ଚୟ କ୍ଷେତ୍ରରେ ମଧ୍ୟ ଯୁବକ ସଙ୍ଘର ଉଦ୍ୟମ ପ୍ରଶଂସନୀୟ । ଏ ପର୍ଯ୍ୟନ୍ତ ପୁନଃ ପୌନିକ ସଞ୍ଚୟ ମାଧ୍ୟମରେ ୫୦୦ ଗୋଟି ସଞ୍ଚୟ ପାଶ୍ ବହି ଖୋଲା ଯାଇଅଛି ।

ଅନୁଧ୍ୟାନ କଲେ ଜଣାଯିବ ଯେ ଗ୍ରାମଟି ତାʼର ଯୁବକ ସଙ୍ଘର ସଭ୍ୟମାନଙ୍କ ଉଦ୍ୟମ ଯୋଗୁଁ ପ୍ରତ୍ୟେକ କ୍ଷେତ୍ରରେ ଅଗ୍ରଗତି କରୁଅଛି ।

ଗ୍ରାମବାସୀମାନେ ବର୍ଷର ବିଭିନ୍ନ ପର୍ବ ପର୍ବାଣୀ ପାରମ୍ପାରିକ ରିତିରେ ପାଳନ କରିଆନ୍ତି । ତନ୍ମଧ୍ୟରୁ ରଥଯାତ୍ରା, ଦୁର୍ଗାପୂଜା ଓ ମକର ପର୍ବ ବିଶେଷ ଭାବରେ ପାଳନ କରାଯାଏ । ଗାଁରେ ଛୁଆଁ ଅଛୁଆଁ ଭେଦ ଭାବ ନାହିଁ । ସମସ୍ତେ ଗୋଟିଏ ପରିବାର ପରି ଚଳନ୍ତି ।

(ଗତ ତା ୨୫-୩-୧୯୯୨ ରିଖ ଦିନ ଆକାଶବାଣୀ, ସମ୍ବଲପୁରଙ୍କ ସୌଜନ୍ୟରୁ ପ୍ରସାରିତ)

ଶ୍ରୀ ଦେବେନ୍ଦ୍ରନାଥ ଦାଶ,
ଜିଲ୍ଲା ସୂଚନା ଓ ଲୋକ ସମ୍ପର୍କ ଅଧିକାରୀ
ସୁନ୍ଦରଗଡ଼ ।

## ପ୍ରଗତି ପଥେ

ମାଲ୍‌କାନଗିରି ପାହାଡ ପର୍ବତ ଘେରା କୋରାପୁଟ ଏକ ବୃହତ୍ତମ ଜିଲ୍ଲା । ଓଡ଼ିଶାର ୧୩ଟି ଜିଲ୍ଲା ମଧ୍ୟରେ ଏହା ଏକ ଆଦିବାସୀ ବହୁଳ ଅଞ୍ଚଳ, ସାଧାରଣତଃ ୬ଟି ଉପଖଣ୍ଡକୁ ନେଇ ଏହି ଜିଲ୍ଲା ଗଠିତ । ଏହି ଉପଖଣ୍ଡ ମଧ୍ୟରେ ମାଲ୍‌କାନଗିରି ଭାରତର ଦ୍ୱିତୀୟ ବୃହତ୍ତମ ଉପଖଣ୍ଡ ଭାବରେ ପରିଚିତ । ଏହି ଉପଖଣ୍ଡରେ କାହିଁ କେଉଁ ଆଦିମ କାଳରୁ ଆଦିବାସୀମାନଙ୍କ ମଧ୍ୟରେ ବଣ୍ଡା, କୋୟା, ପରଜା, ଦିଦାୟୀ ଓ ଭୂମିଆ ଆଦି ସମ୍ପ୍ରଦାୟ ବାସ କରନ୍ତି । ଆଦିବାସୀ ଗାଁଗୁଡ଼ିକ ବିଶେଷ ଭାବରେ ଗୁଡା ନାମରେ ନାମିତ କରାଯାଇଥାଏ । ଏମିତି ଏହି ଗୁଡା ଗୁଡ଼ିକ ମଧ୍ୟରୁ ମାଲ୍‌କାନଗିରି ସହରଠାରୁ ୩/୪ କି.ମି. ଦୂରରେ ଅବସ୍ଥିତ ୨ଟି ଗ୍ରାମ ନୂଆଗୁଡା ଓ ଖଣ୍ଡିଆ ଗୁଡା । ଆଜି ଯେକୌଣସି ବ୍ୟକ୍ତି ଦେଖିଲେ, କେହି କହିବେନି, ଏହା ଆଦିବାସୀ ଗ୍ରାମବୋଲି ଏବଂ ଏହି ଗ୍ରାମ ଦୁଇଟିର ଲୋକ ସଂଖ୍ୟା ୧୨୦୦ ହେବେ । ସମାନ ଭାବରେ ୨ଟି ଗ୍ରାମରେ ୫୦/୬୦ଟି ପରିବାର ରହୁଛନ୍ତି । ସୁନ୍ଦର ସୁନ୍ଦର ଚିକ୍‌କଣ ନୂଆଣିଆ ଘରଘର ଧାଡ଼ି ଧାଡ଼ି ହୋଇ ଛିଡ଼ା ହୋଇଛି । ମଝିରେ ସରୁ ନାଳିଗୋଡ଼ି ରାସ୍ତା । ପରିଷ୍କାର ପରିଚ୍ଛନ୍ନତା ଯୋଗୁଁ ଯେକୌଣସି ଲୋକ ଅନୁମାନ କରିବେ । ଏହି ଦୁଇଟି ଗ୍ରାମର ବୈଶିଷ୍ଟ୍ୟ ହେଲା, ଗ୍ରାମର କୌଣସି ବ୍ୟକ୍ତି କେବେ ମଦ୍ୟ ପାନ କରନ୍ତି ନାହିଁ । କୌଣସି ବ୍ୟକ୍ତି ଅଶିକ୍ଷିତ ନୁହନ୍ତି । ଅଳ୍ପ ବହୁତେ ସମସ୍ତେ ପାଠପଢ଼ା ଜାଣିଛନ୍ତି । କୌଣସି ପରିବାରର ପିଲା ଅନ୍ୟ ପିଲାଙ୍କ ପରି ଗାଈ ଜଗିବାକୁ ଯାʼନ୍ତି ନାହିଁ । ସମସ୍ତେ ସ୍କୁଲରେ ପାଠ ପଢ଼ିବାକୁ ଯାନ୍ତି । ସନ୍ଧ୍ୟା ଓ ସକାଳରେ ଠାକୁରଙ୍କ ପ୍ରାର୍ଥନା ବୋଲନ୍ତି । ସବୁଠୁ ଆନନ୍ଦର ବିଷୟ ଯେ, ସନ୍ଧ୍ୟା ହେଲେ ଧାଡ଼ି ଧାଡ଼ି ଲଣ୍ଠନ ଆଲୁଅ ପ୍ରତି ଘର ଆଗରେ ବାରଣ୍ଡାରେ ଜଳୁଥାଏ । ବାପ, ପୁଅ, ଝିଅ ଓ ଅନ୍ୟ ସମସ୍ତେ ସାଥୀ ହୋଇ ପାଠ ପଢ଼ି ବସନ୍ତି । ମାଲ୍‌କାନଗିରି ମହାବିଦ୍ୟାଳୟର ଜନଶିକ୍ଷା କାର୍ଯ୍ୟକ୍ରମ ଅନୁସାରେ, ଏହି ଗ୍ରାମ ୨ଟିର ସମସ୍ତ ବ୍ୟକ୍ତି ଶିକ୍ଷିତ । ଏହି ଦୁଇଟି ଗ୍ରାମକୁ ଶିକ୍ଷା, ସଭ୍ୟତା, ସଂସ୍କୃତି ଓ ସ୍ୱାସ୍ଥ୍ୟ ସବୁକିଛି ସ୍ପର୍ଶ କରି ପାରିଛି । ଏହି ୨ଟି ଗ୍ରାମର ୩୦ଟି ପରିବାର ଅଦ୍ୟାବଧି ପରିବାର ନିୟନ୍ତ୍ରଣର ସଫଳ ରୂପ ନେଇଛନ୍ତି । ସରକାରଙ୍କ ୨ଟି ସନ୍ତାନ ଲକ୍ଷ୍ୟ ଥିଲାବେଳେ ମାତ୍ର ୧/୧ଟି ପିଲା ଥାଇମଧ୍ୟ ୨ଟି ପରିବାର ପରିବାର କଲ୍ୟାଣ ଅସ୍ତ୍ରୋପଚାର ହୋଇଛନ୍ତି । ଏହି ୨ଟି ଗ୍ରାମରେ ୨ ସମାନ୍ତରାଳ ଯୁବକ ସଙ୍ଘ ଗତ ୧୯୯୦ ମସିହା ଅଗଷ୍ଟ ୧୫ ତାରିଖ ଦିନ ଉଦ୍‌ଘାଟନ କରାଯାଇଛି । ଗୋଟିକର ନାମ "ଶହୀଦ୍ ଲକ୍ଷ୍ମଣ ନାୟକ ଯୁବକ ସଙ୍ଘ" ଓ ଅନ୍ୟଟି "ଜୟ ଜଗନ୍ନାଥ ଯୁବକ ସଙ୍ଘ", ୧୯୯୦ ମସିହା ସ୍ୱାଧୀନତା ଦିବସରେ ଯୁବକ ସଙ୍ଘ ତରଫରୁ ସ୍ୱାଧୀନତା ଦିବସ ପାଳନ କରାଯାଇଥିଲା । ସଙ୍ଘ ସଭ୍ୟମାନେ ବା ଯୁବକମାନେ ତ୍ରିରଙ୍ଗୀ ପତାକା ତଳେ ଶପଥ ନେଲେ ଯେ, ସେମାନେ ଏବଂ ତାଙ୍କ ପିଲାମାନଙ୍କୁ କେବେ ଜୀବନରେ ମଦ୍ୟପାନ କରାଇବାକୁ ଦେବେ ନାହିଁ । କୌଣସି ବ୍ୟକ୍ତିଙ୍କୁ ଓ ପିଲାଙ୍କୁ ଶିକ୍ଷାରୁ ବଞ୍ଚିତ କରିବେ ନାହିଁ । ସେହି ଦିନଠାରୁ ସେମାନେ ଶପଥକୁ କାର୍ଯ୍ୟକାରୀ କରିବାରେ ଲାଗିଛନ୍ତି । ଏଥିପାଇଁ ସ୍ଥାନୀୟ ବିଦ୍ୟାଳୟ ତରଫରୁ ଜନଶିକ୍ଷା କାର୍ଯ୍ୟକ୍ରମ ଓ ସୂଚନା ଓ ଲୋକ ସମ୍ପର୍କ ବିଭାଗର ନିୟମିତ ଡକୁମେନ୍‌ଟାରୀ ଯଥା :—ଶିକ୍ଷା, ସଭ୍ୟତା, ସ୍ୱାସ୍ଥ୍ୟ, ନିଶାନିବାରଣ, ସ୍ୱଳ୍ପ ସଞ୍ଚୟ ଉପରେ ଚଳଚ୍ଚିତ୍ର ପ୍ରଦର୍ଶନ ଯୋଗୁଁ କାର୍ଯ୍ୟକାରୀ ହୋଇପାରିଛି । ପୂର୍ବରୁ ଉକ୍ତ ଗ୍ରାମରେ ୫ଟି ଦେଶୀ ମଦ ଦୋକାନ ଥିଲା । ଏହାକୁ ସମ୍ପୂର୍ଣ୍ଣ ଉଠାଇ ଦିଆଯାଇଛି । ବର୍ତ୍ତମାନ ସୁଦ୍ଧା ୭ ଜଣ ଛାତ୍ର ଛାତ୍ରୀଗଣ କଲେଜ ଅଧ୍ୟୟନ କରୁଥିବା ସ୍ଥଳେ ୪ ଜଣ ଚାକିରି କରନ୍ତି । ୨୦ ଜଣ ଛାତ୍ର ଛାତ୍ରୀ ବର୍ତ୍ତମାନ ହାଇସ୍କୁଲରେ ପାଠପଢୁଛନ୍ତି । ପ୍ରାୟ ୧୦୦ରୁ ଊର୍ଦ୍ଧ୍ୱ ଛାତ୍ର ଛାତ୍ରୀ ଉ.ପ୍ରା: ଓ ମଧ୍ୟଇଂରାଜୀ ବିଦ୍ୟାଳୟରେ ଅଧ୍ୟୟନ କରୁଛନ୍ତି । ଶିକ୍ଷାର ପ୍ରକୃତ ମୂଲ୍ୟ ଏବେ ସେମାନେ ହୃଦୟଙ୍ଗମ କଲେଣି । ତେଣୁ ସେମାନେ କୌଣସି ପିଲାଙ୍କୁ ପାଠରୁ ବଞ୍ଚିତ କରନ୍ତି ନାହିଁ । କେବଳ ପାଠ ନୁହେଁ ଦିନରେ ଯାହା ରୋଜଗାର କରନ୍ତି । ସେମାନେ ସ୍ଥାନୀୟ ପୋଷ୍ଟ ଅଫିସ୍‌ରେ କିଛି ଟଙ୍କା ଜମାରଖି ନିଜର ପିଲାଙ୍କ ଭବିଷ୍ୟତ କଥା ପାଇଁ ଅନ୍ୟକୁ ବୁଝାନ୍ତି । ଏହି ଗ୍ରାମରେ କେହି କେବେ ପୋଲିସ ବା କୋର୍ଟ କଚେରୀ ଯାଆନ୍ତି ନାହିଁ । ୨ଟି ଆଦର୍ଶ ଗ୍ରାମ ଭାବରେ ଏହା ସୁପରିଚିତ । ସମ୍ପୂର୍ଣ୍ଣ ସ୍ୱାକ୍ଷରତା ହାସଲ କରିଥିବା ଚିଠାରେ କୋରାପୁଟ ଜିଲ୍ଲାପାଳଙ୍କୁ ଏହା ଜଣାଇ ଦିଆଯାଇଛି ।

ଶ୍ରୀ ପ୍ରମୋଦ କୁମାର ମଲ୍ଲିକ,
ଉପଖଣ୍ଡ ସୂଚନା ଓ ଲୋକ ସମ୍ପର୍କ ଅଧିକାରୀ
ମାଲ୍‌କାନଗିରି ।

## ପାଠକ ସମାବେଶ

ଏ ବର୍ଷ ସ୍ଥାନରେ ମସିହାର
ନଅ ଦିନ ମଇ ମାସ
ଢେଙ୍କାନାଳେ ହେଲା ଉତ୍କଳ ପ୍ରସଙ୍ଗ
ପାଠକଙ୍କ ସମାବେଶ (୧)

ଧନେଶ୍ୱର ପାଣି ହେଲେ ମଞ୍ଚାସୀନ
ସଭାପତି ଆସନରେ
ମୁଖ୍ୟସମ୍ପାଦକ ସତୀଶ ପାତ୍ର
ମୁଖ୍ୟ ଅତିଥି ଭାବରେ (୨)

ସୂଚନାଧିକାରୀ, ସ୍ୱଦେଶ ରାୟ
ପ୍ରଥମେ ଦେଲେ ସୂଚନା
ପାଠକମାନଙ୍କ ମତାମତ ପାଇଁ
ସମାବେଶର ଯୋଜନା (୩)

ଲେଖା ଥିଲେଗ ସବୁ କିସମର
ସଭିଙ୍କ ରୁଚିକୁ ନେଇ
ଅଦ୍ଭୁତ ଏବେ ଉତ୍କଳ ପ୍ରସଙ୍ଗ
ସତୀଶ ବାବୁଙ୍କ ପାଇଁ (୪)

ଗୋଟିଏ ଅଭାବ ରହିଛି କହିଲେ
ଚନ୍ଦ୍ରମୋହନ ସ୍ୱାଇଁ
ମଫସଲ ଲୋକ କେମିତି ପାଇବେ
ସେଥିକୁ ଯୋଜନା ନାହିଁ (୫)

ମନୋରଞ୍ଜନ ନନ୍ଦ କହିଲେ
ଆଉ ଏକ କଥା ହେଉ
ବିଶିଷ୍ଟ ଲେଖକ ପୂର୍ବସୂରୀ ପାଇଁ
ପ୍ରବନ୍ଧ ପ୍ରକାଶ ପାଉ (୬)

ସାମ୍ବାଦିକ ବନ୍ଧୁ ପ୍ରଦ୍ୟୁମ୍ନ କହିଲେ
ପୂର୍ବ କୀର୍ତ୍ତି ଯେତେ ଅଛି
ପ୍ରତ୍ୟେକ ସଂଖ୍ୟାରେ ପ୍ରକାଶିତ ହେଉ
ପ୍ରତ୍ୟେକରୁ କିଛି କିଛି (୭)

ଅଧ୍ୟାପକ କର ଶରତ ଭାଇନା
ବନ୍ଧୁ ଶ୍ରୀ ଅଜିତ୍ ଦାସ
ଯେତେ ଯେତେ ଜ୍ଞାନୀ ଗୁଣୀ ଲୋକଥିଲେ
ସଭିଏଁ ହେଲେ ହରଷ (୮)

ଶ୍ରୀମତୀ ମିଶ୍ର ଅନୁରୋଧ କଲେ
ଆଉ ଏକ କଥା ହେଉ
ମହିଳାଙ୍କ ପାଇଁ ମହିଳା ବିଭାଗ
ନୂଆ କରି-ଖୋଲା ଯାଉ (୯)

ସଭିଙ୍କ ପ୍ରଶ୍ନର ଉତ୍ତର ଦେବାକୁ
ଉଠିଲେ ସତୀଶ ଭାଇ
ମନଖୋଲି ସବୁ ବୁଝାଇ ଦେଲେ ସେ
ମିଠାମିଠା ଗପ କହି (୧୦)

ସୁଯୋଗ ପାଇବେ ନବୀନ ଲେଖକ
ଉଠିବ ଲକ୍ଷଣ ଗାର
ଉତ୍କଳ ପ୍ରସଙ୍ଗ ବିକ୍ରି ପାଇଁ ମଧ୍ୟ
ସୁଯୋଗ ନେବେ ବେକାର (୧୧)

ଉତ୍କଳର କୀର୍ତ୍ତି ଉତ୍କଳର ଖ୍ୟାତି
ଉତ୍କଳର ବାର୍ତ୍ତା ନେଇ
ପ୍ରଶଂସିତ ହେଉ ଉତ୍କଳ ପ୍ରସଙ୍ଗ
ଉତ୍କଳ ଜନନୀ ଧାତ୍ରୀ (୧୨)
ସମାବେଶେ ବସି ରାଧାନାଥ ମିଶ୍ର
ଲେଖୁଥିଲେ ଥୁରି ଥୁରି
ଆବୃତ୍ତି କଲେ ଏ ସ୍ୱରଚିତ ଗୀତ
ସଭିଙ୍କି ଚକିତ କରି (୧୩)

(୯—୬—୧୯୯୨ ତାରିଖରେ ଢେଙ୍କାନାଳଠାରେ ଆୟୋଜିତ ଉତ୍କଳ ପ୍ରସଙ୍ଗ ପାଠକ ସମାବେଶ ଉପରେ ଆଧାରିତ)

*ରାଧାନାଥ ମିଶ୍ର,*
*ଶିକ୍ଷକ, ଅମଲାପଡ଼ା,*
*ଢେଙ୍କାନାଳ ।*






## ମଇ ମାସର ସଂକ୍ଷିପ୍ତ ସମ୍ବାଦ :

୨–୫–୧୯୯୨–ବାଲିପାଟଣାଠାରେ ସୂଚନା ଓ ଲୋକ ସମ୍ପର୍କ ମନ୍ତ୍ରୀ **ଶ୍ରୀ ଶରତ କୁମାର କରଙ୍କ** ଦ୍ୱାରା **ସୂଚନା କେନ୍ଦ୍ର** ଓ ପାଠାଗାର ଉଦ୍‌ଘାଟନ ।

୩–୫–୧୯୯୨–ଚଳିତ ବର୍ଷ **୫୦୦ ଗ୍ରାମକୁ** ପାଇପ୍ ଜଳ ଯୋଗାଇବା ଲକ୍ଷ୍ୟ ରହିଛି ବୋଲି ଦଶପଲ୍ଲାଠାରେ ପାଇପ୍ ଜଳଯୋଗାଣ କାର୍ଯ୍ୟର ଭୂମି ପୂଜା ଉତ୍ସବରେ ଗ୍ରାମ୍ୟ ଉନ୍ନୟନ ମନ୍ତ୍ରୀ **ଶ୍ରୀ ରାମକୃଷ୍ଣ ପଟ୍ଟନାୟକଙ୍କ** ସୂଚନା ।

୪–୫–୧୯୯୨–ସାଧାରଣ ଉଦ୍ୟୋଗ, ଯୋଜନା ଓ ସମନ୍ୱୟ **ରାଷ୍ଟ୍ରମନ୍ତ୍ରୀ ଶ୍ରୀ ପ୍ରଫୁଲ୍ଲ ଘଡ଼େଇଙ୍କ** ଦ୍ୱାରା ସୁକିନ୍ଦା ବାଳିକା **ବିଦ୍ୟାଳୟ ଗୃହ** ଉଦ୍‌ଘାଟନ ।

୬–୫–୧୯୯୨–ନୟାଗଡ଼–ଦଶପଲ୍ଲା ରାସ୍ତାର ମହୀପୁରଠାରେ ପୂର୍ତ୍ତ ମନ୍ତ୍ରୀ **ଶ୍ରୀ ନଳିନୀକାନ୍ତ ମହାନ୍ତିଙ୍କ** ଦ୍ୱାରା ତାହୁକା ସେତୁ ଏବଂ ଗଣିଆ ନିକଟସ୍ଥ **କୁଟଙ୍ଗ ସେତୁ** ନିର୍ମାଣର ଶୁଭାରମ୍ଭ ।

୯–୫–୧୯୯୨–ରାଜ୍ୟ ସରକାରଙ୍କ ପରିଚାଳନାଧୀନ 'ଇପିକଲ' ସଂସ୍ଥା ଓ ଅନ୍ୟ ଦୁଇଟି କମ୍ପାନୀର ମିଳିତ ଉଦ୍ୟୋଗରେ ୪୭ କୋଟି **ଟଙ୍କା ବ୍ୟୟରେ** କଳାହାଣ୍ଡି ଜିଲ୍ଲାରେ ଏକ **ଚିନି କଳ** ପ୍ରତିଷ୍ଠା ପାଇଁ ପ୍ରସ୍ତୁତି ।

୧୦–୫–୧୯୯୨–ବୈତାରିଣି ନିକଟସ୍ଥ ଯଖପୁରାଠାରେ କଳିଙ୍ଗ **ଇସ୍ପାତ କାରଖାନା** ପାଇଁ ଭୂମି ପୂଜା ଉତ୍ସବ ।

୧୧–୫–୧୯୯୨–ରାଉରକେଲାଠାରେ ହକି **ଏକାଡ଼େମୀ** ପ୍ରତିଷ୍ଠା କରିବା ସମ୍ପର୍କରେ କ୍ରୀଡ଼ା ଓ ଯୁବ କଲ୍ୟାଣ ମନ୍ତ୍ରୀ **ଶ୍ରୀ ଶରତ କୁମାର କରଙ୍କ** ସୂଚନା ।

୧୨–୫–୧୯୯୨–ଓଡ଼ିଶାର ୪,୬୩୦ ବେସରକାରୀ ମଧ୍ୟ ଇଂରାଜୀ ବିଦ୍ୟାଳୟକୁ **ସରକାରୀ** ବିଦ୍ୟାଳୟରେ ପରିଣତ କରିବା ପାଇଁ ରାଜ୍ୟ ସରକାରଙ୍କ ନିଷ୍ପତ୍ତି ।

୧୪–୫–୧୯୯୨–ପାରାଦ୍ୱୀପଠାରେ ଏକ ତୈଳ ବିଶୋଧନାଗାର ସ୍ଥାପନ କରାଯିବ ବୋଲି ମୁଖ୍ୟମନ୍ତ୍ରୀ **ଶ୍ରୀ ବିଜୁ ପଟ୍ଟନାୟକଙ୍କ** ଘୋଷଣା ।

୧୫–୫–୧୯୯୨–(୧) ରାଜ୍ୟର ସବୁ ଗ୍ରାମ ପଞ୍ଚାୟତରେ ଜଣେ ଲେଖାଏଁ **ପଞ୍ଚାୟତ ଏକ୍‌ଜିକ୍ୟୁଟିଭ୍ ନିଯୁକ୍ତ** କରାଯିବ ବୋଲି ପଞ୍ଚାୟତ ରାଜ ମନ୍ତ୍ରୀ **ଡଃ ଦାମୋଦର ରାଉତଙ୍କ** ଘୋଷଣା ।

(୨) ପଠାଣି ସାମନ୍ତ ପ୍ଲାନେଟୋରିଅମ୍ ପରିସରରେ ସାମନ୍ତ **ଚନ୍ଦ୍ରଶେଖରଙ୍କ ପ୍ରତିମୂର୍ତ୍ତି** ଉନ୍ମୋଚନ ।

୧୬–୫–୧୯୯୨–ବାଲେଶ୍ୱର ଜିଲ୍ଲାର **ବାହାବଳପୁରଠାରେ** କ୍ଷୁଦ୍ର ବନ୍ଦର ମୁଖ୍ୟମନ୍ତ୍ରୀ **ଶ୍ରୀ ବିଜୁ ପଟ୍ଟନାୟକଙ୍କ** ଦ୍ୱାରା ଉଦ୍‌ଘାଟନ ।

୧୭–୫–୧୯୯୨–ଢେଙ୍କାନାଳ ଜିଲ୍ଲାର ଚନ୍ଦ୍ରଶେଖର ପ୍ରସାଦ ଗ୍ରାମରେ ୨ କୋଟି ୬୫ ଲକ୍ଷ ଟଙ୍କାରେ ନିର୍ମିତ ହେବାକୁ ଥିବା ମଙ୍କିରା କ୍ଷୁଦ୍ର ଜଳସେଚନ ଯୋଜନାର ଭୂମି ପୂଜା ଉତ୍ସବ ।

୧୮–୫–୧୯୯୨–(୧) ୧ କୋଟି ୧ ଲକ୍ଷ ୫୪ ହଜାର ୭ ଶହ ଟଙ୍କା ବ୍ୟୟରେ ଜଗନ୍ନାଥ ପ୍ରସାଦ ବ୍ଲକ୍‌ରେ **ନାଳଭୁଜ ଘାଇ** କ୍ଷୁଦ୍ର **ଜଳସେଚନ ଯୋଜନାର** ଭୂମି ପୂଜା ।

(୨) ଗ୍ରାମ୍ୟ ଉନ୍ନୟନ ରାଷ୍ଟ୍ରମନ୍ତ୍ରୀ **ଶ୍ରୀ ସହରାଇ ଓରାମ୍‌ଙ୍କ** ଉପସ୍ଥିତିରେ ଚମ୍ପୁଆ ନିକଟସ୍ଥ **ବୈତରଣୀ ପୋଲ୍ସ** ସେତୁର ଭୂମି ପୂଜା ଉତ୍ସବ ସମ୍ପନ୍ନ ।

୧୯-୫-୧୯୯୨–ୟୁରୋପିୟ ଅର୍ଥନୈତିକ ଗୋଷ୍ଠୀ ସହାୟତାରେ ୨୯ କୋଟି ଟଙ୍କା ବ୍ୟୟରେ ୨୧ ଗୋଟି କ୍ଷୁଦ୍ର ଜଳସେଚନ ଯୋଜନା ଏବଂ ଜର୍ମାନୀର କେ.ଏଫ୍.ଡବ୍ଲ୍ୟୁ: ସଂସ୍ଥା ସହାୟତାରେ ୬୧୦ ଗୋଟି ଉଠା ଜଳସେଚନ ପଏଣ୍ଟ ୬୩ କୋଟି ଟଙ୍କା ବ୍ୟୟରେ ପ୍ରତିଷ୍ଠା କରାଯିବ ବୋଲି ଗ୍ରାମ୍ୟ ଉନ୍ନୟନ ମନ୍ତ୍ରୀ **ଶ୍ରୀ ରାମକୃଷ୍ଣ ପଟ୍ଟନାୟକଙ୍କ** ସୂଚନା ।

୨୦-୫-୧୯୯୨–ଗଞ୍ଜାମ ଜିଲ୍ଲାର ପବିତ୍ର ତାରାତାରିଣୀ ପୀଠରେ କୃଷକ ଭବନ ନିର୍ମାଣ କରାଯିବ ବୋଲି ଜଳସେଚନ ମନ୍ତ୍ରୀ **ଶ୍ରୀ ବିଜୟ ମହାପାତ୍ରଙ୍କ** ଘୋଷଣା ।

୨୨-୫-୧୯୯୨–'ଅଏଲ୍ ଓଡ଼ିଶା'ର ଦଶମ ପ୍ରତିଷ୍ଠା ଉତ୍ସବରେ କୃଷି ମନ୍ତ୍ରୀ **ଶ୍ରୀ ଜଗନ୍ନାଥ ମଲ୍ଲିକଙ୍କ** ଦ୍ୱାରା **ସୁବର୍ଣ୍ଣ** ରିଫାଇନ ସୂର୍ଯ୍ୟମୁଖୀ ତେଲର ବିକ୍ରି ଅନୁକୂଳ ।

୨୩-୫-୧୯୯୨–ଦିଲ୍ଲୀଠାରେ ଅନୁଷ୍ଠିତ ୪୪ତମ ଜାତୀୟ ଉନ୍ନୟନ ପରିଷଦ ବୈଠକରେ ରାଜ୍ୟମାନଙ୍କୁ ଅଧିକ **ଆର୍ଥିକ** ସାହାଯ୍ୟ ପାଇଁ ଓଡ଼ିଶାର ମୁଖ୍ୟମନ୍ତ୍ରୀ **ଶ୍ରୀ ବିଜୁ ପଟ୍ଟନାୟକଙ୍କ** ଦାବୀ ।

୨୪-୫-୧୯୯୨–କଟକସ୍ଥିତ ଶ୍ରୀରାମଚନ୍ଦ୍ର ଭବନଠାରେ **ସ୍ୱର୍ଗତ ବିନୋଦ କାନୁନ୍‌ଗୋଙ୍କ** ପ୍ରତିମୂର୍ତ୍ତି ଉନ୍ମୋଚନ ।

୨୫-୫-୧୯୯୨–ଭୁବନେଶ୍ୱର ଓ ରାଉରକେଲାଠାରେ ୨ଟି **ହୋସିଏରୀ କମ୍ପ୍ଲେକ୍ସ** ପ୍ରତିଷ୍ଠା ପାଇଁ ରାଜ୍ୟ ସରକାର ପ୍ରସ୍ତାବ ରଖିଛନ୍ତି ବୋଲି ଶିଳ୍ପ ମନ୍ତ୍ରୀ **ଶ୍ରୀ ଦିଲ୍ଲୀପ ରାୟଙ୍କ** ଘୋଷଣା ।

୨୬-୫-୧୯୯୨–ଓଡ଼ିଶାରେ **୩ ଗୋଟି ଆଲୁମିନା ପ୍ଲାଣ୍ଟ** ପ୍ରତିଷ୍ଠା ପାଇଁ ରାଜ୍ୟ ସରକାରଙ୍କ ପ୍ରସ୍ତାବକୁ କେନ୍ଦ୍ର ସରକାରଙ୍କ ଅନୁମୋଦନ ।

୨୭-୫-୧୯୯୨–ପୁଣ୍ୟ କବି ଜୟଦେବଙ୍କ ରଚିତ **ଗୀତ ଗୋବିନ୍ଦର** ଇଂରାଜୀ ଅନୁବାଦ ଓ ଶାରଳା ଦାସଙ୍କ ରଚିତ **ମହାଭାରତର** ହିନ୍ଦୀ ଅନୁବାଦ କରିବା ପାଇଁ ସଂସ୍କୃତି ମନ୍ତ୍ରୀ **ଶ୍ରୀ ଶରତ କରଙ୍କ** ଘୋଷଣା ।



*ଖୁର୍ଦ୍ଧା (ଚପଲପୁର)ଠାରେ ନେତାଜୀ ସୁଭାଷ ଜୟନ୍ତୀ ଉତ୍ସବରେ ସଂସ୍କୃତି ମନ୍ତ୍ରୀ ଶ୍ରୀ ଶରତ କୁମାର କର, ଅବକାରୀ ମନ୍ତ୍ରୀ ଶ୍ରୀ ପ୍ରସନ୍ନ ଆଚାର୍ଯ୍ୟ ଓ ଜଙ୍ଗଲ ମନ୍ତ୍ରୀ ଶ୍ରୀ ହରିଶ୍ଚନ୍ଦ୍ର ବକ୍ସିପାତ୍ର ।*



ସୁଗ୍ରୀବର ସା

ଛାଡ଼ି ସ୍ୱର୍ଗ ବଇକୁଣ୍ଠ, ଛାଡ଼ିମାୟା ନନ୍ଦନ ବନର
ଜଗନ୍ନାଥ ପତିତ ଜନର,
ଦେବଭୂମି, ପୁଣ୍ୟଭୂମି ସ୍ୱର୍ଗେ କିଛି ଅପ୍ରଭୁବ ଯାହା
ସେଥିପାଇଁ ମାଟିର ମରତେ ତୁମେ ବାଛି ନେଲ ରାହା
ହିମାଚଳ, ବିନ୍ଧ୍ୟମାଳା, ପୂତ–ଫଲଗୁ ଗଙ୍ଗା ଗୋଦାବରୀ
କାହାକୋଳେ ନ ବଳିଲା ମନ ବାଛିନେଲ ସିକତିଳ ପୁରୀ
ରୁକ୍ଷ ଅସୁମାରୀ ?
ରୌଦ୍ର ଦଗ୍ଧ ତପ୍ତ ବେଳାଭୂମି
ପାଇଁ ହେଲ କାମୀ ? ।।୧।।

କେତେ ଶିଳ୍ପୀ କେତେକାଳେ ଗଢ଼ିଥିଲେ ବିଶ୍ୱେ ଯା ଅତୁ
ଜଗନ୍ନାଥ ଉତ୍ତୁଙ୍ଗ ଦେଉଳ
ରତନ ବେଦୀରେ ବିଜେ ତିନିଦିଅଁ ପତରଙ୍ଗଦେମ
ମଥାପରେ ସୁବର୍ଣ୍ଣ ଲକ୍ଷ୍ମୁଆ ତଳେ ଲକ୍ଷେ ଶାଳଗ୍ରାମ
କ୍ଷୁବ୍ଧତ ସାଗର ବକ୍ଷ ଉଦ୍‌ବେଳିତ ଅଶାନ୍ତ ଲହରୀ
ଭେଦି ପରା ପାରେ ନାହିଁ ମେଘନାଦ ପାଷାଣ ପାଚେରୀ
ଧନ୍ୟ ସେହି ପୁରୀ
ବୈକୁଣ୍ଠର ପ୍ରତିରୂପ ମର୍ତ୍ତ୍ୟର ବିସ୍ମୟ
ଜଗନ୍ନାଥ ତୁମେ ଇଚ୍ଛାମୟ ।।୩।।

କଙ୍କରିତ ନୀଳାଚଳ ମହୋଦଧି ଉତ୍ତାଳ ସାଗର
ଜଗନ୍ନାଥ ! କଲ୍ଲ ଆପଣାର
ସଦେଖି ଦ୍ୱାପର ଶେଷ ଫେନାୟିତ ତରଙ୍ଗ ଦୋଳିରେ
ଦେବତା ହେ ଦାରୁରୂପେ ଆସିଥିଲ୍ଲ କଳିଙ୍ଗ ମାଟିରେ
ଅଧା ଗଢ଼ା ଗୋଡ଼ ହାତ ଅଘଟଣ ଅପୂର୍ଣ୍ଣ ବିଗ୍ରହ
ଫୁଟିଲାନି ନିହଣରେ ଶିଳ୍ପୀ ଭୁଲ ଲଭିଲେ ନିଗ୍ରହ
ଅତୀବ ଦୁରୁହ
ଦିଆଗିଲ ନିଜ କରେ ରୁକ୍ଷ କଳେବର
ବିଶ୍ୱ ବାଦିଗର ।।୨।।

କରାଳ ପ୍ରଳୟ ମୁକ୍ତ କଳ୍ପତରୁ ଅସୀମ ଅନନ୍ତ
ଜଗନ୍ନାଥ ତୁମେ କାଳାତୀତ
ଚତୁର୍ବର୍ଗ ମୋକ୍ଷଫଳ ବଢ଼ଦାଣ୍ଡ ମୁକତି ମଣ୍ଡପ
ବାଇଶି ପାହାଚ ତଳେ ତୁଟିଯାଏ ସବୁ ପାପତାପ
ଗରୁଡ଼ର ପଛେ ଥାଇ ଅନ୍ଧ ଡାକେ ହେ ପ୍ରଭୁ
ଚକାଆଖି, କଳାମୁଖ, ଅପରୂପ ତୁମେ ରୂପେ
ନୟନା ଭିରାମ
ବିଶ୍ୱ ମୋହନ କାନ୍ତି ନେତ୍ରପଥ ଗାମୀ
ନିଷ୍କପଟି ସ୍ୱାମୀ ।।୪।।

ଉଚ୍ଚତର ମଧ୍ୟ ଇଂରାଜୀ ବିଦ୍ୟାଳୟ, ରଞ୍ଜା,
ପୋଷ୍ଟ–ଢକ୍‌ଡ଼ାପାଳ,
ଜିଲ୍ଲା–ଢେଙ୍କାନାଳ–୭୫୯୦୧୩ ।



# ଭାରତୀୟ ଧାର୍ମିକ ପରିପ୍ରେକ୍ଷୀରେ ଶ୍ରୀଜଗନ୍ନାଥ

ଡଃ ଦାଶରଥି ପଣ୍ଡା

ଉତ୍କଳୀୟ ଜନତାର ଉପାସ୍ୟ ମୈତ୍ରୀଦେବ ଜଗନ୍ନାଥ ଆପଣାର ବିପୁଳ ପ୍ରଭାବରେ ସକଳ ଧର୍ମ ମତବାଦକୁ ନିଜର କରିନେଇ ଭାରତୀୟ ବୈଷ୍ଣବ ଧର୍ମ ଇତିହାସରେ ଆପଣାର ସୁବିପୁଳ ପ୍ରଭାବଶାଳୀ ଦୈବତ ମହିମାରେ ପରାକାଷ୍ଠା ପ୍ରଦର୍ଶନକରି ସକଳ ଶ୍ରେଣୀର ହିନ୍ଦୁ ଜନତାଙ୍କୁ ଆପଣାର କରି ନେଇଛନ୍ତି । ପୁଣି ଜୈନ, ବୌଦ୍ଧ, ତାନ୍ତ୍ରିକ ମତବାଦର ପ୍ରାଧାନ୍ୟ ସ୍ୱୀକୃତ ହେବା ସଙ୍ଗେ ସଙ୍ଗେ ଶୈବ, ଶାକ୍ତ, ସୌର, ଗାଣପତ୍ୟ ସଂପ୍ରଦାୟର ସଂସ୍କାର ଓ ପୋଷଣ ସମାନ ଭାବରେ ଶ୍ରୀଜଗନ୍ନାଥଙ୍କଠାରେ ସନ୍ନିବେଶିତ ହୋଇଛି । ଶଙ୍କରାଚାର୍ଯ୍ୟଙ୍କ ଉତ୍କଳାଗମନ, ବିଷ୍ଣୁସ୍ୱାମୀ, ନିମ୍ବାର୍କ, ମଧ୍ୱ, ବଲ୍ଲଭ ପ୍ରମୁଖ ଆଚାର୍ଯ୍ୟମାନେ ଏବଂ ରାମାନୁଜ, ନରହରିତୀର୍ଥ ପ୍ରମୁଖ ବୈଷ୍ଣବଧର୍ମ ପ୍ରଚାରକମାନେ ପୁରୀ ଶ୍ରୀକ୍ଷେତ୍ରକୁ ଆସି ଅଦ୍ୱୈତବାଦ, ଦ୍ୱୈତାଦ୍ୱୈତବାଦ, ବିଶିଷ୍ଟାଦ୍ୱୈତବାଦ, ଶୁଦ୍ଧାଦ୍ୱୈତବାଦ ପ୍ରଭୃତି କାଳେ କାଳେ ନାନାଧର୍ମ ଓ ଦର୍ଶନମତବାଦର ମୂଳ ଭିତ୍ତିସ୍ଥାପନ କରିଥିଲେ । ସେହିପରି ବୈଷ୍ଣବଧର୍ମକୁ ଓଡ଼ିଶାର ଜାତୀୟ ଧର୍ମରୂପେ ଏବଂ ଶ୍ରୀଜଗନ୍ନାଥଙ୍କୁ ଜାତୀୟ ଦେବତା ରୂପେ ପ୍ରତିଷ୍ଠିତ କରିବାରେ ଉତ୍କଳୀୟ ପଞ୍ଚସଖା – ବଳରାମ, ଜଗନ୍ନାଥ, ଅଚ୍ୟୁତ, ଅନନ୍ତ ଯଶୋବନ୍ତ ତଥା ଶ୍ରୀଚୈତନ୍ୟଙ୍କ ଆବିର୍ଭାବ ଓଡ଼ିଶାର ପାରମ୍ପରିକ ଧର୍ମ ଧାରଣାର ପ୍ରଚାର ଓ ପ୍ରସାରର ଭିତ୍ତିଭୂମିକୁ ସୁଦୃଢ଼ କରିଥିଲା ।

ଜଗନ୍ନାଥ ମୂଳରୁ ବୈଷ୍ଣବ ଦେବତା ନଥିଲେ । ଜଗନ୍ନାଥ ତାଙ୍କର ସରୂପ ବେଶରେ ସର୍ବ ବୁଦ୍ଧମସ୍ୱରୂପରେ ସର୍ବ ହୀନବର୍ଗଙ୍କଦ୍ୱାରା ପୂଜିତ ହେଉଥିବା ବିଷୟ ଅଷ୍ଟମ ଶତାବ୍ଦୀର ଇନ୍ଦ୍ରଭୂତିଙ୍କ 'ଜ୍ଞାନସିଦ୍ଧି' ଗ୍ରନ୍ଥରୁ ଜଣାଯାଏ । ତେଣୁ ଜଗନ୍ନାଥଥିଲେ ପ୍ରଥମେ ବୌଦ୍ଧଧର୍ମର ଆରାଧ୍ୟ ଦେବତା । ସରହପା ଓ କାହ୍ନୁପାଙ୍କ ଦୋହାକୋଷରେ ଜଗନ୍ନାଥଙ୍କ ବନ୍ଦନାରୁ ଏକଥା ପ୍ରମାଣିତ ହୁଏ । ସ୍ପୃଶ୍ୟାସ୍ପୃଶ୍ୟବିଚାର, ଜାତିଭେଦ ପ୍ରଭୃତି ବୁଦ୍ଧରୂପୀ ଶ୍ରୀଜଗନ୍ନାଥଙ୍କଠାରେ ନଥିଲା । ବୌଦ୍ଧ ଧର୍ମାବଲମ୍ବୀମାନେ ଶୂନ୍ୟର ଉପାସକଥିଲେ । ତେଣୁ ପରମ୍ପରାର ବିଶ୍ୱାବସୁ–ଶବର ପୂଜିତ 'ନୀଳମାଧବ'ରେ ମଧ୍ୟ ଶୂନ୍ୟରୁ ସୃଷ୍ଟି ଧାରଣାଟି ପ୍ରଚଳିତ ଥିଲା । ସୁତରାଂ ଜଗନ୍ନାଥଙ୍କୁ "ପ୍ରବୁଦ୍ଧ ବୁଦ୍ଧ ଅବତାର" ରୂପେ ଗ୍ରହଣ କରି, ତାଙ୍କର ବାହୁଛାୟାତଳେ ବୌଦ୍ଧଧର୍ମ ଓ ଆଧ୍ୟାତ୍ମିକ ଭାବନା ଏକଦିଗରେ ଆତ୍ମରକ୍ଷା ପାଇଁ ଯେପରି ଚେଷ୍ଟାକରିଥିଲା, ଅପର ଦିଗରେ ସେହିପରି ଅବୌଦ୍ଧ ବ୍ରାହ୍ମଣ୍ୟଧର୍ମ ସହିତ ସମନ୍ୱିତ ହୋଇ ସେଥିରେ ନିମଜ୍ଜିତ ହୋଇ ପଡ଼ିଥିଲା । ତେବେ ଜଗନ୍ନାଥ କେବେ ବୈଷ୍ଣବୀୟ ଆଖ୍ୟା ଲାଭକଲେ ତାହା ବିଚାରଣୀୟ ।

ଏକାଦଶ ଶତାବ୍ଦୀରେ ଗଙ୍ଗବଂଶର ସମ୍ରାଟ ଚୋଡ଼ଗଙ୍ଗ ଦେବଙ୍କର ଉତ୍କଳ ଅଧିକାର ପରେ ତାଙ୍କର ଅନୁସୃତ ଧର୍ମ ମତବାଦରେ ପରିବର୍ତ୍ତନ ଘଟିଥିବା ଇତିହାସରୁ ଜଣାଯାଏ । ପୂର୍ବରୁ ସେଥିଲେ 'ପରମ ମାହେଶ୍ୱର' କିନ୍ତୁ ଏବେ ହେଲେ 'ପରମବୈଷ୍ଣବ' । ଏହା ସମ୍ଭବଥିଲା ତାଙ୍କର ଧର୍ମଗୁରୁ ରାମାନୁଜାଚାର୍ଯ୍ୟଙ୍କ ପ୍ରଭାବ ଫଳରେ । ରାମାନୁଜଥିଲେ ଦକ୍ଷିଣ ଭାରତର ଅଲବାର ସମ୍ପ୍ରଦାୟର ଜଣେ ବିଶିଷ୍ଟ ଆଚାର୍ଯ୍ୟ । ତାଙ୍କରି ନିର୍ଦ୍ଦେଶରେ ସମ୍ଭବତଃ ଚୋଡ଼ଗଙ୍ଗ ଦେବ (ପୁରାଣର ଇନ୍ଦ୍ରଦ୍ୟୁମ୍ନ) ବିଶ୍ୱାବସୁ ଶବର ପୂଜିତ ନୀଳମାଧବଙ୍କୁ ଆଣି ପୁରୀ କ୍ଷେତ୍ରରେ ବୈଷ୍ଣବଦେବତା ଭାବରେ ପ୍ରତିଷ୍ଠା କଲେ ଏବଂ ଜଗନ୍ନାଥଙ୍କର ସୁନ୍ଦର ପ୍ରାସାଦ ନିର୍ମାଣ କଲେ । ଶ୍ରୀ ଜଗନ୍ନାଥ ସଂପୂର୍ଣ୍ଣ ବୈଷ୍ଣବଦେବତାରୂପେ ପ୍ରତିଷ୍ଠିତ ହୋଇଥିଲେ ମଧ୍ୟ ତଥାପି ମୂଳରୁ ବୌଦ୍ଧଧର୍ମ ପ୍ରଭାବ ଫଳରେ ତାଙ୍କଠାରେ ଯେଉଁ ଶୂନ୍ୟ ଧାରଣା, ଯେଉଁ ତାନ୍ତ୍ରିକ ମତବାଦ, ଯେଉଁ ଭୈରବୀ ଚକ୍ର ନିହିତ ଥିଲା, ସେସବୁ ବୈଷ୍ଣବ ଧର୍ମଗୁରୁ ରାମାନୁଜଙ୍କର ସତଚେଷ୍ଟା ସତ୍ତ୍ୱେ ତିରୋହିତ ହୋଇ ପାରିଲା ନାହିଁ । ଜଗନ୍ନାଥ ବୈଷ୍ଣବ ଦେବତାରୂପେ ସେହିକାଳରୁ ପୂଜା ପାଉଥିଲେ ମଧ୍ୟ ତାଙ୍କର ବୌଦ୍ଧରୂପ ଓ ତାନ୍ତ୍ରିକ ପ୍ରକୃତି ଯାହାର ପରିପତିସ୍ୱରୂପ ମହାପ୍ରସାଦର ପ୍ରଚଳନ ହୋଇଅଛି। ଜଗନ୍ନାଥଙ୍କ ବିଗ୍ରହରେ ଓ ପୂଜା ପଦ୍ଧତିରେ ସମ୍ପୂର୍ଣ୍ଣରୂପେ ପ୍ରତିଫଳିତ ହୋଇଅଛି ।

ସେହିପରି ଜଗନ୍ନାଥଙ୍କୁ ସମ୍ପୂର୍ଣ୍ଣ ହିନ୍ଦୁତ୍ୱ ତଥା ବୈଷ୍ଣବୀୟ କରିବାରେ ପଞ୍ଚଦଶ ଶତାବ୍ଦୀର କବି ସାରଳା ଦାସଙ୍କ ମତ ବିଶେଷ

ଉଲ୍ଲେଖଯୋଗ୍ୟ । ତାଙ୍କର ବର୍ଣ୍ଣନାନୁସାରେ ଶ୍ରୀକୃଷ୍ଣ ଶିଆଳିଲଟାରେ ଦୋଳି ଖେଳୁଥିଲେ । ମୃଗ ଜ୍ଞାନରେ ଯରା ଶବର ତାଙ୍କୁ ଶରବିଦ୍ଧ କଲା । ସେଥିରେ ଶ୍ରୀକୃଷ୍ଣଙ୍କର ପ୍ରାଣନାଶ ହେଲା । ସମୁଦ୍ର ତୀରରେ ଅର୍ଜ୍ଜୁନ ତାଙ୍କର ଶେଷକ୍ରିୟା ସମ୍ପାଦନ କଲେ । ମାତ୍ର ଅଗ୍ନିଦାହ ବେଳେ ଶ୍ରୀକୃଷ୍ଣଙ୍କ ମାଦଳା ନିଆଁରେ ପୋଡ଼ିଲା ନାହିଁ । ତେଣୁ ସେ ମାଦଳାକୁ ଗୋଟିଏ ସିନ୍ଦୁକରେ ପୂରାଇ ସମୁଦ୍ରରେ ଭସାଇ ଦେଲେ । ସିନ୍ଦୁକଟି ଭାସି ଭାସି ଆସି ପୁରୀ କୂଳରେ ଲାଗିଲା । ରାଜା ଇନ୍ଦ୍ରଦ୍ୟୁମ୍ନଙ୍କୁ ସ୍ୱପ୍ନାଦେଶ ହେବାରୁ ସେ ସିନ୍ଦୁକରୁ ମାଦଳାଆଣି ଜଗନ୍ନାଥଙ୍କ ଦାରୁ ବିଗ୍ରହ ତିଆରି କରାଇ ତାହା ମଧ୍ୟରେ ମାଦଳାଙ୍କ ଅବଶେଷ ରଖି ଜଗନ୍ନାଥଙ୍କୁ ବିଷ୍ଣୁ ରୂପରେ ପ୍ରତିଷ୍ଠା କଲେ । ଏହି ଧାରାରେ ପରେ ପୁଣି ଅନ୍ୟ ଜଣେ କବି ପଦ୍ୟରେ 'ଦେଉଳ ତୋଳା' ପୁଆଣି ଲେଖିଛନ୍ତି । ଜଗନ୍ନାଥଙ୍କ ଦାରୁ ବିଗ୍ରହ କଥାକୁ ସମର୍ଥନ କରି ବୈଷ୍ଣବ କବି ଜୟଦେବ ଦଶାବତାର ସ୍ତୋତ୍ରରେ ଜଗନ୍ନାଥଙ୍କୁ ବିଷ୍ଣୁଙ୍କର ବୌଦ୍ଧ ଅବତାର ବୋଲି ଉଲ୍ଲେଖ କରି ଅଛନ୍ତି ଏବଂ ସମ୍ଭବତଃ ସେହି କାଳରୁ ଜଗନ୍ନାଥଙ୍କ ଦାରୁ ବିଗ୍ରହ ମଧ୍ୟରେ ଗୋପନୀୟ ଥିବା ବସ୍ତୁଟି ବୁଦ୍ଧଦେବଙ୍କର ଦାମନଜ ଦାନ୍ତ ବୋଲି ଗୋଟିଏ ବିଶ୍ୱାସ ପ୍ରଚଳିତ ରହି ଆସିଅଛି ।

ପଞ୍ଚସଖାଯୁଗ 'ଓଡ଼ିଆ ସାହିତ୍ୟ ଇତିହାସରେ ଏହିଭଳି ଏକ ପୁଣ୍ୟମୟପର୍ବ ଯେତେବେଳେ ଏ ସାହିତ୍ୟର ଧାରା କୂଳପ୍ଲାବନ କରିବାର ଆପଣୌରବରେ ଗରୀୟାନ ହୋଇଉଠିଲା, କେବଳ କାବ୍ୟ ସାହିତ୍ୟରେ ଇତିହାସରେ ନୁହେଁ, ପରନ୍ତୁ ଓଡ଼ିଶାର ରାଜନୈତିକ ଓ ସାମାଜିକ ଜୀବନରେ ମଧ୍ୟ ଏକ ବିରାଟ ପରିବର୍ତ୍ତନର ସୂତ୍ରପାତ କରି ଏ ଯୁଗର ଅଭ୍ୟୁଦୟ ଘଟିଲା । ଗଜପତି ପୁରୁଷୋତ୍ତମଦେବଙ୍କ ରାଜତ୍ୱ କାଳରେ ଓଡ଼ିଶାର ସାମାଜିକ, ରାଜନୈତିକ ଇତିହାସରେ ବହୁ ଲୌକିକ ରୀତିନୀତି ଓ ଆଚ୍ଚାର ବିଶ୍ୱରର ଉଭବସଚି ଉତ୍କଳୀୟ ସଂସ୍କୃତିକୁ ବ୍ୟାପକ ଭିତ୍ତିରେ ପ୍ରତିଷ୍ଠାକରି ପାରିଥିଲା । ତାଙ୍କ ପୁଅ ଗଜପତି ପ୍ରତାପରୁଦ୍ରଦେବ ଏହି ଧାରାର ସମ୍ପାଦନରେ ଆତ୍ମନିୟୋଗ କରିଥିଲାବେଳେ ଉତ୍କଳୀୟ ପଞ୍ଚସଖା ବଳରାମ, ଜଗନ୍ନାଥ, ଅଚ୍ୟୁତ, ଅନନ୍ତ, ଯଶୋବନ୍ତଙ୍କର ଆବିର୍ଭାବ ଓ ସେମାନଙ୍କ ସହିତ ପୁରୀ କ୍ଷେତ୍ରରେ ଶ୍ରୀଚୈତନ୍ୟଙ୍କ ଯୋଗଦାନ ଓଡ଼ିଶାର ସଂସ୍କୃତି ଓ ଧର୍ମ ଧାରାରେ ଏକ ମହାନ୍ ତ୍ରିବେଣୀ ସଙ୍ଗମବୋଲି କହିବାକୁ ହେବ । ଓଡ଼ିଶାରେ ପରମ୍ପରାକ୍ରମେ ଚଳିଆସୁଥିବା ଧର୍ମ ମତବାଦ ଓ ସେ ସବୁର ଅପୂର୍ବ ସଂଶ୍ଳେଷଣ ପଞ୍ଚସଖା–ଧର୍ମ ମତବାଦ, ଦର୍ଶନଠାରୁ ସାହିତ୍ୟ ପର୍ଯ୍ୟନ୍ତ ଯଥାଯଥ ଭାବରେ ଆତ୍ମ ପ୍ରକାଶ କରିଥିବା ଦେଖାଯାଏ । ଭାରତୀୟ ବୈଷ୍ଣବଧର୍ମ ମତବାଦ ଓ ଦର୍ଶନର ଇତିହାସରେ ଉତ୍କଳୀୟ ପଞ୍ଚସଖାଙ୍କର ପ୍ରବର୍ତ୍ତିତ ଶ୍ରୀଜଗନ୍ନାଥ କେନ୍ଦ୍ରିକ ବୈଷ୍ଣବ ମତବାଦର ସ୍ୱାତନ୍ତ୍ର୍ୟ ଓ ମୌଳିକତା ନାନାଭାବରେ ଓ ନାନାଦିଗରେ ପରିଦୃଷ୍ଟ ହୁଏ ।

ପଞ୍ଚସଖା ସାହିତ୍ୟରେ କାୟା ସାଧନ କରିବା ପାଇଁ ଅନେକ ଯୌଗିକ ପ୍ରକ୍ରିୟାର ଉଲ୍ଲେଖ ରହିଅଛି । ନାଡ଼ି ଯୋଗ ବା ଷଡ଼ଚକ୍ର ଭେଦନ ଦ୍ୱାରା ଜୀବର ସିଦ୍ଧିଲାଭ କଳ୍ପନା କରାଯାଇଥିଲେ ମଧ୍ୟ ଯମନିୟମ ଆସନ ପ୍ରାଣାୟାମ, ପ୍ରତ୍ୟାହାର, ଧ୍ୟାନ, ଧାରଣା, ସମାଧି ପ୍ରଭୃତି ରାଜ ଯୋଗର ଚିତ୍ତ ସଂଯମ ପ୍ରଣାଳୀ ସୃଷ୍ଟିର ବ୍ୟାପକ ଉଲ୍ଲେଖ ରହିଅଛି । ବିଶ୍ୱ ବ୍ରହ୍ମାଣ୍ଡରେ ଯେଉଁ ସବୁ ଉପାଦାନ ରହିଅଛି, ମନୁଷ୍ୟର ପିଣ୍ଡ ମଧ୍ୟରେ ସେହି ସବୁ ଉପାଦାନ ବିଦ୍ୟମାନ । ଶରୀରକୁ ବିଶ୍ୱର ପ୍ରତୀକ ବୋଲି ବିଚାର କରାଯାଇଛି । ଆହୁରି ମଧ୍ୟ ଜ୍ଞାନ ମାଧ୍ୟମରେ ମୁକ୍ତିର ମିଳିଥାଏ । ସାଧକର ଚିତ୍ତ, ଆସନ ପ୍ରାଣାୟାମ ପ୍ରଭୃତି ଯୌଗିକ ପ୍ରକ୍ରିୟାରେ ସଂଯତହେଲାପରେ ଶାସ୍ତ୍ର ଚର୍ଚ୍ଚା ଓ ସାଧୁସଙ୍ଗ ଦ୍ୱାରା ଜ୍ଞାନ ଜାତହୁଏ । ଏହି ଜ୍ଞାନରୁ ଭାବ ଓ ଭାବରୁ ଭଗବତ୍ ଭକ୍ତିର ଉଦ୍ରେକ ହୁଏ । ସଂପୂର୍ଣ୍ଣ ଜ୍ଞାନ–ଗମ୍ୟଭାବରେ ନିତ୍ୟ ରାଧା କୃଷ୍ଣଙ୍କର ବର୍ଣ୍ଣନା ମଧ୍ୟରେ ଶୂନ୍ୟ ବାଦର ପରିଚୟକୁ ପ୍ରକଟିତ କରିବା ଦ୍ୱାରା ସେମାନେ ଜ୍ଞାନମିଶ୍ରା ଭକ୍ତି ଧର୍ମର ପ୍ରସାର ଘଟାଇଛନ୍ତି ବୋଲି ମନେହୁଏ । ଷଡ଼ଚକ୍ର ଓ ଭେଦନ ଦ୍ୱାରା ଲଲାଟ ଚକ୍ରରେ ପ୍ରବେଶ କଲେ ରାଧାକୃଷ୍ଣ ପ୍ରାପ୍ତି ସମ୍ଭବ ବୋଲି କୁହାଯାଇଛି । ଉତ୍କଳୀୟଙ୍କ ମତରେ ଶ୍ରୀକ୍ଷେତ୍ର ବିହାରୀ ଜଗନ୍ନାଥ ଷୋଳକଳାରେ ପରିପୂର୍ଣ୍ଣ ଅବତାରୀ, ପୁରୁଷୋତ୍ତମ କ୍ଷେତ୍ର ନିତ୍ୟକ୍ଷେତ୍ର ନାମରେ କଥିତ । ଏପରିକି ଅନ୍ୟ କ୍ଷେତ୍ରମାନଙ୍କର ଉତ୍ପତ୍ତି ଏଠାରୁ ସାଧିତ ହୋଇଅଛି ବୋଲି ସେମାନଙ୍କର ମତ । ଯୋଗ ବଳରେ ଷଟ୍‌ଚକ୍ର ଭେଦକରି ପରଂବ୍ରହ୍ମଙ୍କୁ ଉପଲବ୍ଧି କରିବାର ଉପାୟ ଏବଂ ନାମକୀର୍ତ୍ତନ ଓ ଯୋଗମୂଳକ ଧ୍ୟାନ ସମାଧିର ଆବଶ୍ୟକତା ସେମାନଙ୍କର ରଚନାରେ ବିସ୍ତୃତ ଭାବେ ବର୍ଣ୍ଣିତ ହୋଇଅଛି । ପଞ୍ଚସଖାଗଣ କଳି–ସନ୍ତରଣୋପନିଷଦର ଅନୁସରଣରେ 'ହରେରାମ' ମନ୍ତ୍ରକୁ ଗ୍ରହଣ କରିଥିଲେ । ରାଧାକୃଷ୍ଣ ଉଭୟଙ୍କ ପ୍ରାଧାନ୍ୟରେ ଯୁଗଳ ଗାୟତ୍ରୀର ପରିକଳ୍ପନା ଏମାନଙ୍କର ବିଶେଷତ୍ୱ । ଅନ୍ୟପକ୍ଷରେ ଚୈତନ୍ୟ ପନ୍ଥୀମାନଙ୍କର ଅବତାରୀ ଶ୍ରୀକୃଷ୍ଣ, କ୍ଷେତ୍ର ବୃନ୍ଦାବନ, ଭକ୍ତି ବିଶୁଦ୍ଧ ପ୍ରେମ, ପ୍ରୀତି ପରକୀୟା, ମହାମନ୍ତ୍ର ହରେକୃଷ୍ଣ, ଗାୟତ୍ରୀ କାମ ଗାୟତ୍ରୀ । ଚୈତନ୍ୟ ପନ୍ଥୀମାନଙ୍କର ମୂଳଗ୍ରନ୍ଥ ହେଉଛି 'ଭାଗବତ' । କିନ୍ତୁ ଉତ୍କଳୀୟ ପଞ୍ଚସଖାଙ୍କର ପ୍ରବର୍ତ୍ତିତ ଧର୍ମଗତ ଓ ଦର୍ଶନର ମୂଳଗ୍ରନ୍ଥ ରୂପେ କୋଣସି ଗୋଟିଏ ଗ୍ରନ୍ଥକୁ ଦେଖାଇ ଦେବା ସମ୍ଭବ ନୁହେଁ । ବସ୍ତୁତଃ ସୃଷ୍ଟିତତ୍ତ୍ୱ ବା ସୃଷ୍ଟି ରହସ୍ୟ ପଞ୍ଚସଖା ଧର୍ମ ଧାରଣାର ଏକ ଉଲ୍ଲେଖଯୋଗ୍ୟ ବୈଶିଷ୍ଟ୍ୟ । ଅଣାକାର ନିର୍ଗୁଣ ଅନାଦିବ୍ରହ୍ମ ଓ ନିର୍ଗୁଣ ପୁରୁଷ ରୂପେ ସେ ଅନାଦି ପୁରୁଷଙ୍କୁ ପଞ୍ଚସଖା ସାହିତ୍ୟରେ ବିଭିନ୍ନ ନାମରେ ନାମିତ କରାଯାଇଥିଲେ ମଧ୍ୟ ସେ ହେଉଛନ୍ତି ବିଶୁଦ୍ଧ ଶୂନ୍ୟ ପୁରୁଷ । ଏହି ଅଣାକାର ପୁରୁଷ ନିତ୍ୟକୃଷ୍ଣ ଓ ନିତ୍ୟରାଧା ଉଭୟ ସୁଗୁଣ ଓ ନିର୍ଗୁଣ ଭାବରେ ପଞ୍ଚସଖାଙ୍କ ଦ୍ୱାରା ଉପାସିତ ହୋଇଅଛନ୍ତି । ସେହି ସୂତ୍ରରେ ନାମତତ୍ତ୍ୱ, ଧାମତତ୍ତ୍ୱ ବଟିଶି ଅକ୍ଷରତତ୍ତ୍ୱ ପ୍ରଭୃତି ବହୁ ତାତ୍ତ୍ୱିକ ବ୍ୟାଖ୍ୟାନର ନିବିଡ଼ ଆଲୋଚନା ମଧ୍ୟରେ ବିଶୁଦ୍ଧ ସାହିତ୍ୟର ସଂସ୍କାର ମୁକ୍ତ ଆଲୋଚନା । ବଳରାମଙ୍କ ମନ୍ତ୍ର ଥିଲା କୃଷ୍ଣମନ୍ତ୍ର, ଜପ ଥିଲା ଅଜପା, ନାମ ଥିଲା ତାରକ । ଜଗନ୍ନାଥଙ୍କ ମନ୍ତ୍ରଥିଲା ରାଧାମନ୍ତ୍ର, ଜପଥିଲା ଅଣାକାର ଏବଂ ନାସା ଊର୍ଦ୍ଧ୍ୱରୁ କେଶପାଏ ପ୍ରସାରିତ ତିଳକ ଚିହ୍ନ । ନାମ ଥିଲା ହରିମନ୍ଦିର । ଅଚ୍ୟୁତାନନ୍ଦଙ୍କର ମନ୍ତ୍ରଥିଲା ରାଜମନ୍ତ୍ର, ଜପଥିଲା ଶୂନ୍ୟ ସମାଧି । ଯଶୋବନ୍ତଙ୍କର ମନ୍ତ୍ରଥିଲା ଶ୍ୟାମମନ୍ତ୍ର, ଜପ ଥିଲା ଅବନା ଓ ସେ ନାସାଗ୍ର ତିଳକ ଗ୍ରହଣ କରିଥିଲେ । ଅନନ୍ତଙ୍କର ମନ୍ତ୍ରଥିଲା ଗୋପାଳମନ୍ତ୍ର

ରହିଥିଲା ଏକାକ୍ଷର ଓ ତିଳ ନଥିଲା ଊର୍ଦ୍ଧ୍ୱ ପୁଣ୍ଡରୀକ । ଏସବୁ ବିଷୟରେ ଅଚ୍ୟୁତାନନ୍ଦଙ୍କ 'ଗୁରୁ ଭକ୍ତିଗୀତା'ର ବର୍ଣ୍ଣନା ପ୍ରମାଣ ଦେଇ ହୁଏ । ମାତ୍ର ଏହି ଆପାତ ବିଭେଦ ମଧ୍ୟରେ ପାଞ୍ଚଜଣ ସାଧକଙ୍କର ଲକ୍ଷ୍ୟ ଓ ଉପାସ୍ୟର ଏକତା ଓ ଅଭିନ୍ନତା ଲକ୍ଷ୍ୟ କରିବାର କଥା ।

ପଞ୍ଚସଖା ଯୁଗର ରଚନା ମୁଖ୍ୟତଃ ଆଧ୍ୟାତ୍ମିକ ଓ ଲୌକିକ ଭାବ ସମ୍ବଳିତ ଶ୍ରୀଜଗନ୍ନାଥଙ୍କୁ କେନ୍ଦ୍ର କରି ଗଢ଼ି ଉଠିଥିବା ଜ୍ଞାନମିଶ୍ରା ଭକ୍ତି ବୈଷ୍ଣବ ଧର୍ମର ଆଶ୍ରୟରେ ଭାଷା ଓ ସାହିତ୍ୟର ନବଜନ୍ମ ପ୍ରକୃତରେ ଯଥାର୍ଥ ଇତିହାସର ବିସ୍ତାରରେ ଏକ ଯୁଗାନ୍ତକାରୀ ଘଟଣା । ଶ୍ରୀଚୈତନ୍ୟଙ୍କର ଉତ୍କଳ ଗମନ ଓ ସେହି ସୂତ୍ରରେ ରାଗାନୁଗା ପ୍ରେମଧର୍ମର ପ୍ରସାର ଫଳରେ ଓଡ଼ିଆ ଭାଷା ଓ ସାହିତ୍ୟର ପ୍ରଗତି ତ୍ୱରାନ୍ୱିତ ହୋଇଥିବା ଜଣାଯାଏ । ବସ୍ତୁତଃ ବହିର୍ଭୂତ ଧର୍ମ ମତବାଦର ସମନ୍ୱୟ ସାଧନାରେ ଏ ଯୁଗର କବିମାନଙ୍କ ଭୂମିକା ବିଶେଷ ଗୁରୁତ୍ୱପୂର୍ଣ୍ଣ ହୋଇଉଠିଥିଲା । ଲୋକ ଜୀବନର ଅନୁକୂଳ ଭାବରେ ଏକ ଶକ୍ତିଶାଳୀ ସାହିତ୍ୟ ସୌଧ ନିର୍ମାଣ ଏ ଯୁଗରେ ହିଁ ପରିପୂର୍ଣ୍ଣତା ଲାଭ କରିଥିଲା । ପୁରାଣ ଶୈଳୀର ଭୂୟୋ ବିକାଶ ସହିତ ନାନାଧରଣର ଶିଳ୍ପ ସନ୍ଦର୍ଭ, ସଂହିତା, ମାଳିକା ଚୌତିଶା, ଭଜନ ଜଣାଣ ବୋଇଲି ପ୍ରଭୃତି ଆଙ୍ଗିକର ଯଥାଯଥ ବିକାଶ ଏ ଯୁଗର ଯଥାର୍ଥ ମହତ୍ତ୍ୱ ସୂଚିତ କରିଥାଏ । ପୁଣି ପୁରାଣର ନିର୍ମୋନିତ୍ୟୋଗକରି ଧୀରେଧୀରେ କାବ୍ୟଚେତନାର ନିପୁଣତା ପ୍ରତି ଏ ଯୁଗର କାବ୍ୟସ୍ରଷ୍ଟାମାନଙ୍କର ପ୍ରବଣତା ଗତିଶୀଳ ହୋଇଥିବାର ଦେଖାଯାଏ । ତେଣୁ କାବ୍ୟ ସାହିତ୍ୟରେ ଧର୍ମ ଚେତନାର ସ୍ୱରଥିଲା ବିଶେଷ ଉଦାର । ଏ ଯୁଗର ଶେଷ ଭାଗରେ ରଚିତ ଶୁଦ୍ଧ ପ୍ରେମାଖ୍ୟାନକ କାବ୍ୟ ସମୂହରେ ଉପାସ୍ୟ ଦେବାଦେବୀ ସଚେତନତ ଏବଂ ସେଥିସହିତ ରାଧାକୃଷ୍ଣ ଓ ରାମ ସୀତାଙ୍କର ପ୍ରେମଚିତ୍ର ପ୍ରଦାନରେ ଯଥାକ୍ରମେ ପରକୀୟା ଓ ସ୍ୱକୀୟାର ସାମାଜିକ ସଂଭ୍ରମରେ ଏ ଯୁଗର କାବ୍ୟ କୃତିମାନ ସୃଷ୍ଟିତ ହୋଇପଡ଼ିଥିଲା ପରି ମନେ ହୁଏ । ତଥାପି ରାଧାକୃଷ୍ଣ ପ୍ରେମଲୀଳାର ପରକୀୟା ପରିସ୍ଥିତି ପ୍ରତି କବିଗଣ ଧୀରେ ଧୀରେ ଅକୁଣ୍ଠ ଥିଲାଭଳି ପ୍ରତୀତ ହୁଏ । ଏସବୁ ସତ୍ତ୍ୱେ ଏ ଯୁଗର ସାହିତ୍ୟ ସାଧନ ମଧ୍ୟରେ ଜନସାଧାରଣଙ୍କର ଆଶା–ଆକାଙ୍କ୍ଷାର ଯଥାର୍ଥ ପରିପୂରକ ଭାବରେ ସାହିତ୍ୟ କର୍ମକୁ କବିଗଣ ସମ୍ମାନିତ ଭାବରେ ସଙ୍ଗଠିତ କରିଥିବାର ଲକ୍ଷ୍ୟ କରାଯାଏ । ଏହି ଦୃଷ୍ଟିରୁ ଏ ଯୁଗର ରସ ଚେତନାରେ ଶାନ୍ତ ରସର ଅନୁରାଗର ଅନୁପ୍ରେରଣା ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିବା ମଧ୍ୟ ଆଲୋଚନାରେ ସଞ୍ଜ ପରିଲକ୍ଷିତ ହୋଇଥାଏ ।

ଜଗନ୍ନାଥ ହେଉଚନ୍ତି ଉତ୍କଳୀୟ ଜନତାର ପରମ ଉପାସ୍ୟ ଦେବତା । ଜଗନ୍ନାଥଙ୍କୁ ଲକ୍ଷ୍ୟକରି ସମଗ୍ର ସାମାଜିକ ଚଳଣି ଗଢ଼ି ଉଠିଛି କହିଲେ ଅତ୍ୟୁକ୍ତି ହେବ ନାହିଁ । ପୁରୀ ଶ୍ରୀକ୍ଷେତ୍ର ତେତିଶି କୋଟିଦେବତାଙ୍କର ଆବାସସ୍ଥଳୀ । ଭାରତର ସମସ୍ତ କୋଣ ଅନୁକୋଣରୁ ସାଧୁ ସନ୍ଥ ପୁରୀ ଶ୍ରୀକ୍ଷେତ୍ରକୁ ଆସି ସେମାନଙ୍କର ଦର୍ଶନରଭିତ୍ତି ଭୂମି ସ୍ଥାପନ କରିଥିଲେ । ଜଗନ୍ନାଥ ହେଉଛନ୍ତି ଅବତାରୀ ପୁରୁଷ । ତେଣୁ ସମସ୍ତ ଦେବତା ତାଙ୍କଠାରେ ଲୀନ ହୋଇଛନ୍ତି । ବିଭିନ୍ନ ଧର୍ମାବଲମ୍ବୀର ସନ୍ଥ ପୁରୁଷ ଜଗନ୍ନାଥଙ୍କୁ ପୂଜା ଅର୍ଚ୍ଚନା କରି ସେମାନଙ୍କର ମନସ୍କାମନା ପୂରଣ କରୁଥିଲେ । ଯଥାର୍ଥରେ ଶଙ୍କରାଚାର୍ଯ୍ୟ ଲେଖିଥିଲେ–

ତଥ୍ୟଂସ୍ୱଂ ବଦନ୍ତି ଶିବତମ ବହିବେ ଚିଦନ୍ୟେ
ଶକ୍ତିଂ ଗଣେଶମେ୍‌ ପରେ ସ୍ତୁ ଦିବାକରଂ ବୈ
ରୂପୈସ୍ତୁତୈ ରଜବିଭା ସିବତଃ ସ୍ୱମେବ
ତସ୍ମାତ୍ତ୍ୱମେବ ଶରଣଂ ମମ ଦୀନବନ୍ଧୋ ।

ଜଗନ୍ନାଥଙ୍କ ବାର ମାସରେ ତେର ଯାତ ଏଥିରୁ ଅନୁମାନ କରିପାରିବ । ଜଗନ୍ନାଥଙ୍କୁ ଲକ୍ଷ୍ୟକରି ଓଡ଼ିଶାର ସକଳ ବୈଭବ ପରିଦୃଷ୍ଟ ହୁଏ । ଏ ପରିକି ଜଗନ୍ନାଥ ବିନା କାହାରିକୁ ମୁକ୍ତି ମିଳି ପାରିବ ନାହିଁ । ତେଣୁ ସକଳ ସମ୍ପ୍ରଦାୟ ଜଗନ୍ନାଥଙ୍କୁ ନିଜର କରି ନେଇଛନ୍ତି । ଇତିଶମ୍ ।

---

ଛତ୍ରପୁର ।



ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ତାଙ୍କ ବାସ ଭବନରେ ମାତୃସ୍ମୃତି ଦୟା ସଦନ ଅନାଥ ବାଳକମାନଙ୍କ ସହିତ ଆଲୋଚନା କରୁଛନ୍ତି ।

# ପୁରୀ ପୌରପାଳିକା, ପୁରୀ

## ଆଗାମୀ ଦିନର ପରିକଳ୍ପନା

- ଟାଉନ୍ ହଲ୍ ନିର୍ମାଣ କାର୍ଯ୍ୟ ଆସନ୍ତା ଅଗଷ୍ଟ ମାସ ମଧ୍ୟରେ ସମ୍ପୂର୍ଣ୍ଣ ।
- ବଳଗଣ୍ଡି ଓ ପୁରୀ ହୋଟେଲ ମାର୍କେଟ କମ୍ପ୍ଲେକ୍ସର ନିର୍ମାଣ କାର୍ଯ୍ୟ ଅଗଷ୍ଟ ୧୯୯୭ ସୁଦ୍ଧା ସମାପନ ।
- ମୋତି ସାହିସ୍ଥ ମ୍ୟୁନିସିପାଲ ପାର୍କରେ ୪୭ ଲକ୍ଷ ଟଙ୍କା ବ୍ୟୟରେ ଆଗାମୀ ୨ ମାସ ମଧ୍ୟରେ କଲ୍ୟାଣ ମଣ୍ଡପର ନିର୍ମାଣ କାର୍ଯ୍ୟ ଶୁଭାରମ୍ଭ ।
- ଏକ କୋଟି ତିରିଶି ଲକ୍ଷ ଟଙ୍କା ବ୍ୟୟରେ ମ୍ୟୁନିସିପାଲ ମାର୍କେଟକୁ ଏକ ଅତ୍ୟାଧୁନିକ ତିତଳ ପ୍ରାସାଦ ବିଶିଷ୍ଟ କମ୍ପ୍ଲେକ୍ସରେ ପରିଣତ କରିବାର ପରିକଳ୍ପନା ।
- ଦସ୍ତିତାପଡ଼ା ସାହି ମାର୍କେଟ ନିକଟରେ ଏକ ସୁଲଭ ଶୌଚାଳୟ ନିର୍ମାଣ ।
- ଦସ୍ତିତାପଡ଼ା ସାହି ମାଛ, ମାଂସ ମାର୍କେଟକୁ ନରେନ୍ଦ୍ର କୋଣକୁ ସ୍ଥାନାନ୍ତର ଓ ସେଠାରେ ଏକ ନୂତନ ମାର୍କେଟର ନିର୍ମାଣ ।
- ସହରର ଶେଷ ଭାଗ ବାଲୁଖଣ୍ଡ ମୌଜାରେ ୧୦ ଏକର ବିଶିଷ୍ଟ ଜମିରେ ଏକ ଶିଳ୍ପାଞ୍ଚଳ ପ୍ରତିଷ୍ଠା କରିବା ।
- ଲକ୍ଷ୍ମୀ ବଜାର ପରିବା ମାର୍କେଟକୁ ଉତ୍ତରପାର୍ଶ୍ୱ ମଠ ମଧ୍ୟକୁ ସ୍ଥାନାନ୍ତର ।
- ସହରରୁ ମଶା ନିବାରଣ ପାଇଁ ବ୍ୟାପକ ପଦକ୍ଷେପ ଗ୍ରହଣ ।
- ସହରର ନିମ୍ନାଞ୍ଚଳରେ ବର୍ଷାଜଳ ନିଷ୍କାସନ ପାଇଁ ରାଜ୍ୟ ଓ କେନ୍ଦ୍ର ସରକାରଙ୍କ ସହାୟତାରେ ଡ୍ରେନେଜ୍ ବ୍ୟବସ୍ଥା ଗ୍ରହଣ ।
- ସହରର ପ୍ରବେଶ ପଥ ଅଠରନଳାସ୍ଥ ମୁଷା ନଈରେ ଜଳକ୍ରୀଡା ମନୋରଞ୍ଜନର ବ୍ୟବସ୍ଥା ।
- ସହରର ବସ୍ତି, ରାସ୍ତା, ଘାଟ, ନାଳ ନର୍ଦ୍ଦମାର ମରାମତି ଓ ଆବଶ୍ୟକ ସ୍ଥଳେ ନୂତନ ନିର୍ମାଣର ବ୍ୟବସ୍ଥା ।
- ସମୁଦ୍ର ବେଳାଭୂମିର ସୌନ୍ଦର୍ଯ୍ୟ ବର୍ଦ୍ଧନ ତଥା ଆକର୍ଷଣୀୟ କରିବାର ବ୍ୟବସ୍ଥା ।

**ପ୍ରଶାନ୍ତ କୁମାର ଗୁନ୍ଦ**
କାର୍ଯ୍ୟ ନିର୍ବାହୀ ଅଧିକାରୀ
ପୁରୀ ପୌରସଂସ୍ଥା, ପୁରୀ

**ମହେଶ୍ୱର ମହାନ୍ତି**
ନଗରପାଳ
ପୁରୀ ପୌରସଂସ୍ଥା, ପୁରୀ




ଡା: ସରୋଜିନୀ ଷଡ଼ଙ୍ଗୀ

ମହାବାହୁ !
ପାଦରେ ରହିଛି ଘେରି
ଶୃଙ୍ଖଳାର ବେଢ଼ି
ଲୋଭ, ମୋହ, ପ୍ରେମ ଆଉ ପ୍ରତାରଣା
ଯେତେ ସବୁ ସାମାଜିକ ନିୟମ ଶିକୁଳି
ଶବ୍ଦର ତରଙ୍ଗ ଏଠି
ଶବ୍ଦର ଅର୍ଗଳି ।
ସମ୍ପଦରେ ସୁଖମୟ
ସଂସାରର କୋଳାହଳ ବେଳେ
ତୁମକୁ ପାରିନି ଡାକି
ଖାଲିଥରେ କହିଦିଅ
କେଉଁ ନାମ ଧରି ଅବା
ତୁମକୁ ଡାକିବି ପ୍ରଭୁ !

ମିତ୍ର, କନ୍ୟା, ଜାୟା, ଜନନୀ ରୂପରେ
ବନ୍ଧା ଏଇ ସଂସାରର ବନ୍ଧନ ଭିତରେ
କେମିତି ଛୁଇଁବି କୁହ—
ପଦ୍ମପାଦ, ରତ୍ନ ସିଂହାସନ ।
ଭକ୍ତର ପରମ ବନ୍ଧୁ
ଭକ୍ତର ତ' ଭଗବାନ
ତୁମେ ଜଗନ୍ନାଥ
କେଉଁ ନିଷ୍ଠା କେଉଁ ଭକ୍ତି
କେଉଁ ଆନ୍ତରିକତାର
ଋଣୀ ହେଲା ପ୍ରଭୁ—

ନୀରବେ ରହିଲ ଶୋଇ
ବଡ଼ ଦେଉଳରେ ?
ମୋ ପାଇଁ କି ଚିରନ୍ତନ
ଶିଳା ପାଲଟିଲ—
ତୁମେ ପରା ଜଗନ୍ନାଥ
ଟାଣି ହୋଇ ଯାଅ ନିଜେ
ମମତାର ପାଟ ଦଉଡ଼ିରେ—
ନୀଳାଞ୍ଚନ ! ତୁମକୁ ପାଇବା ପାଇଁ
ଏକି ମୋର ବାରପାର ଆକର୍ଷଣ
ବିଶ୍ୱାସର ବଡ଼ ଦାଣ୍ଡ ଶରଧା ବାଲିକୁ ?
ତୁମ ରତ୍ନ ବେଦୀ ଆଉ
ରତ୍ନ ସିଂହାସନ ତଳେ
ଏତିକି କରୁଣା ମାଗେ
ବଳିଆର ଭୁଜ
ତୁମ ଦୁଇବାହୁ ଟେକି
ଥରଟେ ଆଦେଶ ଦିଅ
ମୃତ୍ୟୁ ପରେ ଜଳିଯିବି ସିଂହଦ୍ୱାରେ
ହଜି ଯିବି ସାଗରର ଅଥଳ ଢେଉରେ
ନୀଳାଞ୍ଚନ ! ଆଶ୍ଚର୍ଯ୍ୟ ଏ ପୃଥିବୀରେ
ଜୀବ ଥିବା ଯାଏ
ସମ୍ମୋହିତ କରିଦିଅ, ବାରପାର ମୋତେ
ତୁମ ଦୁଇ ଚକାଡୋଳା ଅପୂର୍ବ ଜ୍ୟୋତିରେ ।

---

*ଅଧ୍ୟାପିକା, ସ୍ତ୍ରୀରୋଗ ଓ ପ୍ରସୂତି ବିଭାଗ,*
*ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜ, କଟକ ।*





**ଡ: ବେଣୀମାଧବ ପାଢ଼ୀ**

ଓଡ଼ିଶା କଳିଙ୍ଗର ଅର୍ବାଚୀନ ନାମ ଗଙ୍ଗାନଦୀଠାରୁ ଗୋଦାବରୀ ପର୍ଯ୍ୟନ୍ତ କଳିଙ୍ଗର ସୀମାରେଖା ଥିବା କଥା ପ୍ରାଚୀନ ପୁରାଣ, ଇତିହାସ ଧର୍ମଶାସ୍ତ୍ର, ଜୈନ ଓ ବୌଦ୍ଧ ଗ୍ରନ୍ଥ ପ୍ରଭୃତି ସମସ୍ତେ ସମ ସ୍ୱରରେ ସ୍ୱୀକାର କରନ୍ତି । ଅବଶ୍ୟ ପରବର୍ତ୍ତୀ କାଳରେ ତାହାର କେତେକାଂଶ ଯୁକ୍ତ–ବିଯୁକ୍ତ ହୋଇ ଏବର 'ଓଡ଼ିଶା' ଭାବେ ପରିଚିତ ହୋଇ ଆସୁଛି । ନୋହିଲେ ସ୍ୱା' ପୂର୍ବରୁ କଳିଙ୍ଗ ଆଗଙ୍ଗା ଗୋଦାବରୀ ବିସ୍ତୃତ ଥିଲା । ଏଥିରେ ଭାରତର ଆଦିମ ଅଧିବାସୀମାନେ ବାସକରି ରହିଥିଲେ । ସେମାନଙ୍କୁ ନିଷାଦ, ଶବର, ବନ୍ଧୁ, ବନସ୍ଥ, କଳି, କଳି ପ୍ରଭୃତି ବିଭିନ୍ନ ନାମରେ ନାମିତ କରାଯାଉଥିଲା । ସେ ମଧ୍ୟରୁ 'କଳି' ନାମକ ଏକ ଶବର ଗୋଷ୍ଠୀର ଅଧ୍ୟୁଷିତ ଅଞ୍ଚଳ ଥିଲା ଏ । ତେଣୁ ଏହାକୁ 'କଳିଙ୍ଗ' କୁହାଯାଉଥିଲା । ଏଠାରେ ରହିଥିବା ଶବରମାନେ ବାସସ୍ଥାନ ଭେଦରେ ତ୍ରିବିଧ ଥିବା କଥା ତତ୍ତ୍ୱବିଦ୍‌ମାନେ କହନ୍ତି । ସୁଉଚ୍ଚ ପର୍ବତ ଶିଖରରେ ଯେଉଁମାନଙ୍କର ଅଧିଷ୍ଠାନ ଥିଲା ସେମାନେ 'ପାର୍ବତ୍ୟ', ଯେଉଁମାନେ ଅରଣ୍ୟର ଉଚ୍ଚାବଚ ଭୂମିରେ ବାସ କରି ରହିଥିଲେ ସେମାନେ 'ଆରଣ୍ୟକ' ଏବଂ ଉପକୂଳବର୍ତ୍ତୀ ସମତଳ ଭୂଭାଗରେ ବସବାସ କରି ରହିଥିବା ଶ୍ରେଣୀ 'ଓଡ଼ ଶବର' ଭାବେ ପରିଚିତ ଥିଲେ । ଏମାନଙ୍କୁ 'ଓଡ଼' କହିବାର କାରଣ ହେଲା ସେମାନେ ଥିଲେ କୃଷିଜୀବୀ । ଶବର ବା ସୌରା ଭାଷାରେ 'ଓଡ଼' କହିଲେ 'କୃଷ' । ତେଣୁ ସେମାନଙ୍କୁ 'ଓଡ଼' କୁହାଯାଉଥିଲା । ସେଇଥିରୁ ହିଁ 'ଓଡ଼ିଆ' ଶବ୍ଦର ଉତ୍ପତ୍ତି ଏବଂ ସେମାନଙ୍କ ବାସସ୍ଥଳୀ 'ଓଡ଼ିଶା' ନାମରେ ପରିଚିତ । ବାସ୍ତବରେ ସେମାନେ ଥିଲେ କିନ୍ତୁ 'ଶବର' । ଭାଷା ଥିଲା 'ଶାବରୀ' । ଏ କଥାକୁ ଷୋଡ଼ଶ ଶତାବ୍ଦୀର ମାର୍କଣ୍ଡେୟ ମିଶ୍ର 'ପ୍ରାକୃତ ସର୍ବସ୍ୱ' ଗ୍ରନ୍ଥରେ ଉଲ୍ଲେଖ କରିଛନ୍ତି । ସେ କହିଛନ୍ତି — 'ଶାବର୍ଯ୍ୟାମୌଡ୍ରୀ ଯୋଗାଦ୍ଦେଶ୍ୟ ସୌରସେନ୍ୟାଦେଶ୍ଚ' ଅର୍ଥାତ୍ ଶାବରୀ ଭାଷାରେ ସୌରସେନ୍ୟାଦି ଦେଶ୍ୟ ଶବ୍ଦ ଯୋଗରେ 'ଓଡ୍ରୀ' ଭାଷା ଉତ୍ପନ୍ନ । 'ଓଡ଼' ଶବ୍ଦର ସଂସ୍କୃତାନ୍ୱିତ ରୂପ ହେଲା 'ଓଡ୍ର': ସ୍ତ୍ରୀ ଲିଙ୍ଗରେ 'ଓଡ୍ରୀ' । ବର୍ତ୍ତମାନର ଓଡ଼ିଆ ଭାଷା ବିଶ୍ଳେଷଣ କାଳରେ ଏହାର ସତ୍ୟତା ଜଣାପଡ଼େ ।

ଭାଷାବିତ୍‌ମାନଙ୍କ ମତରେ ଓଡ଼ିଆ ଭାଷାରେ ଷ୍ଟ୍ରବିଧ ଶବ୍ଦ ପରିଦୃଷ୍ଟ । ତତ୍ସମ, ତଦ୍‌ଭବ, ଅନ୍ୟାଗତ ଓ ଦେଶ୍ୟ । ସଂସ୍କୃତ ଭାଷା ସମାନ ଶବ୍ଦାବଳୀ, ଯଥା–ମସ୍ତକ, ହସ୍ତ, ମେଘ, ଗଙ୍ଗ, ପୁତ୍ର ପ୍ରଭୃତି ତତ୍ସମ; ମଥା, ହାତ, ସୁନା, ପୁଅ, ଭଉଣୀ ପ୍ରଭୃତି ତଦ୍‌ଭବ; ମୋହରିର, ସ୍କୁଲ, ଦସ୍ତାବେଜ୍, ଓକିଲ, ଡାକ୍ତର, ଗୌଡ଼ି ପ୍ରଭୃତି ଅନ୍ୟାଗତ । ତା'ଛଡ଼ା ଗିନା, ତାଟିଆ, ଉଧାଣି, ପେଜ, ତୋଷଣି ପ୍ରଭୃତି ଶବ୍ଦ 'ଦେଶ୍ୟ' ନାମରେ ଅଭିହିତ । କିନ୍ତୁ ମନେ ରଖିବାର କଥା, ତତ୍ସମ, ତଦ୍‌ଭବ ଓ ଅନ୍ୟାଗତ ଶବ୍ଦଗୁଡ଼ିକର ମୂଳ ଯେପରି ସହଜରେ ବାରିହୁଏ ଦେଶ୍ୟ ଶବ୍ଦ ବେଳକୁ ତାହା ହୋଇପାରେ ନାହିଁ । ତେଣୁ ସେଗୁଡ଼ିକୁ 'ଅବ୍ୟୁତ୍ପନ୍ନ' ରୂପେ ପରିଚିତ କରାହୋଇଛି । କିନ୍ତୁ ପ୍ରକୃତ ପକ୍ଷେ ସେଗୁଡ଼ିକ ହିଁ ଦେଶ ପ୍ରଚଳିତ ମୂଳ ଶବ୍ଦ । ଆଦିମ ଶବ୍ଦ । ସେହି ଦେଶଜ ଶବ୍ଦରେ ପରବର୍ତ୍ତୀ ସଂସ୍କୃତ ଓ ସଂସ୍କୃତାଗତ ଶବ୍ଦ ସହିତ ଅନ୍ୟ ଭାଷାଗତ ଶବ୍ଦ ମିଶି ଓଡ଼ିଆ ଭାଷା ଉତ୍ପତ୍ତି ଲାଭ କରିଛି ବୋଲି ପ୍ରାକୃତ ସର୍ବସ୍ୱକାରଙ୍କ ମତ । ଅବଶ୍ୟ ସେ ତାହାକୁ 'ଶାବରୀ' ଭାଷା ନାମରେ ନାମିତ କରିଛନ୍ତି । ବୋଧହୁଏ, ତାହା ପ୍ରାଚୀନ ଓଡ–ଶବରଙ୍କ ଭାଷା ଥିବା ଯୋଗୁଁ ତାକୁ 'ଶାବରୀ' ଭାବେ ଗ୍ରହଣ କରି ସେ ମଧ୍ୟରେ ସୌର ସେନ୍ୟାଦି ପ୍ରାକୃତର ଅନୁପ୍ରବେଶ ଦ୍ୱାରା ଓଡ଼ିଆ ଭାଷା ସୃଷ୍ଟି ହୋଇଥିବା କଥା ସେ ସୂଚାଇଛନ୍ତି । ସେ ଦୃଷ୍ଟିରୁ ବିସ୍ତାର କଲେ ଯେଉଁ ଭାଷା ପ୍ରାକୃତ କଳିଙ୍ଗରେ ବସବାସ କରି ରହିଥିବା ଶବରଙ୍କ ମୁହଁରେ ବ୍ୟବହୃତ ହେଉଥିଲା ତାହା ହିଁ ଓଡ୍ରୀ ବା ଓଡ଼ିଆ ଭାଷା ରୂପେ ଆତ୍ମପ୍ରକାଶ କରିଛି ବୋଲି ଜଣାପଡ଼େ । ସେହି କାରଣରୁ ଦେଶଜ ଓଡ଼ିଆ ଶବ୍ଦମାନ ଅବ୍ୟୁତ୍ପନ୍ନ ହୋଇପଡ଼ିଛି ।

ଅନ୍ୟ ଏକ ଦିଗରୁ ଦେଖିଲେ ମଧ୍ୟ ଏହାର ପ୍ରାମାଣିକତା ଉପଲବ୍ଧ ହୁଏ । ଏହା ସର୍ବବାଦି ସମ୍ମତ ଯେ, ଓଡ଼ିଶାରେ ପ୍ରତିଷ୍ଠିତ 'ଜଗନ୍ନାଥ' ଆଦିମ ଯୁଗର ଶବରଙ୍କ ଦ୍ୱାରା ଉପାସିତ ହୋଇ ଆସୁଥିଲେ । ସେତେବେଳେ ସେ ଥିଲେ ଏକ ମହିମାମୟ 'ଦାରୁ' । 'ଦାରୁ' ଏକ ଆଦିବାସୀ ଶବ୍ଦ । ଅର୍ଥ–କାଠ । ଆଦିବାସୀ ଶବରଙ୍କ ଦେବତା ହେବା ଯୋଗୁଁ ବୋଧହୁଏ ତାଙ୍କୁ

ଭାଷାରେ ନାମକରଣ କରାଯାଇଥିଲା — ଦାରୁ ଦେବତା । ଯେହେତୁ ସେ ଥିଲେ କାଷ୍ଠ ସ୍ୱରୂପ । ସେହି ଦାରୁ ପର ଯୁଗର ବେଦିକ ଗ୍ରନ୍ଥରେ ମଧ୍ୟ ସ୍ଥାନ ପାଇ ଆସିଥିଲା, ଏକା ସେତିକି ନୁହେଁ, ଦାରୁ ସହିତ 'ବ୍ରହ୍ମ' ଶବ୍ଦ ଯୋଗ କରି ତାଙ୍କୁ 'ଦାରୁବ୍ରହ୍ମ' ବା 'ବ୍ରହ୍ମଦାରୁ' ମଧ୍ୟ କୁହାହୋଇ ଆସିଲା । ଅବଶ୍ୟ ତାହା କେବେ, କିପରି ଭାବେ, କାହା ଦ୍ୱାରା ସଂଘଟିତ ହୋଇଥିଲା ତାହା ଏଠାରେ ବିଚାର୍ଯ୍ୟ ନୁହେଁ । କେବଳ ଏତିକି କହିବାର କଥା — ପ୍ରଥମେ ଜଗନ୍ନାଥଙ୍କୁ 'ଦାରୁ ଦେବତା' ନାମରେ ଯେଉଁ ସମ୍ବୋଧନ କରାଯାଇଥିଲା ତାହା ଥିଲା କଳିଙ୍ଗ ଦେଶବାସୀ ଓଡ଼ ଶବରଙ୍କ ଶୁଦ୍ଧ – ଓଡ଼ିଆ ।

ଏ ପ୍ରସଙ୍ଗରେ ସୂଚେଇ ଦେବା ଉଚିତ ଯେ, ଏକା 'ଦାରୁ' ଶବ୍ଦ ନୁହେଁ ଦାରୁ ଦେବତାଙ୍କ ଚଳଣିରେ ବ୍ୟବହୃତ ଯେଉଁ ଅବ୍ୟୁତ୍ପନ୍ନ ଶବ୍ଦମାନ ଦେଖିବାକୁ ମିଳେ ସେ ସମସ୍ତ ତଦ୍ଭାମେଷ୍ଣ ଶବ୍ଦ ବୋଲି ଅନାୟାସରେ କୁହାଯାଇପାରେ । ଉଦାହରଣ ସ୍ୱରୂପ—ଖେଇ, ଖାନା, ପହଣ୍ଡି, ବାହୁଡ଼ା, ମଣୋହି, ତଡ଼ପ, ହଡ଼ପ, ଖଟଣି, ଦଉଡ଼ି, ଗଡି, ନିବାପ, ମଡ଼ିଆଲ, ଖୁଣ୍ଟିଆ, ସକ୍ଷୁଡ଼ି, ପାଳି ଇତ୍ୟାଦି । ଏସବୁ ଖାଣ୍ଟି ଓଡ଼ିଆ ଅବ୍ୟୁତ୍ପନ୍ନ ଶବ୍ଦ, ଯଦିବା ଏ ମଧ୍ୟରୁ କେତେ ଶବ୍ଦକୁ ଟାଣି ଓଟାରି ଅନ୍ୟ ଭାଷାରୁ ଆଗତ ବୋଲି କୁହାହୋଇ ଅଛି । ପ୍ରକୃତରେ ତାହା ଯଦି ସଂସ୍କୃତ ବା ଅନ୍ୟ କୌଣସି ଭାଷାର ହୋଇଥାଆନ୍ତା, ତେବେ ସେ ସବୁ ଅବିକୃତ ଭାବେ ପ୍ରଯୁକ୍ତ ହେବାର କୌଣସି ପ୍ରତିବନ୍ଧକ ନଥିଲା । ସେହି ଧରଣର ଶବ୍ଦମାନ ଯେ ପରବର୍ତ୍ତୀ କାଳରେ ଠାକୁରଙ୍କ ଚଳଣିରେ ସନ୍ନିବିଷ୍ଟ ନହୋଇଛି ନୁହେଁ । ଅବକାଶ, ନିଯୋଗ, ପ୍ରସାଦ, ପାଟିଲି, ମଣ୍ଡପ, କପଡ଼ା, କୋଇଲି ଆଳତି, ଭୋଗ, ଭଣ୍ଡାର, ପଣ୍ଡା ପ୍ରଭୃତିକୁ ଦୃଷ୍ଟାନ୍ତ ରୂପେ ନିଆଯାଇପାରେ ।

ଏଣୁ ଉଲ୍ଲିଖିତ ଉଦାହରଣମାନଙ୍କରୁ ଅନୁମିତ ହୁଏ, ଦାରୁ ଦେବତାଙ୍କ ଉପାସନା କାଳରେ ଓଡ଼ ଶବର ସମାଜରେ ପ୍ରଚଳିତ ଖାଣ୍ଟି ଓଡ଼ିଆ ଦେଶ୍ୟ ଶବ୍ଦାବଳୀ ଦ୍ୱାରା ବିଭିନ୍ନ ପଦାର୍ଥ ସେବାପୂଜା ବିଧିମାନ ସଂଘଟିତ ହୋଇ ଆସୁଥିଲା । ଉତ୍ତର କାଳରେ ଦେବତାଙ୍କ ପୂଜା କାର୍ଯ୍ୟରେ ଶବରଙ୍କ ପ୍ରାଧାନ୍ୟ କ୍ଷୁଣ୍ଣ ହୋଇ ବୈଷ୍ଣବଙ୍କ ପ୍ରବେଶ କରିବା ସଙ୍ଗେ ସଙ୍ଗେ ବଳିଷ୍ଠ ସଂସ୍କୃତ ତଥା ଅନ୍ୟ ଭାଷାର ଶବ୍ଦମାନ ସେଥିରେ ଗ୍ରଥିତ ହୋଇପଡ଼େ ଏବଂ ଅପେକ୍ଷାକୃତ ଦୁର୍ବଳ ଓଡ଼ିଆ ଶବ୍ଦଗୁଡ଼ିକ ଗୌଣ ହୋଇ ପଡ଼ନ୍ତି । ଯଥାପି ଆଦିମ ଅବସ୍ଥାରୁ ପାରମ୍ପରିକ ରୀତିରେ ଚଳି ଆସିଥିବା ହେତୁ ସେଗୁଡ଼ିକୁ ଉପେକ୍ଷା କରିବା ସମ୍ଭବ ହୋଇପାରି ନାହିଁ । ଶବର ପ୍ରତିଷ୍ଠିତ ଦେବତାଙ୍କୁ ପୁରାପୁରି ବୈଷ୍ଣବ କରାଯାଇପାରି ନାହିଁ । ଶବରବଂଶୀ ସେବକଙ୍କ ପୂଜାବିଧିକାର ସମ୍ପୂର୍ଣ୍ଣ ଭାବେ ଲୁପ୍ତ ହୋଇନାହିଁ । ସେହି କାରଣରୁ ଆଜି ଜଗନ୍ନାଥଙ୍କ ସେବାରେ ଯେତେ ଧର୍ମ ବା ସମ୍ପ୍ରଦାୟର ପ୍ରଲେପ ଦେଲେ ସୁଦ୍ଧା ତାହା ଅବିକୃତ ରହିଛି । କୌଣସି ପରିବର୍ତ୍ତନ ଘଟି ନାହିଁ । ଯାହା ବା କିଛି ଘଟିଛି ସେ ସବୁ ସେଥିରେ ଗର୍ବିତ ହୋଇପଡ଼ିଛନ୍ତି ସିନା ମୂଳ ଉପାସନାରେ ବିକୃତି ଘଟାଇପାରି ନାହାନ୍ତି । ଜଗନ୍ନାଥେ 'ଦାରୁଦେବତା' ହୋଇ ହିଁ ରହିଛନ୍ତି ।

କିନ୍ତୁ କ୍ଷୋଭର କଥା, ଏତାଦୃଶ ଶହ ଶହ ଦେଶଜ ଶବ୍ଦ ଓଡ଼ିଆ ଭାଷାରେ ବ୍ୟବହୃତ ହୋଇ ଆସୁଥିଲେ ସୁଦ୍ଧା ଭାଷାର ସ୍ୱରୂପ ନିରୂପଣ କରିବାକୁ ଗଲାବେଳେ ଆମେ ସେଗୁଡ଼ିକୁ ଗୌଣ ମନେକରି ହୁଏତ 'ଅବ୍ୟୁତ୍ପନ୍ନ' ନୁହେଁ ତ 'ଆଞ୍ଚଳିକ' ନାଁ ଦେଇ ଆପଣା କର୍ତ୍ତବ୍ୟ ଶେଷ କରି ଦେଉଛୁ' ତାହାର ସନ୍ଧାନ ନେବାରେ ଟିକେ ସୁଦ୍ଧା ଯତ୍ନବାନ ହେଉନାହୁଁ । ଅନନ୍ତସ୍ରୋତ ଶବ୍ଦାବଳୀ ଯେତେ ବଳିଷ୍ଠ ହେଉ ପଛେ ତାହାରି ଆବରଣ ମଧ୍ୟରେ ମୂଳ ଭାଷାକୁ ଗୌଣ କିମ୍ବା ତଦ୍ଭବ ବୋଲି ପ୍ରତିପାଦନ କରିବା କେତେଦୂର ଯୁକ୍ତିଯୁକ୍ତ ତାହାର ପ୍ରମାଣକୁ ଅପେକ୍ଷା ନକରି ଆମେ 'ଖଳେ କପୋତ' ନ୍ୟାୟରେ 'ଅର୍ଦ୍ଧମାଗଧୀ ପ୍ରାକୃତରୁ ଓଡ଼ିଆ ଭାଷାର ଉତ୍ପତ୍ତି' ବୋଲି ବିନା ଦ୍ୱିଧାରେ କହି ଆସୁଛୁ । କିନ୍ତୁ କେବେ ହେଲେ ଚିନ୍ତା କରୁଛୁ କି ବଡ଼ଦେଉଳର ଚଳଣି ମଧ୍ୟରେ ପ୍ରଚଳିତ ଅଗଣିତ ଓଡ଼ିଆ ଶବ୍ଦଗୁଡ଼ିକର ମୂଳ କେଉଁଠି ? କେଉଁ ଭାଷାର ଶବ୍ଦ ଏ ? ପକ୍ଷାନ୍ତରେ ନିର୍ଦ୍ଦିଷ୍ଟ କେତେକ ଶବ୍ଦକୁ ଶୁଦ୍ଧ ଓଡ଼ିଆ କହି ଇତର ପ୍ରାନ୍ତରେ ବ୍ୟବହୃତ ଅସଂଖ୍ୟ ଶବ୍ଦାବଳୀ ଆଞ୍ଚଳିକ ବା ଉପଭାଷା ବୋଲି ନିଃସଙ୍କୋଚରେ ପ୍ରମାଣ କରିବାରେ ଲାଗିଛୁ । ବାଁ—ଶୁଦ୍ଧ—ଓଡ଼ିଆ, 'ଡେବିରି'— ଆଞ୍ଚଳିକ, ପିକୁଳି—ଶୁ—ଓଡ଼ିଆ, 'ମଣ୍ଡା'—ଆଞ୍ଚଳିକ, 'କ'ଣ'—ଶୁ—ଓଡ଼ିଆ, 'କିସ'— ଆଞ୍ଚଳିକ, 'ସଳିତା'—ଶୁ—ଓଡ଼ିଆ, 'ବଳିତା'— ଆଞ୍ଚଳିକ, 'କି'— ଶୁ—ଓଡ଼ିଆ, 'କେଁ'— ଆଞ୍ଚଳିକ, 'ତୁନ୍ତୁରି'— ଶୁ—ଓଡ଼ିଆ, 'ତୋରଡ଼ା'— ଆଞ୍ଚଳିକ । ଏପରି ଭାବେ ଯଦି ଆମେ ଓଡ଼ିଆ ଶବ୍ଦଗୁଡ଼ିକର ଶ୍ରେଣୀ ବିଭାଗ ସୃଷ୍ଟି କରୁ ତେବେ ବଡ଼ ଦେଉଳରେ ବ୍ୟବହାର ହୋଇ ଆସୁଥିବା ଦେଶଜ ଶବ୍ଦଗୁଡ଼ିକୁ କେଉଁ ଶ୍ରେଣୀରେ ଅନ୍ତର୍ଭୁକ୍ତ କରିବା ? ଶୁଦ୍ଧ ନା ଆଞ୍ଚଳିକ ? କୌଣସି ସୁବିସ୍ତୃତ ରାଜ୍ୟର ପରିସୀମା ମଧ୍ୟରେ ଦୂର ଦୂରାନ୍ତର ବାସୀ ଜନସାଧାରଣଙ୍କ ମୁହଁରେ ସବୁ ଶବ୍ଦ ସମାନ ରୂପରେ ବା ସମାନ ଅର୍ଥରେ ବ୍ୟବହୃତ ହୋଇ ନଥାଏ । ତେଣୁ କ୍ରାନ୍ତଦର୍ଶୀ ମନୀଷୀଗଣ ଗୋଟିଏ ପଦାର୍ଥକୁ ବିଭିନ୍ନ ଶବ୍ଦ ଓ ଗୋଟିଏ ଶବ୍ଦକୁ ବିଭିନ୍ନ ଅର୍ଥରେ ପ୍ରଯୁକ୍ତ କରାଯାଇ ପାରିଲେ ଭାଷାର ବଳିଷ୍ଠତା ସମ୍ପାଦିତ ହୁଏ ବୋଲି କହନ୍ତି ଏବଂ ସେଥି ସଙ୍ଗେ ସଙ୍ଗେ ଯା' ବି କହିଛନ୍ତି ଯେ, ଭାଷା ମଧ୍ୟର କେତେକ ଶବ୍ଦ ବିଭିନ୍ନାର୍ଥକ ହେଲା ବୋଲି ଭାଷାକୁ ଭିନ୍ନ ବିଶ୍ଳେଷ କରିବା ଆଦୌ ଉଚିତ ନୁହେଁ । ତା'ଦ୍ୱାରା ଭାଷା ଯେପରି ଦୁର୍ବଳହୋଇପଡ଼େ ସେହିପରି ଭାଷା ଭାଷୀ ଜାତି ବି । ସଂସ୍କୃତ ଭାଷାରେ ଏକା 'ବଣ' ଅର୍ଥରେ ଅଟବୀ, ଅରଣ୍ୟ, ବିପିନ, ଗହନ, କାନନ, ବନ ପ୍ରଭୃତି ବହୁ ଶବ୍ଦ ରହିଛି । ସବୁଗୁଡ଼ିକ ଶୁଦ୍ଧ ସଂସ୍କୃତ ବୋଲି ଗୃହୀତ । ସେହି କାରଣରୁ ତାହା ଏକ ପ୍ରଭାବଶାଳୀ ଭାଷା ରୂପେ ବିଶ୍ୱ ବିଖ୍ୟାତ । ସେହି ପରିପ୍ରେକ୍ଷୀରେ ଓଡ଼ିଆ ଭାଷାରେ ଗୋଟିଏ ଫଳକୁ ବୁଝାଇବା ପାଇଁ ଯଦି ସ୍ୱଉଳିଆ, ପିଜୁଳି, ଝାମି, ମଣ୍ଡା, ଜାମ, ପେଟା ପ୍ରଭୃତି ଶବ୍ଦ ପ୍ରୟୋଗ ହୁଏ ତେବେ ସେ ମଧ୍ୟରୁ କାହାକୁ ଶୁଦ୍ଧ କାହାକୁ ଆଞ୍ଚଳିକ କହିବାରେ କି ଯୁକ୍ତି ରହିଛି ବୁଝି ହୁଏ ନାହିଁ । ବରଂ ଏହାଦ୍ୱାରା ଭାଷା ସଙ୍କୁଚିତ ହୁଏ ଏବଂ ଭାଷା ଭାଷୀଙ୍କ ମଧ୍ୟର ଏକତା କ୍ଷୁଣ୍ଣ ହୁଏ ।

ଅତଏବ ଏ ସବୁର ନିର୍ଯ୍ୟାସ ସ୍ୱରୂପ କୁହାଯାଇପାରେ, ଜଗନ୍ନାଥ ହେଉଛନ୍ତି ଶବର ଗୋଷ୍ଠୀର ଉପାସ୍ୟ । ଶବର କହିଲେ ତାଙ୍କ କଳିଙ୍ଗର ଆଦିମ ଅଧିବାସୀ; ଓଡ଼ ଶବର । ସେମାନଙ୍କ ଭାଷା ଥିଲା ଓଡ଼ିଆ । ସେହି ଭାଷାର ଶବ୍ଦ ସାହାଯ୍ୟରେ ଦେବତାଙ୍କ ପୂଜା-ସେବା ପ୍ରଚଳିତ ହୋଇ ଆସୁଥିଲା, ଯେଉଁଗୁଡ଼ିକ ବି ଏବେ ସୁଦ୍ଧା ବଡ଼ ଦେଉଳରୁ ସମ୍ପୂର୍ଣ୍ଣ ଲୁପ୍ତ ହୋଇନାହିଁ । ତାହା ହିଁ ଶାଖା-ପ୍ରଶାଖା ମେଲି ଓଡ଼ିଶାର ଚତୁଃସୀମା ମଧ୍ୟରେ କଳେବର ବିସ୍ତାର କରିଥିଲା । ସେ ସମସ୍ତ ଶବ୍ଦ ଥିଲା 'ଦେଶଜ' ଯାହାକୁ ଏବେ ଓଡ଼ିଆ ଦେଶ୍ୟ ଶବ୍ଦ ବୋଲି କୁହା ହୋଇ ଆସୁଛି, ସବୁଗୁଡ଼ିକ ହେଉଛି ଓଡ଼ିଆ-ମୂଳ ଓଡ଼ିଆ ।

ଗେଣ୍ଟୁଆଁ ସାହି,
ବ୍ରହ୍ମପୁର-୯,
ଗଞ୍ଜାମ ।



ରଣପୁରଗଡ଼ (ପୁରୀ)ରେ ରଥଯାତ୍ରା ।





ଶ୍ରୀ ଭଗବାନ ପାଢ଼ୀ


ନୀଳ ଟହ ଟହ ପାଟି, କଳା ମଚ ମଚ ମୁହଁ,
ଆହା କି ସୁନ୍ଦର ଦିଶେ ଜଗତର ବଡ଼ ଦିଅଁ !
ବଡ଼ ଦିଅଁ ହେଲେ ବି ସେ ଛୋଟଟି ରଖିଛି ଆଖି,
ଚକା ଚକା ଡୋଳାରେ ସେ ସବୁ ପାରୁଅଛି ଦେଖି ।
ହାତ ବଢ଼ାଇ ଡାକୁଛି – 'ଆସ ହେ ଭକତମିତ୍ର !
ସବୁ ସମରପି ମୋତେ......ମୋଠାରେ ଶରଣ ନିଅ ।'
ସବୁ ବଡ଼ପଣିଆରେ ବଡ଼ ଏ ଜଗତନାଥ,
ବଡ଼ ତା'ର ଏ ଦେଉଳ, 'ବାରମାସେ ତେର ଯାତ' ।
ବଡ଼ ତା'ର ସିଂହଦ୍ୱାର, ବଡ଼ ତା'ର ପୂଜା ବିଧି,
ବଡ଼ ଦୟାଶୀଳ ଯୋଗୁ ନାମ ତା'ର ଦୟାନିଧି ।
ବଡ ତା'ର ପଡାପଣ୍ଡା, ଭୋଗ ତା' ମହାପ୍ରସାଦ,
ବଡ଼ ସେବକ ତା' ରାଜା, ପାଚେରୀ ତା' ମେଘନାଦ ।
ତା' ସମୁଦ୍ର ମହୋଦଧି, ଦାଣ୍ଡ ତା'ର ବଡ଼ଦାଣ୍ଡ,
ଛତା ତା'ର ବଡ ଛତା ବାନା ଉଡ଼େ ପରକାଣ୍ଡ ।
ଐକ୍ୟ ଓ ସର୍ବ ଧର୍ମର ପ୍ରତୀକ ଶ୍ରୀଜଗନ୍ନାଥ,
ସବୁ ବଡ଼ପଣିଆର ପ୍ରମାଣ ତା' ରଥ ଯାତ ।
ସବୁରି ସେ ଚିତ୍ତଚୋର, ସବୁରି ମନମୋହନ,
ଗଳାରେ ମୁକୁତା ହାର ଦିଶୁଛି କେଡ଼େ ଶୋଭନ !
କିଏ ସିନା କାଶୀନାଥ, କେ ସିନା ଦ୍ୱାରିକାନାଥ,
ଏକି ଅଟେ ବଦ୍ରିନାଥ ଏ କାଳିଆ ଜଗତନାଥ ।
ଶରଣାଗତ—ଦୀନାର୍ତ୍ତ—ପରିତ୍ରାଣ—ପରାୟଣ,
ଅପାଣିପାଦ ବିଗ୍ରହ—ଗୋବିନ୍ଦ ଶ୍ରୀ ନାରାୟଣ ।
ଯଶୋଦାର ଗଚ୍ଛିଧନ, ନନ୍ଦର କାଳିଆ ସୁନା,
ବାଧାର ପାହାଡ଼ ଯେତେ ନିମିଷେ କରଇ ଚୁନା ।
କୀଟଠୁଁ ବ୍ରହ୍ମ ଯାଏ ସେ ଚିହ୍ନିଛି ସବୁରି ମନ,
ତେଣୁ କାଳିଆସାଆନ୍ତ ପଦକୁ ଅଟେ ଭାଜନ ।
ଆଷାଢ଼ର ଆକାଶରୁ ମେଘମାଳା ଯାଏ ନଇଁ,
ମୋ କାଳିଆସାଆନ୍ତର ବାନା ଉଡ଼େ ତାକୁ ଛୁଇଁ ।

---


*ଶିକ୍ଷକ, ଫକୀରପୁର ହାଇସ୍କୁଲ,*
*ଫକୀରପୁର–୭୫୮୦୨୨,*
*ଜିଲ୍ଲା–କେନ୍ଦୁଝର ।*




ଜଗନ୍ନାଥ ଦେଶ' ରୂପେ ସୁପରିଚିତ ଓଡ଼ିଶାର ଜନ ଜୀବନର ପ୍ରାଣକେନ୍ଦ୍ର ହେଉଛନ୍ତି ଶ୍ରୀଜଗନ୍ନାଥ, ଶ୍ରୀଜଗନ୍ନାଥ ହେଉଛନ୍ତି ଉତ୍କଳୀୟ ସାମାଜିକ, ସାଂସ୍କୃତିକ ତଥା ଆଧ୍ୟାତ୍ମିକ ଜନଜୀବନର ଧ୍ରୁବତାରା । ଜଗନ୍ନାଥଙ୍କୁ କେନ୍ଦ୍ରକରି ରଚିତ ହୋଇଛି ବିପୁଳ ଓଡ଼ିଆ ସାହିତ୍ୟ । ସାରଳା ମହାଭାରତଠାରୁ ଆରମ୍ଭ କରି ଆଧୁନିକ ଯୁଗ ପର୍ଯ୍ୟନ୍ତ ଯେତେ ଭକ୍ତି ରସାତ୍ମକ ସାହିତ୍ୟ ସୃଷ୍ଟି ହୋଇଛି, ସେ ସବୁଥିରେ ଜଗନ୍ନାଥ ହିଁ କେନ୍ଦ୍ରବିନ୍ଦୁ ରୂପେ ପରିକଳ୍ପିତ ହୋଇଛନ୍ତି । ତେଣୁ ଓଡ଼ିଆ ସାହିତ୍ୟରେ ଜଗନ୍ନାଥଙ୍କ ପ୍ରଭାବ ସହଜରେ ଅନୁମେୟ । (୧)

ସାରଳା ଦାସ ପ୍ରଚଣ୍ଡ କବିତ୍ୱ ଓ ପ୍ରତିଭା ବଳରେ ଶ୍ରୀକୃଷ୍ଣଙ୍କ ପିଣ୍ଡ ଶ୍ରୀଜଗନ୍ନାଥଙ୍କଠାରେ ଆରୋପିତ କରାଇ ଶ୍ରୀଜଗନ୍ନାଥ ଯେ କଳିଯୁଗରେ ପତିତ ଉଦ୍ଧାର ପାଇଁ ଆବିର୍ଭୂତ ହୋଇଛନ୍ତି– ଏହା ବ୍ୟକ୍ତ କରିଛନ୍ତି–

"ଦ୍ୱାପର ଯୁଗ ଶେଷରେ ଦେବ ଜଗନ୍ନାଥ
ବଉଦ୍ଧ ରୂପରେ ବିଜେ କରିବେ ଯେ ଏଥ" ।

(ସଭାପର୍ବ)

ପୁନଶ୍ଚ "ଏ ସମୟେ ପ୍ରବେଶିଲେ ପ୍ରଭୁ ଚକ୍ରଧର
ଦେବଗଣଙ୍କ ମଧ୍ୟରେ ଯାଇଣ ବସିଲେ
ସମସ୍ତଙ୍କୁ ଚାହିଁ ପ୍ରଭୁ ଏମନ୍ତ କହିଲେ ।
ଯାଉଅଛୁ ଆଜ ଆମ୍ଭେ ଶ୍ରୀନୀଳ କନ୍ଦରେ
ପୂଜା ଘେନିବୁ ସେଠାରେ ଏକଳି ଯୁଗରେ ।"

(ମୁଷଳୀ ପର୍ବ)

ସାରଳା ଦାସଙ୍କ ପରବର୍ତ୍ତୀ କବ ନୀଳାଧର ଦାସ ସ୍ୱୀକୀୟ 'ଦେଉଳ ତୋଳା' ପୋଥିରେ ଶ୍ରୀଜଗନ୍ନାଥ ମହାତ୍ମ୍ୟ ବର୍ଣ୍ଣନା କରିଛନ୍ତି ।

ସାରଳା ଦାସଙ୍କ ପରେ ପଞ୍ଚସଖା ଯୁଗରେ ଜଗନ୍ନାଥଙ୍କୁ ଭିତ୍ତି କରି ଓଡ଼ିଆ ସାହିତ୍ୟରେ ବେଶ କିଛି ରଚନା ହୋଇଛି ।

ବଳରାମ ଦାସ ସ୍ୱକୃତ 'ଜଗମୋହନ ରାମାୟଣ' ଗ୍ରନ୍ଥରେ ଶ୍ରୀଜଗନ୍ନାଥଙ୍କ ସ୍ତୁତି ଗାନ କରିବା ସଙ୍ଗେ ସଙ୍ଗେ ଏହାର ରଚୟିତା ସ୍ୱୟଂ ଶ୍ରୀଜଗନ୍ନାଥ ବୋଲି କହିଛନ୍ତି–

"ଜଗମୋହନ ବୋଲି ସେ ରାମାୟଣ ଗ୍ରନ୍ଥ
ଯେଥର କବି ସେ ନୀଳଗିରି ଜଗନ୍ନାଥ ।
ସେ ହରି ମୋହର କଣ୍ଠେ ବିଜେ କରିଛନ୍ତି
ଆପଣା ଚରିତ୍ର ଯେ ଆପେ ବଖାଣନ୍ତି ।"

(ଉତ୍ତରା କାଣ୍ଡ)

ଓଡ଼ିଆ ଭାଗବତର ସ୍ରଷ୍ଟା ଅତିବଡ଼ୀ ଜଗନ୍ନାଥ ଦାସ ଶ୍ରୀଜଗନ୍ନାଥଙ୍କୁ ବିଷ୍ଣୁରୂପେ ପରିକଳ୍ପନା କରି–ତାଙ୍କ ପାଦ ପଦ୍ମରେ ଆଶ୍ରୟ ନେବା ପାଇଁ ଇଚ୍ଛା ପ୍ରକାଶ କରିଛନ୍ତି ।

"ନମସ୍ତେ ପ୍ରଭୁ ଜଗନ୍ନାଥ, ଅନାଥ ଲୋକଙ୍କର ନାଥ

xx xx xx

ହୋଇଲୁ ଦଶ ଅବତାର । ନାଶିଲୁ ଅବନୀରୁ ଭାର ।

xx xx x

ସେହି ପ୍ରକାରେ ମୋର ମନ, ତୋ ପଦେ ରଖୁ ଭଗବାନ ।

କହଇ ଜଗନ୍ନାଥ ଦାସ, କମଳା ଚରଣକୁ ଆଶ ॥

ପଞ୍ଚସଖା ଯୁଗର ଅନ୍ୟତମ ସାଧକ ଶିଶୁ ଅନନ୍ତ ଦାସ ପିଣ୍ଡ ବ୍ରହ୍ମାଣ୍ଡ ତତ୍ତ୍ୱର ମହତ୍ତ୍ୱ ପ୍ରତି–ପାଦନ କରିବାକୁ ଯାଇ 'ହେତୁ ଉଦୟ ଭାଗବତ'ରେ ଲେଖିଛନ୍ତି–

"ପରମ ପୁରୁଷ ଦେଉଳ । ନୀଳ ଚକ୍ର ଯେ ଶୂନ୍ୟପୁରେ ।
ନେତ ଯେ ବ୍ରହ୍ମା ବିଷ୍ଣୁ ହର । ଉତ୍ପୁଣି ଅଛି ଫର ହର ।
ଦେଉଳେ ବ୍ରହ୍ମାଣ୍ଡ ଗୋସାଇଁ । ବୁଦ୍ଧ ସ୍ୱରୂପେ ବିହରଇ ।"

(ହେତୁ ଉଦୟ ଭାଗବତ)

ଶ୍ରୀଜଗନ୍ନାଥ ପ୍ରଣବ–ବ୍ରହ୍ମ, ଏକାକ୍ଷର, ବ୍ରହ୍ମ ନିରଞ୍ଜନ ଓ ଜ୍ୟୋତିର୍ବ୍ରହ୍ମ ଅଟନ୍ତି। ଅଚ୍ୟୁତା ନନ୍ଦ ଏ ପ୍ରସଙ୍ଗରେ ତାଙ୍କର 'ଆକାର ବ୍ରହ୍ମଯନ୍ତ୍ର' ଗ୍ରନ୍ଥରେ ଉଲ୍ଲେଖ କରିଛନ୍ତି–

"ଜଗନ୍ନାଥ ବଳଭଦ୍ର ସୁଭଦ୍ରା ଯେ ସୁଦର୍ଶନ ରୂପ ଧରି
ଚତୁର୍ଦ୍ଧା ମୂର୍ତ୍ତି ଯେ ଏକ ଆତ୍ମା ଭିନ୍ନ ଭିନ୍ନରେ ସେ ରୂପଧରି।
ସିଂହାସନ ଯେନି ପଞ୍ଚ ଆତ୍ମା ସେହୁ ଭିନ୍ନ ଭିନ୍ନ ପଞ୍ଚ ନାମ
ପଞ୍ଚ ଆତ୍ମା ପଞ୍ଚ ରୂପରେ ବିଜୟ ନୀଳାଚଳେ ଦାରୁବ୍ରହ୍ମ।"

(ଆକାର ବ୍ରହ୍ମଯନ୍ତ୍ର)

ପଞ୍ଚସଖାଙ୍କ ମଧ୍ୟରୁ ଅନ୍ୟତମ ସାଧକ ଯଶୋବନ୍ତ ଦାସଙ୍କ 'ଶିବ ସ୍ୱରୋଦୟ' ଗ୍ରନ୍ଥରେ ଶ୍ରୀଜଗନ୍ନାଥଙ୍କ ପ୍ରତି ଭକ୍ତି ନିବେଦନ କରି ଲେଖିଛନ୍ତି–

ଜୟ ଜୟ ଜଗନ୍ନାଥ ଜଗତ ଧାରଣ
ଜୟ ବଳଭଦ୍ର ଭଦ୍ରା ଜୟ ସୁଦର୍ଶନ

xx xx xx

କୋଟି କୋଟି ପତିତ ପାବନ ଦେବହରି
ତିନି ଭୁବନରେ ନାଥ ନୀଳାଦ୍ରି ବିହାରୀ!"

(ଶିବ ସ୍ୱରୋଦୟ)

ସାରଳା ଦାସଙ୍କ ପରବର୍ତ୍ତୀ କବ ଅର୍ଜୁନ ଦାସ ସ୍ୱରଚିତ ରାମବିଭା (୩) କାବ୍ୟରେ ଶ୍ରୀଜଗନ୍ନାଥଙ୍କ ପ୍ରତି ହୃଦୟର ଭକ୍ତି ଅର୍ପଣ କରି ଗାଇଛନ୍ତି–

"ପ୍ରସନ୍ନ ହୋଇଣ ବିଜେ ନୀଳଗିରି ବାସ
ଶିରେ କରଯୋଡ଼ି ଉଭା ଅରଜୁନ ଦାସ ହେ।"

(ରାମବିଭା)

ପଞ୍ଚସଖା ଯୁଗର ପ୍ରସିଦ୍ଧ ନାରୀ କବି ତଥା ଶ୍ରୀଚୈତନ୍ୟଙ୍କ ପରମ ଭକ୍ତ ମାଧବୀ ଦେବୀ ମଧ୍ୟ ତାଙ୍କ ରଚନାରେ ଜଗନ୍ନାଥଙ୍କୁ ବର୍ଣ୍ଣନା କରିବାକୁ ଭୁଲି ନାହାନ୍ତି। ତାଙ୍କ ରଚନାଗୁଡ଼ିକ ଅତ୍ୟନ୍ତ ଭକ୍ତି ରସାତ୍ମକ ତଥା ହୃଦୟସ୍ପର୍ଶୀ –

ଚକାନୟନ ହେ! ଜଗୁଜୀବନ ଶ୍ରୀହରି
ଛାଡରେ ଜଣାଣ କରୁଛି ଛାମୁରେ ଶୁଣ ପ୍ରଭୁ
ସ୍ତୁତି ଦେଇ। ଘୋଷା।

xx xx xx

ମୁଁ ଛାର ନିମାଖୀ ତୁମ୍ଭର ସେବକୀ ପଣକୁ
ଅଯୋଗ୍ୟ ନାରୀ
କହୁଛି ଦଇନି ଯୋଡ଼ିକର ବେନି ଶୁଣ ମାଧବୀ
ଗୁହାରୀ।

(ଶ୍ରୀ ଜଗନ୍ନାଥଙ୍କ ଜଣାଣ ଭଜନ ପୃ–୩୧–୩୨)

ଅର୍ଜୁନ ଦାସଙ୍କ ପରବର୍ତ୍ତୀ କବି ତଥା 'ଉଷାଭିଳାଷ' (୪) କାବ୍ୟର ରଚୟିତା ଶିଶୁ ଡାକର ଅର୍ଜୁନ ଦାସଙ୍କ ଦ୍ୱାରା ପ୍ରଭାବିତ ହୋଇ ଶ୍ରୀକ୍ଷେତ୍ର ଅଧିପତି ଶ୍ରୀଜଗନ୍ନାଥଙ୍କ ମହାତ୍ମ୍ୟ ବର୍ଣ୍ଣନା କରିଛନ୍ତି –

"ନୀଳଗିରି ନାୟକ କମଳାଦେବୀ ପତି
ତାହାର ପଦ୍ମପାଦକୁ ଭଜୁ ମୋର ମତି
କହଇ ଶିଶୁ ଡାକର ତୁଚ୍ଛ ବୁଦ୍ଧିହୀନ
ଦ୍ୱାଦଶ ଛାନ୍ଦରେ ଉଷା ହୋଇଲା ସମ୍ପୂର୍ଣ୍ଣ।"

(ଉଷାଭିଳାଷ)

ଷୋଡ଼ଶ ଶତାବ୍ଦୀର କବି ଦେବ ଦୁର୍ଲ୍ଲଭ ଦାସ ସ୍ୱରଚିତ 'ରହସ୍ୟ ମଞ୍ଜରୀ' (୪) କାବ୍ୟରେ ଗୋପୀଶ୍ରେଷ୍ଠ ଶ୍ରୀରାଧା ମହତ୍ତ୍ୱ ପତିପାଦନ କରିଥିଲେ ମଧ୍ୟ ଏଥିରେ ଶ୍ରୀଜଗନ୍ନାଥ ଏବଂ ଶ୍ରୀକୃଷ୍ଣଙ୍କ ଅଭେଦତ୍ୱ ପରିକଳ୍ପିତ

"ଏକଦିନେ ଏକାନ୍ତ ମନ୍ଦିରେ ଜଗନ୍ନାଥ
ମଣିମୟ ପଲଙ୍କ ଉପରେ ବିରାଜିତ।
ବେଳ ଜାଣି ରୁକ୍ମିଣୀ ରମଣୀ ଶିରୋମଣି
ପତି ପାଶେ ଏ କଲି ପ୍ରବେଶ ଠାକୁରାଣୀ॥

(ଦ୍ୱିତୀୟ ଛାନ୍ଦ ୧ମ ପଦ)

ଦେବ ଦୁର୍ଲ୍ଲଭ ଦାସଙ୍କ 'ରହସ୍ୟ ମଞ୍ଜରୀ' ପରି ଦୀନକୃଷ୍ଣ ଦାସ ସ୍ୱୀୟ 'ରସକଲ୍ଲୋଳ'ରେ ଶ୍ରୀଜଗନ୍ନାଥଙ୍କ ବର୍ଣ୍ଣନା କରିଛନ୍ତି

"କୋଟି ବ୍ରହ୍ମାଣ୍ଡ ପ୍ରଭୁ ଜଗନ୍ନାଥ
କରନ୍ତି ପୂର୍ଣ୍ଣ ଜନ ମନୋରଥ
କଲି ମୁଁ ଏହି ଘେନି ଅଭିମତ
କରିବାକୁ ରସ କଲ୍ଲୋଳ ଗୀତ
କହିଲେ ସେ ଯେଣୁ
କରରେ ମାଗି ଲେଖିଲି ମୁଁ ତେଣୁ।"

(ରସ କଲ୍ଲୋଳ)

ରୀତି ଯୁଗର ସର୍ବଶ୍ରେଷ୍ଠ କବି ଉପେନ୍ଦ୍ର ଭଞ୍ଜ ସ୍ୱୀୟ କାବ୍ୟରେ ଜଗନ୍ନାଥ ଚେତନାର ନବ ଉନ୍ମେଷ ଘଟାଇଥିବାର ମନେହୁଏ। 'ସୁଭଦ୍ରା ପରିଣୟ' କାବ୍ୟରେ କବି ଲେଖିଛନ୍ତି –

"ସିନ୍ଧୁ ତଟେ ଶ୍ରୀପୁରୁଷୋତ୍ତମ କ୍ଷେତ୍ରରାଜ
ସାଧୁଜନେ! ଅଛି ତହିଁ ବହୁତ ଆଶ୍ଚର୍ଯ୍ୟ ହେ।
ସେ ଭୂମି ପ୍ରବେଶେ ବ୍ରହ୍ମହତ୍ୟା ପାପହରେ
ସାକ୍ଷାତ ହୋଇଛି ଏ କପାଳ ମୋଚନରେ ଯେ।"

(ସୁଭଦ୍ରା ପରିଣୟ)

ଉପେନ୍ଦ୍ରଭଞ୍ଜ ଜଗନ୍ନାଥଙ୍କଠାରେ ଶ୍ରୀକୃଷ୍ଣଙ୍କର ଅଭେଦତ୍ୱ କଳ୍ପନା କରି ଜଗନ୍ନାଥଙ୍କ ଶ୍ରେଷ୍ଠତ୍ୱ ପ୍ରତିପାଦନ କରିଛନ୍ତି। ପାହାଡ଼ିଆ କେଦାର ରାଗରେ ସ୍ୱକୀୟ "ବୈଦେହୀଶ ବିଳାସ" କାବ୍ୟର ମଙ୍ଗଳା ଚରଣରେ କବି କହିଛନ୍ତି–

"ବନ୍ଦଇ ଦୀନ ବାନ୍ଧବ ହରି ଯେ ତମ ଚୟ ଖଣ୍ଡନ କାରୀ
ସଦା କମଳାନନ୍ଦ ବିସ୍ତାରି ସ୍ୱଭାବେ ଛନ ଯେ।

ବିଷ୍ଣୁ ଅନନ୍ତ–ଅଙ୍କ–ବିହରୀ କର ପ୍ରତାପ ଯାର ସଞ୍ଚରି
ନିଶାଚରଙ୍କ ଉଲ୍ଲାସ ହରି ପୂଜେ ସୁମନ ଯେ !
ଚଇତନ୍ୟେ ଯାହା, ଅଗ୍ରତେ ସ୍ଥିତ ଯେ,
ଚତୁର୍ଭୁଜ ପକ୍ଷବ– ଲୋକ ତୋଷିତ ଯେ,
ବିକାଶ ଅଖଣ୍ଡିତ– ମଣ୍ଡଳେ ସିଂହ ଭାବରେ ହ୍ଲାଦିତ କାଳେ
ଭାବେ ତରଣୀ ହୋଇ ମଞ୍ଜୁଳେ ଗିରି ଉଦିତ ଯେ ।
(ବୈଦେହୀଶ ବିଳାସ)

ଅଷ୍ଟାଦଶ ଶତାବ୍ଦୀର କବି କବିସୂର୍ଯ୍ୟ ବଳଦେବ ରଥଙ୍କ ରଚନାରେ ଜଗନ୍ନାଥ ଚେତନା ପ୍ରକାଶ ପାଇଛି । ଜଗନ୍ନାଥ ଜଣାଣରେ ଉକ୍ତର ବେଦନା ଭରା ନିବେଦନ ଯେପରି ପ୍ରକାଶ ପାଇଛି ତାହା ବିଶେଷ ପ୍ରଣିଧାନ ଯୋଗ୍ୟ–

ହେ ଆଗମସ୍ଥ ସିନ୍ଧୁ– ତେମା–ଜୀବବନ୍ଧୁ ଜଗତ ପତି
ଜଗନ୍ନାଥ !
ସମଦୃଷ୍ଟିର ପତାକା ଟେକି ଏକି ପକ୍ଷପାତ ନୀତି ହେ
ମହାପ୍ରଭୁ !
କିଏ ବା କ'ଣ କଲା, ଆଉ ମୁଁ କଲିନାହିଁ ! କିଏ ବା କ'ଣ
ଦେଲା, ଆଉ ମୁଁ ନଦେବାରୁ ଏତିକି ସରିଦେଲି ।"

କେବଳ ହିନ୍ଦୁ କବି ନୁହନ୍ତି ଯବନ କବିଙ୍କ ଲେଖନୀ ଜଗନ୍ନାଥଙ୍କ ବର୍ଣ୍ଣନାରୁ ମୁକ୍ତ ନୁହେଁ । ସାଲବେଗଙ୍କ ଭଜନଗୁଡ଼ିକ ରଚିତ ହେବାର ପ୍ରାୟ ବିଶତ ବର୍ଷ ଅତିକ୍ରାନ୍ତ ହୋଇଯାଇଥିଲେ ମଧ ବର୍ତ୍ତମାନ ପର୍ଯ୍ୟନ୍ତ ସେଗୁଡ଼ିକ ଅତ୍ୟନ୍ତ ଲୋକପ୍ରିୟ ଅଟେ ।–

"ଆହେ ନୀଳ ଶଇଳ, ପବଳ ମତବାରଣ
ମୋ ଆରତ ନଳିନୀରେ ବନକୁ କର ଦଳନ ।"
କିମ୍ବା
"ଜଗବନ୍ଧୁ ହେ ଗୋସାଇଁ
ତୁମ୍ଭ ଶ୍ରୀଚରଣ ବିନୁ ଅନ୍ୟ ଗତି ନାହିଁ ।"

ଅଷ୍ଟାଦଶ ଶତକୀର କବି ତଥା ଶ୍ରୀକ୍ଷେତ୍ର ନିବାସୀ ବନମାଳୀଙ୍କ ଜଣାଣ ଏବଂ ଭଜନଗୁଡ଼ିକ ମଧ ଶ୍ରୀଜଗନ୍ନାଥ ଭକ୍ତିରସାଶ୍ରିତ–

"ଜଗନ୍ନାଥ ହେ, କିଛି ମାଗୁ ନାହିଁ ତୋତେ
ଧନମାଗୁ ନାହିଁ ଜନ ମାଗୁ ନାହିଁ
ମାଗୁଛି ଶରଧା ବାଲିରୁ ହାତେ ।"
କିମ୍ବା
"ଦୀନବନ୍ଧୁ ଦୈତାରୀ
ଦୁଃଖ ନଗଲା ମୋହରି
ହେଲ କି ନିଷ୍ଠୁର ଚିତ୍ତ
ନୀଳାଚଳେ ବିଜେ କରି ।"

ମଧ୍ୟଯୁଗରେ ରାଧାନାଥ, ଗଙ୍ଗାଧର, ମଧୁସୂଦନ ଇତ୍ୟାଦି କବିମାନଙ୍କ ଲେଖନୀରେ ଜଗନ୍ନାଥ ଏବଂ ନୀଳାଚଳ ଧାମର ମହତ୍ତ୍ୱ ପ୍ରତିପାଦିତ ହୋଇଛି । 'ଚନ୍ଦ୍ରଭାଗା' କାବ୍ୟରେ ଜଗନ୍ନାଥଙ୍କ 'ପୁଷ୍ପାଭିଷେକ' ବିଷୟରେ କବି ସୂଚନା ଦେବା ସଙ୍ଗେ ସଙ୍ଗେ ପାର୍ବତୀ କାବ୍ୟରେ ନୀଳାଚଳର ଦୋଳ ମହୋତ୍ସବ ସମ୍ପର୍କରେ ବର୍ଣ୍ଣନା କରିଛନ୍ତି । ପୁନଶ୍ଚ 'ମହାଯାତ୍ରା' କାବ୍ୟରେ ପାଣ୍ଡବମାନେ ସ୍ୱର୍ଗାରୋହଣର ପଥରେ ହିମାଚଳ ଦେଇ ଆସି ପହଞ୍ଚିଛନ୍ତି ଉତ୍କଳର ପବିତ୍ର ନୀଳାଚଳ ଧାମରେ–

"ନାନା ତୀର୍ଥ ସେବି, ଶ୍ୱରେ ଆସିଣ ମିଳିଲେ
ଉତ୍କଳର ପ୍ରାଚ୍ୟ – ନୀର ପ୍ରାଚୀର ଆକୃତି
ନୀଳ–ଫେନାକୁଳ–ତୁଙ୍ଗ–ତରଙ୍ଗ–ଭଙ୍ଗୁର
ନୀଳାଚଳ ତଟେ ଯହିଁ ଲୋଟେ ବାରାନିଧି
ଗମ୍ଭୀର ନିର୍ଘୋଷେ ଘୋଷି ବିଶ୍ୱ ଚରାଚରେ ।"

ସେହିପରି ସ୍ୱଭାବ କବି ଗଙ୍ଗାଧର 'ପ୍ରଣୟବଲ୍ଲରୀ', 'ତପସ୍ୱିନୀ', ଏବଂ 'ଉତ୍କଳ ଲକ୍ଷ୍ମୀ' ଇତ୍ୟାଦି କାବ୍ୟମାନଙ୍କରେ ପୁରୁଷୋତ୍ତମ କ୍ଷେତ୍ରର ମନୋଜ୍ଞ ଚିତ୍ର ବର୍ଣ୍ଣନା କରିଛନ୍ତି । ତପସ୍ୱିନୀର ପଞ୍ଚମ ସର୍ଗରେ ନୀଳାଚଳ ଧାମର ବର୍ଣ୍ଣନା କରିବାକୁ ଯାଇ କବି କହୁଛନ୍ତି–

ଉଜ୍ଜ୍ୱଳ ଚିକ୍କଣ ନୀଳ ପତର
ପୁନ୍ନାଗ–କାନନ ଶ୍ୟାମଳତର
ଉଡ଼ି ଓଡ଼ିଶାରୁ ଥିଲା କି ଯାଇ,
ଦେଉଥିଲା ସତ୍ୟ ମନ ରଞ୍ଜାଇ
ନୀଳାଚଳେ ରୂପ ଧରି–ବିଜେଥିବା
ରାମ ଲଭିବାକୁ ସୀତା
ପ୍ରୀତି – ସାଗର ଲହରୀ ।"

ସତ୍ୟବାଦୀ ଯୁଗର ପ୍ରଖ୍ୟାତ କବି ଗୋପବନ୍ଧୁ ଦାସ ସ୍ୱୀୟ ରଚନାରେ ବହୁ କ୍ଷେତ୍ରରେ ଜଗନ୍ନାଥ ତଥା ଜଗନ୍ନାଥ ଧାମର ମହତ୍ତ୍ୱ ପ୍ରତିପାଦନ କରିଛନ୍ତି । ଉଦାହରଣ ସ୍ୱରୂପ –

"ଜଗତ ସରସେ ଭାରତ କମଳ,
ତା' ମଧ୍ୟେ କେଶର ପୁଣ୍ୟ ନୀଳାଚଳ
ଥିଲେ ଯହିଁ ତହିଁ ଭାରତ ବକ୍ଷରେ,
ମଣିବି ମୁଁ ଅଛି ଆପଣା କକ୍ଷରେ
ମୋ ନେତ୍ରେ ଭାରତ ଶିଳା ଶାଳଗ୍ରାମ
ପ୍ରତି ସ୍ଥଳ ମୋର ପ୍ରିୟ ପୁରୀଧାମ ।
ସକଳ ସଲିଳ ପଣ୍ଡତୀର୍ଥ ଜଳ,
ପ୍ରତି ଧର୍ମାଳୟ ମୋର ନୀଳାଚଳ ।"

ଆଧୁନିକ ଯୁଗରେ ମଧ ସଚ୍ଚି ରାଉତରାୟ, ସୁରେନ୍ଦ୍ର ମହାନ୍ତି, ସଦାଶିବ ରଥଶର୍ମା ଇତ୍ୟାଦି ବହୁ କବି ଓ ଲେଖକଙ୍କ ଜଗନ୍ନାଥଙ୍କ ସମ୍ପର୍କରେ ରଚିତ ବହୁ କବିତା ଏବଂ ପ୍ରବନ୍ଧ ଓଡ଼ିଆ ସାହିତ୍ୟର ଶ୍ରୀବୃଦ୍ଧି ମଣ୍ଡନ କରିଛି ।

ଓଡ଼ିଶାର ଧର୍ମ, ସଂସ୍କୃତି ତଥା ସାମାଜିକ ଜୀବନରେ ଜଗନ୍ନାଥ ଅତ୍ୟନ୍ତ ପ୍ରଭାବଶାଳୀ । ଓଡ଼ିଆ ସାହିତ୍ୟ ଏହାର ଏକ ପ୍ରତିଫଳନ ମାତ୍ର । ଶ୍ରୀଜଗନ୍ନାଥଙ୍କୁ ନେଇ ଓଡ଼ିଆ ସାହିତ୍ୟ ଯେ ସମୃଦ୍ଧିଶାଳୀ ଏଥିରେ ସନ୍ଦେହର ଅବକାଶ ନାହିଁ ।

(୧) ସାହିତ୍ୟ ଏକ ଆକଳନ – ଡଃ ନୃସିଂହ ଷଡ଼ଙ୍ଗୀ, ପୃ–୨୧ ।
(୨) ଜଗନ୍ନାଥ ଧର୍ମ – ପ୍ରଫେସର ଡଃ ବଂଶୀଧର ମହାନ୍ତି, ପୃ–୪୨ ।
(୩) 'ରାମବିଭା' – ପ୍ରାଚୀ ସମିତି ଦ୍ୱାରା ପ୍ରକାଶିତ ୧୯୩୧ ମସିହାରେ ପ୍ରକାଶିତ ।
(୪) ପ୍ରାଚୀ ସମିତି ଦ୍ୱାରା ୧୯୨୯ ମସିହାରେ 'ରସକଲ୍ଲୋଳ' କାବ୍ୟ ପ୍ରକାଶିତ ।
(୫) ପ୍ରାଚୀ ସମିତି ଦ୍ୱାରା ୧୯୨୮ ମସିହାରେ ପ୍ରକାଶିତ ।

ଆଡ଼ିସିନାଲ୍ ଟ୍ରେଜେରୀ ଅଫିସର୍,
ସ୍ପେସାଲ୍ ଟ୍ରେଜେରୀ ନଂ–୧,
ଭୁବନେଶ୍ୱର–୭୫୧୦୦୧ ।



# ପାଠକଙ୍କ କଲମରୁ

(୧) ବିପିନ ବିହାରୀ ସାହୁ,
ଗ୍ରାମ-ଅନ୍ତୁଲା, ପୋଷ୍ଟ-କାମାକ୍ଷାନଗର,
ଜିଲ୍ଲା-ଢେଙ୍କାନାଳ-୭୫୯୦୧୮ ।

* ପଦ୍ୟର ମାତ୍ରା ତ ବହୁତ କମ୍ । କେଉଁ ସଂଖ୍ୟାରେ ଗୋଟିଏ ତ କେଉଁ ସଂଖ୍ୟାରେ ମୋଟେ ନାହିଁ । ପଦ୍ୟର ମାତ୍ରା ଅଧିକ ହେଲେ ଭଲ ହୁଅନ୍ତା ।

** ସବୁ ରୁଚିକୁ ଉତ୍କଳ ପ୍ରସଙ୍ଗରେ ସ୍ଥାନ ଦିଆଯାଉଥିବା ବେଳେ କବିତା ବାଦ ପଡ଼ିବା ପ୍ରଶ୍ନ ଉଠୁନାହିଁ । କିନ୍ତୁ ବିଭିନ୍ନ କାରଣରୁ ସଂଖ୍ୟାରେ ଲେଖା ଅଧିକ ହୋଇଥାଏ । ରଥଯାତ୍ରା ସଂଖ୍ୟାରେ ସେହାର ଦିଆଯାଉଥିବା କବିତା କମ୍ ହୋଇନଥିବ ବୋଲି ଆଶା ।

(୨) ଶ୍ରୀ ଜନାର୍ଦ୍ଦନ ବେହେରା,
କ୍ୱାର୍ଟର ନଂ-ଆରଏଚ-୭୭୪,
ପୋଷ୍ଟ-ସୁନାବେଡା, ମିଗ୍ ସହରାଞ୍ଚଳ,
କୋରାପୁଟ-୭୬୩୦୦୨ ।

* ଉତ୍କଳ ପ୍ରସଙ୍ଗ ପାଇବାରେ ବହୁତ ବିଳମ୍ବ ହେବାର କାରଣ କ'ଣ ? ଆମେ ମାର୍ଚ୍ଚ ଏବଂ ଏପ୍ରିଲ ସଂଖ୍ୟା ମେ ମାସର ୨୭ ତାରିଖରେ ପାଇଲୁ । ଏଥିପାଇଁ ବିହିତ ପ୍ରତିକାର କରିବାକୁ ଅନୁରୋଧ ।

** ମାର୍ଚ୍ଚ ପ୍ରଥମ ସପ୍ତାହରେ ମାର୍ଚ୍ଚ ସଂଖ୍ୟା ଏବଂ ଏପ୍ରିଲ ଏକ ତାରିଖରେ ଏପ୍ରିଲ ସଂଖ୍ୟା ପ୍ରକାଶ ପାଇଥିଲେ ହେଁ ଆପଣଙ୍କ ସହରରେ ବିଳମ୍ବରେ ପହଞ୍ଚିଥିବାରୁ ଆମେ ଦୁଃଖିତ । ଏଥିର ପ୍ରତିକାର ପାଇଁ ପଦକ୍ଷେପ ନେଉଛୁ ।

(୩) ଶ୍ରୀ ନିତ୍ୟାନନ୍ଦ ନାୟକ (୭୭/୯୧),
କ୍ୱାର୍ଟର ନଂ-ବି/୨, ୟୁନିଟ୍-ଇ, ରେଲୱେ କଲୋନୀ,
ବାଲେଶ୍ୱର-୭୫୬୦୦୧ ।

* ଦୟାକରି ମୋତେ କହିବେ କି 'ଉତ୍କଳ ପ୍ରସଙ୍ଗ' ବାଲେଶ୍ୱର ଜିଲ୍ଲାର କେଉଁ ସ୍ଥାନରେ ମିଳିପାରିବ । ମୁଁ ଆପଣଙ୍କର ଗ୍ରାହକ ଏକବର୍ଷ ଧରି ହେଲେ ମଧ୍ୟ ସର୍ବମୋଟ ଏ ପର୍ଯ୍ୟନ୍ତ ଆଠ ଗୋଟି ସଂଖ୍ୟାର ଉତ୍କଳ ପ୍ରସଙ୍ଗ ପାଇଛି । ଥରେ ଥରେ ଏକାଥରକେ ୮/୯ଟି ସଂଖ୍ୟାର ଉତ୍କଳ ପ୍ରସଙ୍ଗ ପାଉଛି । ଯାହାଦ୍ୱାରା 'ଉତ୍କଳ ପ୍ରସଙ୍ଗ' ପଢ଼ିବାରେ ଅସୁବିଧା ହେଉଛି । ଦୟାକରି ଯଦି ଆପଣ ଜଣାନ୍ତୁ ଉତ୍କଳ ପ୍ରସଙ୍ଗ ଆମ ଜିଲ୍ଲାର କେଉଁ ସ୍ଥାନରେ ମିଳିବ ତେବେ ମୁଁ ଆପଣଙ୍କ ନିକଟରେ ଚିର ଋଣୀ ହୋଇ ରହିବି ।

** ଜିଲ୍ଲା ସୂଚନା ଓ ଲୋକ ସମ୍ପର୍କ ଅଧିକାରୀ ଏବଂ ଅନୁବିଭାଗୀୟ ସୂଚନା ଓ ଲୋକ ସମ୍ପର୍କ ଅଧିକାରୀଙ୍କ ପାଖରେ ଉତ୍କଳ ପ୍ରସଙ୍ଗ କିଣିବାକୁ ମିଳିଥାଏ ।

(୪) ପଣ୍ଡିତ ଶ୍ରୀ କାର୍ତ୍ତିକ ଚନ୍ଦ୍ର ଷଡ଼ଙ୍ଗୀ,
ସାଃ-ବୋଡ଼ିକିନା ହାଇସ୍କୁଲ, ପୋଷ୍ଟ- ବୋଡ଼ିକିନା,
ଭାୟା-ବାଲିକୁଦା, ଜିଲ୍ଲା-କଟକ-୭୫୪୧୧୦ ।

* ଉତ୍କଳ ପ୍ରସଙ୍ଗ ମୁଁ ମାର୍ଚ୍ଚ ସଂଖ୍ୟା ପଢ଼ି ଖୁସି ହେଲି । ଉପସ୍ଥାପନା ଶୈଳୀ ଅତ୍ୟନ୍ତ ସୁନ୍ଦର । 'ଓଡ଼ିଆ ଭାଗବତର ବୈଶିଷ୍ଟ୍ୟ', 'ସ୍ୱରାଜ୍ ସାଧନେ ନନ୍ଦୁଅ ଉଦାସୀ', 'ସମାଜରେ ନିଶାପାନର ପ୍ରଭାବ' ଲେଖାମାନ ବେଶ୍ ଶିକ୍ଷଣୀୟ, ଉପାଦେୟ ଓ ମନଛୁଆଁ ହୋଇପାରିଛି । ପାଠକଙ୍କ ନୂଆ ନୂଆ ଖୋରାକ ଦେବାକୁ ସମ୍ପାଦକ ଶ୍ରୀଯୁକ୍ତ ପାଢ଼ି ଯେ ଉଦ୍ୟମ କରୁଛନ୍ତି ଏଥିପାଇଁ ସେ ନିଶ୍ଚିତ ପ୍ରଶଂସନୀୟ । ଆଗାମୀ ସଂଖ୍ୟା ଅଧିକ ଚିତ୍ତାକର୍ଷକ ହେବାର ଆଶାରଖି ରହିଲି । ମୁଁ ଉତ୍କଳ ପ୍ରସଙ୍ଗର ନିୟମିତ ପାଠକ ।

** ରଥ ଯାତ୍ରା ବିଶେଷାଙ୍କଟି କେମିତି ଲାଗିଲା ଜଣାଇବାକୁ ଅନୁରୋଧ ।

(୫) ଶ୍ରୀ ନିରଞ୍ଜନ ପ୍ରଧାନ,
ସାମ୍ବାଦିକତା ଓ ଗଣ ଯୋଗାଯୋଗ ବିଭାଗ,
ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ,
ଗ୍ରାମ-ଭଗବାନପୁର, ପୋଷ୍ଟ-ଟାଙ୍କରଡ଼ି,
ଭାୟା-କରଚୁଲି, ଜିଲ୍ଲା-ଗଞ୍ଜାମ ।

* ପ୍ରତି ସଂଖ୍ୟାରେ ଜଣେ ଖ୍ୟାତନାମା ଓଡ଼ିଶାର ବ୍ୟକ୍ତିଙ୍କର ଜୀବନୀ ପ୍ରକାଶ କଲେ ତରୁଣମାନେ ବିଶେଷ ଉପକୃତ ହୋଇପାରିବେ ।

** ମତାମତ ପାଇଁ ଧନ୍ୟବାଦ । ନିୟମିତ ଭାବେ ପ୍ରତ୍ୟେକ ସଂଖ୍ୟା ପଢ଼ନ୍ତୁ । ଆପଣ ଯାହା ଖୋଜିଛନ୍ତି ତାହା ନିଶ୍ଚିତ ଭାବରେ ପାଇବେ ।

(୬) ଶ୍ରୀ କମଳାକାନ୍ତ ପଣ୍ଡା,
କ୍ୱାର୍ଟର ନଂ-ଇ/୨, ହୋମିଓପାଥିକ କଲେଜ ପରିସର,
ପୋଷ୍ଟ-ଖାରବେଳ ନଗର, ୟୁନିଟ୍-୩, ଭୁବନେଶ୍ୱର, ଜିଲ୍ଲା-ପୁରୀ ।

* 'ଉତ୍କଳ ପ୍ରସଙ୍ଗ' ଏପରି ଏକ ଆକର୍ଷଣୀୟ ବଗିଚା ଯାହା ଭରପୁର ନାନା ରଙ୍ଗ ବେରଙ୍ଗ ଫୁଲରେ,' ମଧୁକ୍ଷରା ହସରେ ମନ

ବାଣ୍ଟିଯାଏ ଏଠି। ହେଲେ ଏବେ ଦୁଃଖ ଅପ୍ରମିତ। ଯେଉଁଟି ଦିନେ କିଛି ଆଧୁନିକ କବିତା ହସୁଥିଲା, ଆଖି ମିଟିକା ମାରୁଥିଲା ଆଜି ସେଠି ଫୁଲର ମଳିନ ପାଖୁଡ଼ା। ଆଧୁନିକ କବିତାକୁ ଭଲଭାବରେ ଭଲ ପାଉଥିବା ମୋ ଭଳିଲୋକଙ୍କୁ ଆପଣ ନିରାଶ କରୁଛନ୍ତି କାହିଁକି ?

ଜଣେ ନିନ୍ଦୁକ ଭାବରେ ନୁହେଁ ବରଂ ଶୁଭେଚ୍ଛାର ମନୋବୃତ୍ତିରେ ଭରପୂର ଏ ଚିଠିଟିକୁ ଆପଣ ଆଦରି ନେବେ, ଆଶା ଓ ବିଶ୍ୱାସ।

** ଯେଉଁ କବିମାନଙ୍କ କବିତା ପାଇଁ ଆପଣ ଦୃଷ୍ଟି ଆକର୍ଷଣ କରିଛନ୍ତି, ସେମାନଙ୍କ ମଧ୍ୟରୁ ଅନେକ କବିତା ଉତ୍କଳ ପ୍ରସଙ୍ଗରେ ସମୟେ ସମୟେ ସ୍ଥାନ ଦେଉଛୁ। ଏହି ସଂଖ୍ୟାରେ ବି ଅଛି। ତେବେ ସେହି ନିର୍ଦ୍ଦିଷ୍ଟ କବିମାନଙ୍କ କବିତା ପ୍ରତ୍ୟେକ ସଂଖ୍ୟାରେ ପରିବେଷଣ କରିବା ପରିବର୍ତ୍ତେ ପ୍ରତିଷ୍ଠିତ କବିମାନଙ୍କ ସହିତ ତରୁଣ କବିମାନଙ୍କୁ ମଧ୍ୟ ଉତ୍କଳ ପ୍ରସଙ୍ଗ ପୃଷ୍ଠାରେ ସୁଯୋଗ ଦେଇ ଉତ୍ସାହିତ କରିବା ଆମର ଲକ୍ଷ୍ୟ।

କବି ଅନେକ କିଛି କଳ୍ପନା କରେ। କଳ୍ପନାରେ କୋଣାର୍କ ତିଆରି କରି ବିଶ୍ୱରେ ବିସ୍ମୟ ସୃଷ୍ଟି କରେ। ଆଶାକୁ ନେଇ ବଞ୍ଚେ। ନିରାଶ ହେବା କବିର ଧର୍ମ ନୁହେଁ। ନିରାଶ ହେଲେ ଆଗକୁ ପାଦ ବଢ଼ାଇବେ କିପରି ?

ଦୁଃଖୀ ନିଜର ଦୁଃଖକୁ ଲାଘବ କରିବାପାଇଁ ଅନ୍ୟ ଆଗରେ ପ୍ରକାଶ କରି କିଛିଟା ଆଶ୍ୱସ୍ତ ହୁଏ। ଆଶା, ଆପଣ ମଧ୍ୟ ଆଶ୍ୱସ୍ତ ହେବେ ଏବଂ ଉତ୍କଳ ପ୍ରସଙ୍ଗ ପ୍ରତି ଶୁଭେଚ୍ଛାର ମନୋବୃତ୍ତିକୁ ଅତୁଟ ରଖିବେ।

## ପ୍ରଶ୍ନ କର୍ତ୍ତାଙ୍କ ପାଇଁ କୁପନ

------------------------ CUT HERE ------------------------

ପ୍ରଶ୍ନ କର୍ତ୍ତାଙ୍କ ଠିକଣା

ନାମ ..............................

ଗ୍ରାମ ..............................

ପୋଷ୍ଟ ..............................

ଜିଲ୍ଲା .................... ପିନ୍ ..........

କେବଳ ୩୧/୮/୧୯୯୨ ପୂର୍ବରୁ ବ୍ୟବହାର ପାଇଁ

ମତାମତ ବା ପ୍ରଶ୍ନ

..............................................................

..............................................................

..............................................................

..............................................................

..............................................................

..............................................................

..............................................................

..............................................................

..............................................................

..............................................................

..............................................................

..............................................................

ସ୍ୱାକ୍ଷର



OGP—MP—PTS (I&PR) 10—20,000—25-6-1992



ପ୍ରସ୍ତାବିତ ଇସ୍ପାତ କାରଖାନା ଅଞ୍ଚଳରେ ବୃକ୍ଷ ରୋପଣ ।

